# ଜ୍ଞାନର ସାଗର

# ପରଶୁରାମ



ସୁରସିଂହ ପଟ୍ଟନାୟକ

Digitized by PPRACHIN, SOA

# ଜ୍ଞାନର ସାଗର ପରଶୁରାମ

(୧୮୭୮ - ୧୯୭୨)

( ପ୍ରଖ୍ୟାତ ଗବେଷକ ଡାକ୍ତର ରାଧାଚରଣ ପଣ୍ଡାଙ୍କ ରଚିତ
'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକର ତଥ୍ୟ ଉପରେ ଆଧାରିତ )



ନୃସିଂହ ପଟ୍ଟନାୟକ

Digitized by PPRACHIN, SOA

ଜ୍ଞାନର ସାଗର ପରଶୁରାମ

ସୁରସିଂହ ପଟ୍ଟନାୟକ
ବଣ୍ଡାଘର ଛକ, ଗୋପାଳପୁର-୭୬୧ ୦୦୨
ଗଞ୍ଜାମ

Gyanara Sagara Parasuram

Surasinha Patnaik

ପ୍ରକାଶକ :
ଅମିତ ବିକ୍ରମ ଦେବ
ଜନାରିଗଛ, କୁଣ୍ଢାଇବେଣ୍ଟ ସାହି
ପୁରୀ

Published by :
Amita Bikram Dev
Janarigachha, Kundhaibenta Sahi
Puri

ପ୍ରଥମ ପ୍ରକାଶ—ମାଘ ପୂର୍ଣ୍ଣିମା : ୧୯୯୮
1st Edition—February 1998

ମୁଦ୍ରଣ :
ନବଜୀବନ ପ୍ରେସ
ଗୁଡ଼ମାଚୌକ, କଟକ-୨

ମୂଲ୍ୟ : କୋଡ଼ିଏ ଟଙ୍କା

Digitized by PPRACHIN, SOA



ପରଶୁରାମ ବର୍ମା

ଆବିର୍ଭାବ :
୧୮୭୮, ଦଶହରା

ତିରୋଭାବ :
୧୯୭୨, ଜୁନ୍ ୧୮ ତାରିଖ

Digitized by PPRACHIN, SOA

## କିଛି ସୂଚନା

ଓଡ଼ିଶାରେ ଏକଦା ବିପୁଳ ଖ୍ୟାତି ଅର୍ଜନ କରିଥିବା ପ୍ରବୀଣ ଶିକ୍ଷାବିତ୍ ପରଶୁରାମ ବର୍ମାଙ୍କର ମୂଳ ଆବସ୍ଥଳୀ ଅବସ୍ଥିତ ଥିଲା ଚିଲିକା ଅଭ୍ୟନ୍ତରର ମାଲୁଦରେ, ଅଧ୍ୟୟନ ପୁରୀ, କଟକ ଓ ବିହାରର ପାଟନାରେ, କର୍ମକ୍ଷେତ୍ର ଗଞ୍ଜାମ ଓ ପୁରୀ ଜିଲ୍ଲାରେ ଆଉ ଅବସର କାଳୀନ ଜୀବନ ଯାପନ ପୁରୁଷୋତ୍ତମ ଧାମରେ କିନ୍ତୁ ତାତ୍ତ୍ୱିକ ଦର୍ଶନର ପରିପ୍ରସାର ପାଇଁ ନିବେଷ୍ଟ ରହିବାର ପ୍ରୟାସ ମଧ୍ୟରେ । ଅଧ୍ୟୟନ ଓ ଅଧ୍ୟାପନା ଛଡ଼ା ତାଙ୍କର କାର୍ଯ୍ୟର ପରିସର ବ୍ୟାପ୍ତ ରହିଥିଲା, ଜ୍ଞାନ-ଦୀପ୍ତ ଚେତନାର ସ୍ଫୁରଣ ସହିତ କୁସଂସ୍କାରର ଉନ୍ମୂଳନ ଆଉ ମୁକ୍ତ ଚେତନାର ପରିପ୍ରସାର, ଭାଷାଭିତ୍ତିକ ଦେଶମିଶ୍ରଣ ଆନ୍ଦୋଳନଠାରୁ ସ୍ୱାଧୀନତାର ସଂଗ୍ରାମ, ଦେବପୀଠରୁ ବଳିପ୍ରଥାର ଉଚ୍ଛେଦ ଠାରୁ ଅସ୍ପୃଶ୍ୟତାର ନିବାରଣ, ଦୁଃସ୍ଥ ରୋଗୀଙ୍କୁ ସେବା ଓ ସହାୟତା ପ୍ରଦାନ ଠାରୁ ଅତିଥି ସତ୍କାର, ସର୍ବଧର୍ମ ସମନ୍ୱୟଠାରୁ ଉଦାର ଆଧ୍ୟାତ୍ମିକ ଭିତ୍ତିଭୂମି ସଂସ୍ଥାପନାର ଉଦ୍ୟମ ପର୍ଯ୍ୟନ୍ତ ।

ଦକ୍ଷିଣ ଓଡ଼ିଶାର ଉପାନ୍ତ ଅଞ୍ଚଳରୁ ଆସି ଚିଲିକାର ଅଭ୍ୟନ୍ତର ଆଉ ବାଲୁଗାଁକୁ ନିଜର କର୍ମଭୂମି ରୂପେ ବାଛି ନେଇଥିବା, ଏ ରାଜ୍ୟର ସ୍ୱନାମଧନ୍ୟ ପ୍ରଖ୍ୟାତ ଗବେଷକ ଡାକ୍ତର ରାଧାଚରଣ ପଣ୍ଡାଙ୍କର ଦୃଷ୍ଟି ସ୍ୱତଃ ଆକର୍ଷିତ ହୋଇଥିଲା, ଚିଲିକା ଅଞ୍ଚଳର ପ୍ରଥମ ଗ୍ରାଜୁଏଟ ପରଶୁରାମ ବର୍ମାଙ୍କର ପ୍ରତି ମୁଖ୍ୟତଃ ତାଙ୍କର ସଂକୀର୍ଣ୍ଣତା-ବିମୁକ୍ତ କିଛି ପରିମାଣରେ ବୈପ୍ଳବିକ ଉଦାର ଦୃଷ୍ଟିଭଙ୍ଗୀ ପାଇଁ । ଏଥିରୁ ତାଙ୍କର ଆଗ୍ରହ ସୃଷ୍ଟି ହୋଇଥିଲା ପରଶୁରାମଙ୍କର ବ୍ୟକ୍ତିତ୍ୱର କିଛି ଦିଗ ଅଧ୍ୟୟନ କରି, ଗୋଟିଏ ପରିପୂର୍ଣ୍ଣ ଜୀବନୀ ରଚନା ପ୍ରକାଶେ ।

୧୯୬୫ ସାଲର ଗୁରୁଦିବସ । ଡାକ୍ତର ପଣ୍ଡା ପରଶୁରାମଙ୍କୁ ପୁରୀଠାରେ ଭେଟି ନିଜର ଅଭିଳାଷ ଜଣାଇଲେ ଆଉ ଜୀବନୀ ସଂଗ୍ରହ ପାଇଁ କିଛି ଗୁରୁତ୍ୱପୂର୍ଣ୍ଣ ପ୍ରାରମ୍ଭିକ ତଥ୍ୟ ସଂଗ୍ରହ କରିଥିଲେ । ଏ ମଧ୍ୟରେ ବିତିଗଲା ଦୀର୍ଘ ଛଅବର୍ଷ ଆଉ ଉଭୟଙ୍କର ସାକ୍ଷାତକାର ବୋଧହୁଏ ସମ୍ଭବ ହୋଇଥିଲା ଅଳ୍ପ ସମୟ ପାଇଁ । ଡାକ୍ତର ପଣ୍ଡା ମଧ୍ୟ ଗଞ୍ଜାମ ସହିତ ବ୍ୟକ୍ତିଗତ ସମ୍ପର୍କରୁ କିଛି ତଥ୍ୟ ସଂଗ୍ରହ କରିଥିଲେ ପରଶୁରାମଙ୍କର ବିଷୟରେ । ଏ ସବୁ ସ୍ୱଳ୍ପ ତଥ୍ୟକୁ ସଜାଡ଼ି ରଖିବା ପାଇଁ ସଂଯୋଜିତ କରିଥିଲେ ଗୋଟିଏ କ୍ଷୁଦ୍ର ପ୍ରକ୍ଷିପ୍ତ ଜୀବନ ଚରିତ । ଉଦ୍ଦେଶ୍ୟ ଥିଲା ଅଧିକ ତଥ୍ୟ ସଂଗ୍ରହ କରି ପୂର୍ଣ୍ଣାଙ୍ଗ କରିବେ ।

ଏହି ଉଦ୍ଦେଶ୍ୟରେ ୧୯୭୧ ସାଲର ମଧ୍ୟଭାଗରେ ଡାକ୍ତର ପଣ୍ଡା ପରଶୁରାମଙ୍କୁ ଅନୁରୋଧ ଜଣାଇଲେ ଶୀଘ୍ର ବାଲୁଗାଁ ଆସି ତାଙ୍କ ଜୀବନର ଅବଶିଷ୍ଟ

Digitized by PPRACHIN, SOA

ତଥ୍ୟ ଯୋଗାଇ ଦେବାପାଇଁ, ଯାହାଙ୍କୁ ପରଶୁରାମ ଅତ୍ୟନ୍ତ ଆଗ୍ରହ ସହ ସ୍ୱୀକୃତି ପ୍ରଦାନ କରିଥିଲେ । ହେଲେ ଏହି ପରିଦର୍ଶନ ସମ୍ଭବ ହୋଇ ନ ଥିଲା, ଆଉ ୧୯୭୨ ସାଲର ମଧ୍ୟଭାଗରେ ପରଶୁରାମଙ୍କର ମହାପ୍ରୟାଣ ଘଟିଲା । ପରଶୁରାମଙ୍କ ଉଦ୍ଦେଶ୍ୟରେ ସମାଜରେ ପ୍ରକାଶିତ ଶୋକବାର୍ତ୍ତାରେ ଡାକ୍ତର ପଣ୍ଡା ସୂଚନା ଦେଇଥିଲେ, ଯେ ପରଶୁରାମଙ୍କର ଜୀବନ ଚରିତ 'ଲକ୍ଷେ ଗୁରୁଙ୍କର ଗୁରୁ' ଶୀଘ୍ର ଛପାହେବ ।

ଏହି ଶୋକବାର୍ତ୍ତାରୁ ପ୍ରଥମେ ଜଣାପଡ଼ିଲା, ଏଭଳି ଏକ ଜୀବନୀ ରଚନାର ପ୍ରଚେଷ୍ଟା ସମ୍ପର୍କରେ । ହାଏ ! ଏହା ମଧ୍ୟ ରହିଗଲା ଅପୂର୍ଣ୍ଣ । ଆଉ ଅଚିରେ ଡାକ୍ତର ପଣ୍ଡା ପରଲୋକପ୍ରାପ୍ତ ହେଲେ ।

ଏହାର ଅନେକ ବର୍ଷ ପରେ, ପରଶୁରାମଙ୍କର ଅସମ୍ପୂର୍ଣ୍ଣ ଜୀବନ ଚରିତ 'ଲକ୍ଷେ ଗୁରୁଙ୍କର ଗୁରୁ' ଲେଖାଟି ମିଳିଥିଲା ଡାକ୍ତର ପଣ୍ଡାଙ୍କର ସୁଯୋଗ୍ୟ ପୁତ୍ର ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ସ୍ୱାଧୀନ କୁମାର ପଣ୍ଡାଙ୍କର ପରମ ସୌଜନ୍ୟରୁ । ସେଥିପାଇଁ ତାହାଙ୍କ ପ୍ରତି ଗଭୀର କୃତଜ୍ଞତା ଜଣାଉଛୁ ।

'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ରହିଥିଲେ, ମଧ୍ୟ ମଝିରେ ମଝିରେ ଅନେକ ତଥ୍ୟ ସଂଗ୍ରହ ହୋଇ ନ ପାରିଥିବାରୁ, ତାହା ଅସଂପୂର୍ଣ୍ଣ ରହିଥିଲା । ତେଣୁ ଏହାକୁ ସ୍ୱୟଂସଂପୂର୍ଣ୍ଣ ଗ୍ରନ୍ଥ ରୂପେ ଛାପିବା ସମ୍ଭବ ହେବ ନାହିଁ ଜାଣି, ତଥ୍ୟ ସଂଗ୍ରହ ଲାଗି ପ୍ରଚେଷ୍ଟା ହେଲା ।

୧୯୭୧ ସାଲରେ ପରଶୁରାମ ଡାକ୍ତର ରାଧାଚରଣ ପଣ୍ଡାଙ୍କୁ ଲେଖିଥିଲେ, 'ମୋ ଜୀବନୀ ମୋଠୁ ନ ଶୁଣିଲେ, ସେ ଜୀବନୀ ରହିଯିବ ଅପୂର୍ଣ୍ଣ ଆଉ ଖଣ୍ଡିତ ।' ମାତ୍ର ସେ ଶୁଣାଇବା ସମ୍ଭବ ହେଲା ନାହିଁ । ପୁସ୍ତକର ମୂଳ ତଥ୍ୟ ସହିତ, ଅସଂପୂର୍ଣ୍ଣ ରହିଥିବା ଅନ୍ୟ ସମସ୍ତ ତଥ୍ୟ ସଂଗ୍ରହ ଲାଗି ଉଦ୍ୟମ ହେଲା । ଏଥିପାଇଁ ସହାୟକ ଗ୍ରନ୍ଥ ଭାବରେ ପରଶୁରାମଙ୍କର ସହପାଠୀ ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ ନୀଳକଣ୍ଠଙ୍କର ଆତ୍ମଜୀବନୀ ଛଡ଼ା, ପଣ୍ଡିତ ବାଇକୋଳି ମହାପାତ୍ର ଜ୍ୟୋତିଷ ବିଶାରଦଙ୍କର ପ୍ରଣୀତ 'ଓଡ଼ିଆ ଆନ୍ଦୋଳନର ଇତିହାସ' ତଥା ଅନ୍ୟ ସମସାମୟିକ ପୁସ୍ତକମାନଙ୍କରୁ କିଛି ବିବରଣୀ ଆହରିତ ହୋଇଛି । ବ୍ୟକ୍ତିଗତ ତଥ୍ୟ, ପରଶୁରାମଙ୍କର ପରିବାରର ସଦସ୍ୟଙ୍କଠାରୁ ଆଉ ଦେଶମିଶ୍ରଣ ତଥା ଅନ୍ୟ ସାମାଜିକ ତଥ୍ୟ ଗଞ୍ଜାମରେ ତାଙ୍କର ଶିକ୍ଷକ ସହକର୍ମୀ ସ୍ୱର୍ଗତ ହରିବନ୍ଧୁ ନାୟକ, ଶ୍ରୀଯୁକ୍ତ ଅନ୍ତର୍ଯାମୀ ମହାପାତ୍ର (ଆସିକା), ପ୍ରାକ୍ତନ ଛାତ୍ର ସ୍ୱର୍ଗତ କୃତ୍ତିବାସ ନାୟକ ଆଦି ବହୁ ସୁହୃଦ ସଜ୍ଜନ ଏବଂ ଶ୍ରୀ ଅରବିନ୍ଦ ପାଠଚକ୍ରର ସମ୍ମାନନୀୟ ସଦସ୍ୟମାନଙ୍କଠାରୁ ସଂଗ୍ରହ କରାଯାଇଛି । ଏଥିପାଇଁ ସେମାନଙ୍କ ପାଖରେ ଗଭୀର କୃତଜ୍ଞତା ଜଣାଉଛୁ ।

Digitized by PPRACHIN, SOA

ଏ ସବୁକୁ ନେଇ ପୂର୍ଣ୍ଣାଙ୍ଗ ଜୀବନୀ ରଚନାର ପ୍ରୟାସ କରାଯାଇଛି । ହେଲେ ମୂଳ ଗୁରୁତ୍ୱପୂର୍ଣ୍ଣ ତଥ୍ୟଗୁଡ଼ିକ ସଂକଳିତ ହୋଇଛି ଡାକ୍ତର ରାଧାଚରଣ ପଣ୍ଡାଙ୍କର ରଚିତ ପରଶୁରାମଙ୍କର ଜୀବନ ଚରିତ 'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକରୁ । ତେଣୁ ବର୍ତ୍ତମାନର ପୂର୍ଣ୍ଣାଙ୍ଗ ଜୀବନୀ 'ଜ୍ଞାନର ସାଗର ପରଶୁରାମ' ବହିରେ, ଯେଉଁ ସବୁ ମୁଖ୍ୟ ବିବରଣୀଗୁଡ଼ିକ ଡାକ୍ତର ପଣ୍ଡାଙ୍କର ରଚିତ ପୁସ୍ତକରୁ ନିଆଯାଇଛି, ସେ ସବୁକୁ ଯଥାଯଥ ସ୍ଥାନରେ ସ୍ୱୀକୃତି ପ୍ରଦାନ କରାଯାଇ ସ୍ୱତନ୍ତ୍ର ଉଦ୍ଧୃତି ଭାବରେ ମୁଦ୍ରିତ କରାହୋଇଛି ।

ଏହି ପୂର୍ଣ୍ଣାଙ୍ଗ ଜୀବନୀକୁ ମୂଳତଃ ଡାକ୍ତର ପଣ୍ଡାଙ୍କର ପରିକଳ୍ପିତ ଜୀବନ ଚରିତର ସଂଯୋଜନା ମଧ୍ୟରେ ଢାଳିବାକୁ ଚେଷ୍ଟା କରାଯାଇଛି । ତେଣୁ ଏ ଲେଖାର ପରିସର ଓ ଲେଖକୀୟ ପରିସୀମା ମଧ୍ୟ ସୀମାବଦ୍ଧ ରହିଛି । ଏହି ନିର୍ଦ୍ଦିଷ୍ଟ ପରିସର ମଧ୍ୟରେ ଯେଉଁ ଜୀବନ ଚରିତର ଉପସ୍ଥାପନା କରାଯାଇଛି, ତାହାର କିଛି ଅପୂର୍ଣ୍ଣତା ସତ୍ତ୍ୱେ ସହୃଦ ପାଠକମାନଙ୍କୁ କିଞ୍ଚିତ ପରିମାଣର ତୃପ୍ତି ପ୍ରଦାନ କରିବ ବୋଲି ଆଶା କରାଯାଉଛି ।

ଏ ପୁସ୍ତକରେ ଅନ୍ୟ କିଛି ନ ହେଲେ ମଧ୍ୟ ଅନ୍ତତଃ ମିଳିପାରିବ, ଏ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ସ୍ଥିତି ଓ ସାମର୍ଥ୍ୟ ସମ୍ପର୍କରେ କିଛି ଆପେକ୍ଷିକ ଝଲକ ।

ସୁରସିଂହ ପଟ୍ଟନାୟକ



Digitized by PPRACHIN, SOA

# ସୂଚୀପତ୍ର



Digitized by PPRACHIN, SOA



ଜାତୀୟ ଗୌରବ ମଧୁସୂଦନ
( ୧୮୪୮ - ୧୯୩୪ )
(ପରମହଂସଙ୍କର ପ୍ରେରଣାର ଉତ୍ସ)

Digitized by PPRACHIN, SOA



ଅବସରକାଳୀନ ଜୀବନରେ ପରଶୁରାମ
( ୧୯୬୮ )

Digitized by PPRACHIN, SOA

# ଏକ ବିରଳ ବ୍ୟକ୍ତିତ୍ୱ

ସେ ଥିଲେ ଏକ ବିରଳ ବ୍ୟକ୍ତିତ୍ୱ ।

ଛ ଫୁଟିଉଚ୍ଚ ଚେହେରା ତୋଳି ସଦା ହାସ୍ୟମୁଖ ଆଉ କର୍ମଚଞ୍ଚଳ । ଶରୀର ଗଠନର ସୌଷ୍ଠବତାରେ, ବର୍ଣ୍ଣର ପ୍ରଖର ଉଜ୍ଜ୍ୱଳତାରେ ଆଉ ଅଭିବ୍ୟକ୍ତିର ପ୍ରାଣବନ୍ତ ପରିପ୍ରକାଶରେ, ସେ ପ୍ରଥମ ଦର୍ଶନରେ ସଭିଙ୍କର ମନରେ ଏକ ଅବିସ୍ମରଣୀୟ ଛାପ ଅଙ୍କି ଦେଇଯାଉଥିଲେ । ଊନବିଂଶ ଶତାବ୍ଦୀର ଅଭିଜାତ ସମ୍ପନ୍ନ ଭିକ୍ଟୋରିଆନ୍ ଶୈଳୀର ଶ୍ମଶ୍ରୁ ରୁମଣ୍ଡିତ ମୁଖମଣ୍ଡଳ ଆଉ ଢିଲା ମଠାରଙ୍ଗର ଲମ୍ବା ଟପର କୋଟ ପରିହିତ ସୁଦୀର୍ଘ ଶରୀର ଯେତେ କ୍ଷିପ୍ର ପଦପାତରେ ଅଗ୍ରସର ହେଉଥିବା ପରଶୁରାମ ବର୍ମାଙ୍କୁ ଦୂରରୁ ଦେଖିଲେ କବିଗୁରୁ ରବୀନ୍ଦ୍ରନାଥଙ୍କର ରୂପଛବି ଆଖି ଆଗରେ ପ୍ରତିଭାତ ହେଉଥିଲା । ମାତ୍ର ତାଙ୍କର ବ୍ୟକ୍ତିତ୍ୱରେ ସ୍ୱାଭିମାନ ଆଉ ଆଭି-ଜାତ୍ୟର ଏପରି ସମନ୍ୱୟ ହୋଇଥିଲା ଯେ, ତାଙ୍କରି ଉଚ୍ଛଳ ଉପସ୍ଥିତି ହିଁ ସଭିଙ୍କୁ ତୀବ୍ର ଭାବରେ ପ୍ରଭାବିତ କରୁଥିଲା, ଏକ ପ୍ରଖର ବ୍ୟକ୍ତିତ୍ୱର ଔଦାର୍ଯ୍ୟମୟ ପରି-ପ୍ରକାଶରେ ।

ସେଥିପାଇଁ ବହୁବାର ମାଟ୍ରିକ ପରୀକ୍ଷାରେ ଫେଲ ହୋଇଥିବା ଜଣେ କେରଳର ଛାତ୍ର ତାହାର ସମ୍ପର୍କୀୟଙ୍କର ଜରିଆରେ ଆସି ରସୁଲକୁଣ୍ଡା (ଭଞ୍ଜନଗର) ହାଇସ୍କୁଲରେ ପରଶୁରାମଙ୍କର ପ୍ରଥମ କ୍ଲାସରେ ଯୋଗ ଦେଇସାରି ସ୍ୱତଃ କହି ଉଠିଥିଲା, "ଏପରି ଅପରାଜେୟ ଆଉ ଦୀପ୍ତ ବ୍ୟକ୍ତିତ୍ୱ ପାଖରେ, ମୋର ପରାଜୟର ସ୍ଥାନ କାହିଁ ? ମୁଁ ଏଥର ନିଶ୍ଚୟ ପାଶ କରିବି ।" ତାହାହିଁ ସତ୍ୟ ହୋଇଥିଲା ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ୧୮୭୮ ସାଲରେ ଜନ୍ମ ଗ୍ରହଣ କରିଥିବା ପରଶୁରାମଙ୍କର କର୍ମବ୍ୟସ୍ତ ଚାକିରିଆ ଜୀବନ ଶେଷ ହୋଇଥିଲା, ଏହି ଶତାବ୍ଦୀର ମଧ୍ୟଭାଗରେ । ଏହା ପରେ ସେ ବିତାଇଥିଲେ ତିରିଶି ବର୍ଷର କର୍ମମୁଖର ଅବସର କାଳୀନ ଜୀବନ । ତାଙ୍କର ପ୍ରାୟ ଶହେ ବର୍ଷ ବ୍ୟାପୀ ସୁଦୀର୍ଘ ଜୀବନ, ଅନ୍ୱେଷଣ ଆଉ ଅନୁସନ୍ଧିତ୍ସା ଲାଗି ସମର୍ପିତ ହୋଇଥିଲା । ଦେଶ ମାତୃକାର ସେବାରେ ତାଙ୍କର ଜୀବନର କିଛି ମହତ୍ତ୍ୱପୂର୍ଣ୍ଣ ବର୍ଷ ମଧ୍ୟ ଉତ୍ସର୍ଗୀକୃତ ହୋଇ ତାଙ୍କର ପ୍ରାଣରେ ସାର୍ଥକତାର ସ୍ୱାଦ ଭରି ଦେଇଥିଲା ।

ଜୀବନର ପ୍ରତିଟି ମୁହୂର୍ତ୍ତକୁ ସେ ପରମ ତୃପ୍ତିର ସହ ଉପଭୋଗ କରୁଥିଲେ । ଏହାହିଁ ଥିଲା ତାଙ୍କର ପ୍ରାୟ ଦୀର୍ଘ ଶହେବର୍ଷ ବ୍ୟାପୀ ନିରାମୟ ଜୀବନ ଯାପନର

Digitized by PPRACHIN, SOA

ଏକମାତ୍ର ପୁତ୍ର । ତାଙ୍କର ସହପାଠୀ ପଣ୍ଡିତ ଗୋଦାବରୀଶଙ୍କର ପରି ଚେମ୍ବର୍ସ ଡିକ୍ସନାରୀର ପ୍ରତିଟି ଶବ୍ଦକୁ ସେ ଆୟତ୍ତ କରିଥିଲେ ଏବଂ ସଂସ୍କୃତ ସାହିତ୍ୟ ଓ ଦର୍ଶନ ଶାସ୍ତ୍ରରେ ତାଙ୍କର ପାଣ୍ଡିତ୍ୟ ଥିଲା ଅପରିସୀମ । କେତେକ ଜଟିଳ ବୈଜ୍ଞାନିକ ତତ୍ତ୍ୱକୁ ଛାଡ଼ିଦେଲେ ପ୍ରତ୍ୟେକ ଶାସ୍ତ୍ର ବା କ୍ଷେତ୍ରରେ ତାଙ୍କର ଜ୍ଞାନ ଥିଲା ପର୍ଯ୍ୟାପ୍ତ । ତେଣୁ ସମସ୍ତ ଆଲୋଚନାରେ ସେ ଅଂଶଗ୍ରହଣ କରୁଥିଲେ ପରମ ଆଗ୍ରହ ଓ ଉଦ୍ଦୀପନାର ସହ । ସେ କେବଳ ପ୍ରବୀଣ ଦାର୍ଶନିକ ବିଶେଷଜ୍ଞ ଥିଲେ ଭାରତୀୟ ଓ ପାଶ୍ଚାତ୍ୟ ଦର୍ଶନ, ଇଂରାଜୀ ସାହିତ୍ୟ, ରାଜନୀତି ଆଉ ରନ୍ଧନଶାସ୍ତ୍ରରେ । ଦର୍ଶନ ଆଉ ରନ୍ଧନ, ଜୀବନର ଦୁଇଟି ବିପରୀତମୁଖୀ ଦିଗ । ମାତ୍ର ତାହାହିଁ ଅପୂର୍ବଭାବେ ସମନ୍ୱିତ ହୋଇଥିଲା ତାଙ୍କର ଅତୁଳନୀୟ ବ୍ୟକ୍ତିତ୍ୱରେ ।

ସେ ଥିଲେ ସ୍ୱାଧୀନତା ପୂର୍ବଯୁଗର ପ୍ରଖ୍ୟାତ ଶିକ୍ଷାବିତ୍, ଦେଶମିଶ୍ରଣ ଆନ୍ଦୋଳନର ଜଣେ ମୁଖ୍ୟ ଉଦ୍ୟୋକ୍ତା ଆଉ ଓଡ଼ିଆ ସ୍ୱାଭିମାନର ପ୍ରଚଣ୍ଡ ପ୍ରେରଣାଦାୟୀ ପ୍ରକାଶକ । ଆଉ ସେ ପୁଣି ଥିଲେ ସ୍ୱାଧୀନତା ସଂଗ୍ରାମର ଅକୁଣ୍ଠ ସମର୍ଥକ ଓ ପ୍ରଚ୍ଛନ୍ନ ପୃଷ୍ଠପୋଷକ । ତାଙ୍କର ଜୀବନଟିସାରା ବିତିଯାଇଥିଲା ଦର୍ଶନ ଶାସ୍ତ୍ରର ପ୍ରତ୍ୟେକ ବିଭାଗ ଆଉ ଅନୁବିଭାଗର ବିଶ୍ଳେଷଣ ଆଉ ତର୍କମାରେ । ବିଭିନ୍ନ ଧର୍ମଶାସ୍ତ୍ରର ଅଧ୍ୟୟନ ସହ ଆଧ୍ୟାତ୍ମିକ ସାଧନାର ପ୍ରତ୍ୟେକ କ୍ଷେତ୍ରକୁ, ସେ ଗ୍ରହଣ କରି ଅନୁଶୀଳନ କରିଥିଲେ ଏବଂ ପୁରୀରେ ବିଭିନ୍ନ ସମ୍ପ୍ରଦାୟର ଆସି ପହଞ୍ଚିଥିବା ଆଧ୍ୟାତ୍ମିକ ବିଭୂତିମାନଙ୍କସହ ଆଲୋଚନାରେ ଭାଗ ନେଉଥିଲେ । ସ୍ୱାମୀ ନିଗମାନନ୍ଦଙ୍କର ସହିତ ତାଙ୍କର ଦୀର୍ଘ ଆଲୋଚନାର ବିବରଣୀ ସ୍ଥାନ ପାଇଛି ନିଗମାନନ୍ଦ ଗ୍ରନ୍ଥାବଳୀରେ ।

ପରଶୁରାମଙ୍କର ଜୀବନଟି ସାରା ବିତିଯାଇଥିଲା ଅଧ୍ୟୟନ ଆଉ ଅଧ୍ୟାପନାରେ । ତାଙ୍କର ପଠନର ଆଗ୍ରହ ଥିଲା ଅପରିସୀମ । ତେଣୁ ମହାନ୍ ଗବେଷକ ଡାକ୍ତର ରାଧାଚରଣ ପଣ୍ଡା ପରଶୁରାମଙ୍କର ନିଜସ୍ୱ ଗ୍ରନ୍ଥାଗାରର ରାଶି ରାଶି ପୁସ୍ତକର ସମାବେଶରେ ପ୍ରତି ପୁସ୍ତକର ବହୁ ପୃଷ୍ଠାରେ ତାଙ୍କଦ୍ୱାରା ରେଖାଙ୍କିତ ଧାଡ଼ିରେ କିଛି ମନ୍ତବ୍ୟ ସୂଚିତ ହୋଇଥିବା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଲେଖିଥିଲେ "ଏହିପରି ପଢ଼ୁଆ, ମୁଁ ଅନ୍ୟ କେଉଁଠାରେ ଦେଖିନାହିଁ ।"

ଚିଲିକାର ଅଭ୍ୟନ୍ତରର ଇଲାକା, ଯେଉଁଠାରେ ଦିଗ୍‌ବଳୟର ସୀମାନ୍ତ ଛୁଇଁ ଉଦ୍‌ବେଳିତ ଜଳର ଉଚ୍ଛ୍ୱାସ ଆଉ ଊର୍ଦ୍ଧ୍ୱସ୍ଥିତ ଆକାଶରେ ବିଭିନ୍ନ ରଙ୍ଗରେ ମଖା ଭସାମେଘର ଅବର୍ଣ୍ଣନୀୟ ଲୀଳା, ଯାହାର ପ୍ରତିବିମ୍ବନରେ ପରିବେଶ ହୁଏ କେତେ ବର୍ଣ୍ଣିଳ ଆଉ ଚମତ୍କୃତ । ସେହି ଆବେଷ୍ଟନୀରେ ବିତିଯାଇଥିବା ପରଶୁରାମଙ୍କର ବାଲ୍ୟ ଜୀବନର ପ୍ରକୃତି ସହିତ ସମ୍ପର୍କ ଥିଲା କେତେ ଅଚ୍ଛେଦ୍ୟ ଆଉ ଅବିସ୍ଖଳିତ । ଥରେ ଏକ ପ୍ରଶ୍ନର ଉତ୍ତର ଦେଇ ପରଶୁରାମ କହିଥିଲେ, 'ମୋର ପ୍ରିୟତମ ଋତୁ ହେଉଛି ବର୍ଷାକାଳ, ଯେଉଁ ସମୟରେ ଆକାଶରେ ଶୋଭାପାଏ

Digitized by PPRACHIN, SOA

ଅଶାନ୍ତ ବଉଦର ଘନଘଟା ଆଉ ତା ସହିତ ବହିଗଲେ ଢେଉ ଢେଉକା ମେଘର ଅସରନ୍ତ ପ୍ରବାହ ଯାହାକୁ ମୁଁ ହତବାକ ହୋଇ ଚାହିଁ ରହୁଥାଏ ଘଣ୍ଟା ପରେ ଘଣ୍ଟା ବୋଧହୁଏ ଆଖିରେ ପଲକ ନ ପକାଇ ।

ସେହି ବର୍ଷାଋତୁରେ ବିସ୍ତାରରେ କେବେ ପ୍ରସାରିତ ହୁଏ ଚିଲିକା, ଆକାଶ ଛୁଆଁ ଦିଗନ୍ତବିସ୍ତାରୀ ଜଳରାଶି ଉପରେ ଘନ ମେଘର ଆବରଣ, କି ଲୋଭନୀୟ ସତେ !

ସେଦିନ କେତେଜଣ ଝିଅମାନେ ଆସି ଅଳିକଲେ, ଟେବୁଲ୍ କ୍ଲଥର୍ ଉପରେ ଉତୁରି ଉଠିଥିବା ଏମ୍ବ୍ରୋଡରୀ ଲତାର ଧାରେ ଧାରେ, ଗୋଟିଏ ସ୍ୱତନ୍ତ୍ର ଉକ୍ତିଟିଏ ସୂଚିତ କରିବା ପାଇଁ; ଯାହାକୁ ସେମାନେ ଫୁଟାଇବେ ରଙ୍ଗୀନ ସୂତାର ମାଧ୍ୟମରେ ସେହି କନା ଉପରେ । ସାଙ୍ଗେ ସାଙ୍ଗେ ପରଶୁରାମଙ୍କର କଣ୍ଠରୁ ଉତ୍ସାରିତ ହେଲା ବେଦାନ୍ତର ପଂକ୍ତି ଛୁଆଁ ଗୋଟିଏ ସ୍ୱତନ୍ତ୍ର ଅଭିବ୍ୟକ୍ତ କବିତାର ମାଧ୍ୟମରେ ।

'ରସୋ ବୈ ସଃ ବୋଲି କହନ୍ତି ଯାହାକୁ,
ଚାହୁଁ ତାର ଅଂଶ ତା'ପରି ହେବାକୁ ।'

ଏଥିରେ ବୋଧହୁଏ ଧ୍ୱନିତ ହୋଇଥିଲା, ପରଶୁରାମଙ୍କର ସମସ୍ତ ଜୀବନରେ ଗୁଞ୍ଜରିତ ହୋଇଥିବା ତାତ୍ତ୍ୱିକ ଦର୍ଶନର ମୂଳସ୍ୱରଟି । ରସର ଉଚ୍ଛଳ ତରଙ୍ଗ ମଧ୍ୟରେ ଅଧିଷ୍ଠାନ କରିଥିବା ରସର ସର୍ବୋତ୍ତମ ଘନ ବିଗ୍ରହ ସେହି ପରମ ସତ୍ତାଙ୍କର-ଠାରୁ ଉତ୍ସାରିତ ହୋଇଛି, ଏହି ସମସ୍ତ ସୃଷ୍ଟି, ତାଙ୍କର ଅଂଶ ରୂପରେ । ସେହି ପରମ ଅଂଶରୁ ସୃଷ୍ଟ ମଣିଷ କ୍ରମବିକାଶର ଧାରାରେ ନିତ୍ୟ ପ୍ରଧାବିତ ପରିପୂର୍ଣ୍ଣତା ଲାଭକରି, ମୂଳ ସ୍ୱରୂପ—ସେହି ରସର ସାଗରରେ ଝାସ ଦେବା ପାଇଁ । ହେଲେ ଏହି ଝାସ ଦେବାଲାଗି ସମର୍ପଣ ନିଷ୍ପତ୍ତି ନୁହେଁ । ତାହାର ଏକମାତ୍ର ସର୍ତ୍ତ ହେଉଛି 'ତାହାପରି ହେବାକୁ' । 'ତାହା ପରି ହେବାର' ପ୍ରୟାସ ହିଁ ସମସ୍ତଜୀବନର ସାଧନା ।

ସେହି ସାଧନା ପାଇଁ ନିବେଦିତ ଥିଲା ପରଶୁରାମଙ୍କର ସମସ୍ତ ଜୀବନ । ସେଇଥିପାଇଁ ତାଙ୍କର ଜୀବନରେ ରସର ସ୍ଫୁରଣ ଥିଲା କେତେ ମାର୍ମିକ ଆଉ କେତେ ଅବିରଳ ।

Digitized by PPRACHIN, SOA

# ମାଲୁଦ

**ମାଲୁଦ**—ପରଶୁରାମ ବର୍ମାଙ୍କର ନିଜ ଗ୍ରାମ ଥିଲା ଚିଲିକା ଅଭ୍ୟନ୍ତରର ଅବସ୍ଥିତ ମାଲୁଦ ଦ୍ୱୀପରେ । ମାଲୁଦ ଗ୍ରାମର ଗୋଟିଏ ସମ୍ଭ୍ରାନ୍ତ ସମ୍ପନ୍ନ ସମ୍ଭ୍ରାନ୍ତ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ସେ କାଳର ଏହି ମାଲୁଦ ସମ୍ପର୍କରେ ବିଶଦ ବିବରଣୀ ଏଠାରେ ସଙ୍କଳିତ ହୋଇଛି ଡାକ୍ତର ରାଧାଚରଣ ପଣ୍ଡାଙ୍କର ପରଶୁରାମଙ୍କର ଜୀବନୀ ସମ୍ବନ୍ଧୀୟ ମୂଳଲେଖା 'ଲିଙ୍କେ ଗୁରୁଙ୍କର ଗୁରୁ' ପୁସ୍ତକରୁ ଏହିପରି ସ୍ୱରରେ ।

**ମଲ୍ଲକୁଦ**—ଓଡ଼ିଶାର ପ୍ରକୃତ ସୁନ୍ଦରୀ 'ଚିଲିକା' ହ୍ରଦ ମଧ୍ୟରେ ମାଲୁଦ ଏକ ପ୍ରଗଣା । ଓଡ଼ିଶାର ସ୍ୱାଧୀନ ରାଜାମାନଙ୍କ ସମୟରେ ଏଠାରେ ଜଣେ "ମୁହାଣ ରକ୍ଷକ" ଥିଲେ । ତାହାଙ୍କର ମୁହାଣ 'କଂଭର' ବୋଲି ଉପାଧି ଥିଲା । ତାଙ୍କ ଅଧୀନରେ 'ମଲ୍ଲ' ବା ଯୋଦ୍ଧାମାନେ ଥିଲେ । ଏହି ମଲ୍ଲଙ୍କ ଯୋଗୁଁ ଗାଁ ନା ହେଲା ମାଲି—ମଲ୍ଲକୁଦ । ଏବେ ଯେଉଁ କେତେ ଘର 'ପାଏକ' ଏଠାରେ ଅଛନ୍ତି, ସମସ୍ତେ ସେହି ମଲ୍ଲଙ୍କର ବଂଶଧର ଅଟନ୍ତି । ଏ ସମସ୍ତେ ଯୁଦ୍ଧବେଳେ ଓଡ଼ିଶା ରାଜାଙ୍କ ପାଇଁ ଯୁଦ୍ଧ କରୁଥିଲେ । ଏବଂ ଦେଶ ଶାନ୍ତିବେଳେ କୃଷି ବ୍ୟବସାୟ କରି ଚଳୁଥିଲେ । ମାଲୁଦର ଦକ୍ଷିଣ ପଟରେ 'ବଜ୍ରକୋଟ', ଉତ୍ତର ପଟରେ 'ପାରିକୁଦ' ଦ୍ୱୀପପୁଞ୍ଜ । ବଜ୍ରକୋଟ, ମାଲୁଦ, ପାରିକୁଦ, ମାଣିକ ପାଟଣା ଓ ଅନ୍ଧାରୀ—ଏ ପାଞ୍ଚ ପ୍ରଗଣାକୁ 'ଜାଗିରୀ ମାହାଲ' କୁହାଯାଉଥିଲା । ଜାଗିରୀ ମାହାଲର ପୂର୍ବପଟରେ ଦକ୍ଷିଣ ଉତ୍ତର ହୋଇ ଏକ ଓସାରିଆ ବାଲିବନ୍ଧ ଅଛି । ତାକୁ **'ତଣ୍ଡା କନାର'** କହନ୍ତି ।

୧୮୦୩ ଖ୍ରୀଷ୍ଟାବ୍ଦ ପୂର୍ବରୁ ଗଞ୍ଜାମର ଯାତ୍ରୀମାନେ ଏହି 'ତଣ୍ଡା କନାର' ଦେଇ ପୁରୀ ଯା ଆସ କରୁଥିଲେ । ବାଟରେ ପ୍ରତି ଛଅମାଇଲ ଦୂରରେ ଯାତ୍ରୀଙ୍କ ପାଇଁ ଗୋଟିଏ ଗୋଟିଏ "ପାନ୍ଥନିବାସ" ଏବଂ ଯାତ୍ରୀଙ୍କ ବ୍ୟବହାରପାଇଁ ଗୋଟିଏ ଗୋଟିଏ କୂଅ ଖୋଳା ଯାଇଥିଲା । ତଣ୍ଡା କନାରର ପୂର୍ବକୁ ଲାଗି ସମୁଦ୍ର ପଶ୍ଚିମପଟ ଚିଲିକା ।

ପୂର୍ବେ ମାଲୁଦରେ ଏକ ପଠାଣ ଜମାଦାର **ଫତେ ମହମ୍ମଦ** ବାସ କରୁଥିଲା । ମରହଟ୍ଟାମାନେ ଓଡ଼ିଶା ଶାସନ କରୁଥିଲା ବେଳେ ଏହି ଜମାଦାର ନଦୀ ମୁହାଣ ଜଗୁଥିଲା । ଶତ୍ରୁକୁ ମୁହାଣ କିମ୍ବା ତଣ୍ଡା କନାର ଦେଇ ଯା' ଆସ ନ କରାଇବା ପାଇଁ 'ଫତେ ମହମ୍ମଦ' ଜଗୁଆଳି ଥିଲା । କିନ୍ତୁ ୧୮୦୩ରେ ଇଂରେଜ ପ୍ରତିନିଧି, ଫତେ ମହମ୍ମଦକୁ ଫୁସୁଲାଇ ଗଞ୍ଜାମ ଅଞ୍ଚଳରୁ ନିଜ ସୈନ୍ୟଙ୍କୁ ଏହି ତଣ୍ଡା କନାର ବାଟ ଦେଇ ଯାଇ ପୁରୀକୁ ବିନା ଯୁଦ୍ଧରେ

Digitized by PPRACHIN, SOA

ଦଖଲ କଲେ । ଫଳରେ ଫତେ ମହମ୍ମଦ ଓ ଜାଗିର ମାହାଲର ମାଲିକ ହେବାପାଇଁ ଇଂରେଜଙ୍କଠାରୁ ଏକ ସନନ୍ଦ ପାଇଥିଲେ ।

ମରହଟ୍ଟାମାନଙ୍କର ଅନ୍ନଜଳ ଖାଇ ଇଂରେଜମାନଙ୍କୁ ସାହାଯ୍ୟ କରିଥିବାରୁ ଲୋକମାନେ ଫତେ ମହମ୍ମଦକୁ ନିମକହରାମ ଜାଗିରଦାର ବୋଲି ଡାକୁଥିଲେ ।

ଜାଗିର ପାଇବା ଦୁଇପୁରୁଷ ମାତ୍ର ଫତେ ମହମ୍ମଦ ଓ ତାଙ୍କ ପୁଅ ଏ ଅଞ୍ଚଳର ଆୟ ଭୋଗକଲେ । ତୃତୀୟ ପୁରୁଷବେଳକୁ ଏ ସମସ୍ତ ସମ୍ପତ୍ତି ନିଲାମ ହେଲା । ୨୨ ଜଣ ସବୁ ବାଣ୍ଟି କୁଣ୍ଟି ନେଇଗଲେ, ପରେ ତାଙ୍କର ବଂଶଧରମାନେ ଖୋଜେ ଓପାସେ ଦିନ କାଟିଲେ ।

**ପଙ୍କରୁ ପଦ୍ମ**—ଦେବ ଦେବ ମହାଦେବଙ୍କ ମୁଣ୍ଡରେ ଲାଗି କରାଯାଇଥିବା ପଦ୍ମ କେବଳ ପଙ୍କରୁ ଫୁଟେ । ବଡ଼ ଆଶ୍ଚର୍ଯ୍ୟର କଥା—ନୁହେଁ ? ସେଥିପାଇଁ କବି ଗାଇଥିଲେ—

କୋଟି ଲବଣ୍ୟ ନିଧିରେ ପଦ୍ମ ରୂଢ଼,
କି ଅମୃତେ ତୋ ତନୁ ଗଢ଼ିଲା ବିଧି । (ମଧୁସୂଦନ ରାଓ)

ଏଭଳି ପଦ୍ମ ଫୁଟେ ପଙ୍କରୁ । କମ ଆଶ୍ଚର୍ଯ୍ୟ ?

ଗୋଲାପ ଗଛରେ ରହେ ମୁନିଆଁ କଣ୍ଟା । ସୁବାସିତ ମହୀଗଛରେ ରହେ ନାଗ ସାପ । ଏସବୁ ପ୍ରକୃତିର ରହସ୍ୟ ।

ଲୁଣିଆ ଚିଲିକା ହ୍ରଦ ଦେଇ କେଉଁ ଦୂର ଅପନ୍ତରର ଅବହେଳିତ ଅଝାରୁଆ ମାଳୁଦ ଦ୍ୱୀପ ।

ଏହି ମାଳୁଦର ଜରଣ ସାହିରେ ପରଶୁରାମ ନିଜର ପିଲାଦିନ କାଟିଥିଲେ । ଏହିଠାରେ ହିଁ ଚଟି ଶିକ୍ଷା ଲାଭ କରିଥିଲେ ବାଲ୍ୟ କାଳରେ । ଏଇଥିପାଇଁ ପରଶୁରାମଙ୍କୁ ମୁଁ କହେ "ପଙ୍କରୁ ପଦ୍ମ" ।

(ଡାକ୍ତର ପଣ୍ଡାଙ୍କର ଲିଖିତ ପରଶୁରାମଙ୍କ ଜୀବନ ଚରିତ 'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକରୁ ଆହୃତ)

---

Digitized by PPRACHIN, SOA

# ବାଲ୍ୟକାଳ ଓ ଶିକ୍ଷାର ପ୍ରାରମ୍ଭ

ଜୀବନର ସ୍ଫୁରଣ ଆଉ ଜନ୍ମ ଆକସ୍ମିକ ଘଟଣା । ବେଳେବେଳେ ଜୀବନର ଗତିପଥ ମଧ୍ୟ ସେହି ଆକସ୍ମିକତାର ଚଢ଼ା ଉତ୍ତର ଦେଇ ଲମ୍ବି ଯାଇଥାଏ । ନିଜର ଅଜାଣତରେ, କିନ୍ତୁ ଅଭାବନୀୟ ଘଟିଯିବାର ଆକସ୍ମିକତା ହିଁ, ପରଶୁରାମଙ୍କର ଜୀବନକୁ ବହୁ ବିଚିତ୍ରତାରେ ଭରି ଦେଇଛି । ତାହାହିଁ ପ୍ରତିଫଳିତ ହୋଇଛି ତାଙ୍କର ଜୀବନ ଚରିତରେ ।

**ନିରଞ୍ଜନ ପଟ୍ଟନାୟକ—**

ଲୁଣିଆ ପାଣି ଘେରା ଚିଲିକାର ଅନ୍ଧାରୁଆ ସେହି ମାଲୁଦ ଦ୍ୱୀପରୁ ହଠାତ୍ ଛିଟିକି ହୋଇ ପଡ଼ିଥିଲେ କିପରି କେଜାଣି ମାଲୁଦର ଅଧିବାସୀ ନିରଞ୍ଜନ ପଟ୍ଟନାୟକ ଭଞ୍ଜଭୂମି ରସଲକୁଣ୍ଡା (ଭଞ୍ଜନଗର)କୁ । କିପରି ଆସି ସେ ଏଠାରେ ପହଞ୍ଚିଗଲେ, ସେ ବିବରଣୀ ମିଳିନାହିଁ । ହେଲେ ନିରଞ୍ଜନ ଏଠାରେ ଇଂରାଜୀ ଭାଷାରେ ଶିକ୍ଷା ଲାଭକରି ପାରଦର୍ଶିତା ହାସଲ କରିଥିଲେ । ନିକଟରେ ଅବସ୍ଥିତ ଥିବା ମାଳ ଅଞ୍ଚଳର ସଂସ୍ପର୍ଶରେ ଆସି ସେ ଅଧ୍ୟୟନ କରିପାରିଥିଲେ କନ୍ଧମାନଙ୍କର ଜନଜୀବନର ଭାଷାକୁ । ସେ ସମୟର କନ୍ଧମାଳ ଅଞ୍ଚଳରେ ଶାସନ ପରିଚାଳନା ଲାଗି ଆବଶ୍ୟକ ଥିଲା ଉଭୟ ଭାଷାରେ ସମୁଚିତ ଜ୍ଞାନ । ଏହି ଆବଶ୍ୟକତାକୁ ପୂରଣ କରିଥିଲେ ନିରଞ୍ଜନ ପଟ୍ଟନାୟକ । ସେ ହୋଇଥିଲେ କନ୍ଧ ଭାଷାର ଇଂରାଜୀ ବିଶ୍ଳେଷକ (ଇଣ୍ଟର୍‌ପ୍ରିଟର) । ସେହି ପଦରେ ହିଁ ତାଙ୍କର ନିଯୁକ୍ତି ଥିଲା ସରକାରୀ କର୍ମଚାରୀ ରୂପେ ।

ଉତ୍କଳ ଦୀପିକାର ଅକ୍ଟୋବର ୧୮୭୦ ସଂଖ୍ୟାରେ ପ୍ରକାଶିତ ବିବରଣୀରୁ ଜଣାଯାଏ, ଯେ ସେ ସମୟରେ ସମସ୍ତ ଦକ୍ଷିଣ ଓଡ଼ିଶାରେ ଇଂରାଜୀ ଓ ତେଲୁଗୁ ଭାଷା କୋର୍ଟ କଚେରୀର ଭାଷା ରୂପେ ମାନ୍ୟତା ପାଇଥିଲା । ଏହା ବିରୁଦ୍ଧରେ ପ୍ରତିବାଦ ଜଣାଇ, ଓଡ଼ିଆ ଭାଷା ପ୍ରଚଳନ ନିମନ୍ତେ, ୧୮୭୦ ସେପ୍ଟେମ୍ବର ମାସରେ ଦୀନବନ୍ଧୁ ପଟ୍ଟନାୟକଙ୍କର ଅଧ୍ୟକ୍ଷତାରେ, ଗଞ୍ଜାମବାସୀଙ୍କର ଏକ ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ସେଥିରେ ଯୁକ୍ତି ଦିଆଯାଇଥିଲା, ଇଂରେଜ ଶାସନର ପରିଚାଳନାରେ ଗଞ୍ଜାମରେ ତଥା କନ୍ଧମାଳ ଅଞ୍ଚଳରେ ସାଧାରଣ ପ୍ରଶାସନରେ ଦୋଭାଷୀ ବିଶେଷଜ୍ଞ ଭାବରେ ଦକ୍ଷତାର ସହ ଓଡ଼ିଆ ଅଫିସରମାନେ କାର୍ଯ୍ୟ କରୁଥିଲେ ମଧ୍ୟ ଓଡ଼ିଆ ଭାଷାକୁ କାହିଁକି ମାନ୍ୟତା ଦିଆଯାଉନାହିଁ ? ]

**ଜନ୍ମ**—ନିରଞ୍ଜନ ପଟ୍ଟନାୟକ ସରକାରୀ କାର୍ଯ୍ୟରେ ଇଂରେଜ ସାହେବ-ମାନଙ୍କ ସହ ଗସ୍ତରେ ଯାଇ କନ୍ଧମାନଙ୍କର ଅପତ୍ତି, ଅଭିଯୋଗ ଓ ବକ୍ତବ୍ୟକୁ ଇଂରାଜୀ ଭାଷାରେ ବିଶ୍ଳେଷଣ କରି ସାହେବମାନଙ୍କୁ ବୁଝାଉଥିଲେ । କନ୍ଧମାନଙ୍କ

Digitized by PPRACHIN, SOA

ବିଷୟରେ ଗବେଷଣା କରୁଥିବା ଇଂରାଜୀ ବିଶେଷଜ୍ଞମାନଙ୍କୁ ଆବଶ୍ୟକ ତଥ୍ୟ ଯୋଗାଉଥିଲେ । ରସୁଲକୁଣ୍ଡାଠାରେ ଅବସ୍ଥାପିତ ଏହି ଚାକିରି କାଳରେ ତାଙ୍କର ବିବାହ ହୋଇଥିଲା ସମୀପସ୍ଥ କୁରାଳ ଗ୍ରାମରେ, ଧୂମୁସର ରାଜବଂଶର କନ୍ୟା ଲଳିତା ଦେବୀଙ୍କର ସହ । ଜ୍ୟେଷ୍ଠ ପରଶୁରାମ ୧୮୭୮ ସାଲରେ ନିଜର ମାମୁଁଘର ଗାଁ କୁରାଳରେ ଜନ୍ମଗ୍ରହଣ କରିଥିଲେ ।

ପରଶୁରାମ ପ୍ରଥମ ସନ୍ତାନରୂପେ ବାପମା'ଙ୍କର ନୟନର ମଣି ହୋଇଥିଲେ । ଅତି ଆଦର ଯତ୍ନରେ ପ୍ରତିପାଳିତ ହୋଇଥିଲେ । ମାତ୍ର ବିଧିର ବିଧାନ ଅନ୍ୟଥା ଥିଲା । କେଉଁ ଦୁର୍ଦ୍ଦିନର କଳାଛାଇ ତାଙ୍କ ଜୀବନ ଉପରକୁ ଘୋଟି ଆସିଲା । ସ୍ନେହ ଯତ୍ନରେ ବଢ଼ୁଥିବା ପରଶୁରାମ ହଠାତ୍ ହୋଇଗଲେ ଅରକ୍ଷ ଆଉ ଅନାଶ୍ରିତ । ସେ ଅକାଳରେ ହରାଇ ବସିଲେ ନିଜର ପ୍ରାଣରୁ ବଳି ପ୍ରିୟ ବାପା ଓ ମାଆଙ୍କୁ । ଜୀବନରେ କେତେଣିକ ରହିଲା ଦୈନ୍ୟ ଆଉ ଅସହାୟ ବୋଧ ।

ମାତ୍ର ପାଞ୍ଚବର୍ଷ ବୟସରେ ସେ ଜୀବନର ଘଟଣାବଳୀର ପ୍ରବାହରେ ଧକ୍କା ଖାଇ ରସଲକୁଣ୍ଡାରୁ ଆସି ଛିଟିକି ହୋଇ ପଡ଼ିଲେ ଲୁଣିପାଣି ଘେରା ଅଣ୍ଡାକୁଆ ସେହି ମାଲୁଦ ଗାଁରେ । ସେହି ଅବେଳାରେ ତାଙ୍କୁ ଅତ୍ୟନ୍ତ ଯତ୍ନ ସହକାରେ କୋଳକୁ ସାଉଁଟି ନେଇଥିଲେ ବଡ଼ମା । ତାଙ୍କର ସଣତର ଆଶ୍ରାରେ ପରଶୁରାମଙ୍କର ବଢ଼ିଲା ବୟସର ବେଶ୍ କିଛି ବର୍ଷ କଟିଯାଇଥିଲା । ବଡ଼ମା'ଙ୍କର ଛଡ଼ା ଦାଦି ଦଧିବାମନ ପଟ୍ଟନାୟକଙ୍କର ଆଦର ସ୍ନେହରେ ସେ ମଧ୍ୟ ପ୍ରତିପାଳିତ ହୋଇଥିଲେ ।

ତାଙ୍କର ପିଲା ଦିନଟି କଟିଥିଲା ସାଙ୍ଗପିଲାଙ୍କ ମେଳରେ । ପାଠପଢ଼ା ପ୍ରତି କୌଣସି ଧ୍ୟାନ ଦିଆଯାଇ ନ ଥିଲା । ସେ ସାଥି ପିଲାଙ୍କ ସଙ୍ଗରେ ଘୂରି ବୁଲୁଥିଲେ ଗାଁର ଅପନ୍ତରାରେ, ଛୋଟା ଗହଳରେ ଅବା ବେଳେ ବେଳେ ଚିଲିକାର ପାଣିରେ । ସେ ଡଙ୍ଗା ଚଳାଇବାରେ ମଧ୍ୟ ପାରଦର୍ଶିତା ହାସଲ କରିଥିଲେ । ଗାଁ ଗହଳର ପ୍ରାକୃତିକ ଜୀବନକୁ ଜାଣିବାପାଇଁ ତାଙ୍କୁ ଯଥେଷ୍ଟ ଅବସର ମିଳିଥିଲା । ହଁ, ପ୍ରକୃତିର ବିଦ୍ୟାଳୟରେ ତାଙ୍କର ପହିଲା ପାଠପଢ଼ା ଆରମ୍ଭ ହୋଇଥିଲା । ସେହି ବେଳର ଆହରିତ ଜ୍ଞାନ ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କୁ ମଣିଷ ଭାବରେ ଛିଡ଼ା କରାଇବାପାଇଁ ଯଥେଷ୍ଟ ସହାୟକ ହୋଇଥିଲା ।

ଡାକ୍ତର ରାଧାଚରଣ ପଣ୍ଡାଙ୍କର, ପରଶୁରାମଙ୍କର ଜୀବନ ସମ୍ପର୍କିତ ଲେଖାରେ ଏହି ସମସ୍ତ ଘଟଣାବଳୀ ସ୍ଥାନ ପାଇଛି ଏହିଭଳି ଭାବରେ—

**ଜନ୍ମ**—ପରଶୁରାମ ନିଜ ମାମୁଁ ଘର ଗାଁ ଧୂମୁସରର କୁରାଳ ଗ୍ରାମରେ ୧୮୭୮ ଖ୍ରୀଷ୍ଟାବ୍ଦରେ ଦଶହରା ଦିନ ଜନ୍ମଗ୍ରହଣ କରିଥିଲେ । କୁରାଳ ଗ୍ରାମଟି ଆଧୁନିକ ଭଞ୍ଜନଗର ସହର ପାଖରେ ଅବସ୍ଥିତ ଥିଲା ।

Digitized by PPRACHIN, SOA

ପରଶୁରାମଙ୍କର ବାପାଙ୍କର ନାଁ ନିରଞ୍ଜନ ପଟ୍ଟନାୟକ ଓ ମା ଲଳିତା ଦେବୀ । ପ୍ରାୟ ପାଞ୍ଚ ବରଷ ବୟସରେ ସେ ବାପା ଓ ମାଙ୍କୁ ହରାଇ ଛେଉଣ୍ଡ ହୋଇଥିଲେ । ତଥାପି, ତାହାଙ୍କର ଦାଦ, ବଧିବାମନ ପଟ୍ଟନାୟକ ପିଲାଟିକୁ ନିଜ ଘରେ (ମାଲୁଦରେ) ରଖି ପାଳିଥିଲେ ।

**ପିଲାଦିନର କଥା**—ମା' ବାପାଙ୍କ ଅଭାବ ସତ୍ତ୍ୱେ ପରଶୁରାମ ଦାଦଙ୍କ ତତ୍ତ୍ୱରେ ସାଧାରଣ ଗାଉଁଲି ପିଲାଙ୍କ ପରି ଭଲରୂପେ ଚଳି ଆସିଥିଲେ । ନିଜ ପିଲାସାଙ୍ଗମାନଙ୍କ ମଧ୍ୟରୁ ପାଏକ ସାହିର ବୈକୁଣ୍ଠ ନାୟକ ଓ ଗଙ୍ଗାଧର ଦାଶଙ୍କର ନାଁ ସେ ସ୍ପଷ୍ଟ ମନେ ରଖିଛନ୍ତି । ଏ ଦୁହିଁଙ୍କୁ ମୁଁ ଦେଖିଥିଲି । ମାତ୍ର ଏ କାହାଣୀ ଲେଖିଲା ବେଳକୁ ସେମାନଙ୍କଠାରୁ କୌଣସି ପରାମର୍ଶ ପାଇବା ସୁବିଧା ପାଇ ନ ଥିଲି । ସେମାନେ ଇହ ଧାମରୁ ଚାଲି ଯାଇଥିଲେ ।

**ବିଦ୍ୟାରମ୍ଭ**—

ହଠାତ୍ ଦୂର ଗାଁରୁ ଆସିଥିବା ଜଣେ ଆତ୍ମୀୟ ଗାଁ ଦାଣ୍ଡରେ ଚଟେଇ ପିଲାଙ୍କ ମେଳରେ ପରଶୁରାମଙ୍କୁ ଆବିଷ୍କାର କରି କେବଳ ଆଶ୍ଚର୍ଯ୍ୟାନ୍ୱିତ ନୁହେଁ, ଟିକିଏ ଆତଙ୍କିତ ହୋଇଯାଇଥିଲେ । ସେ ପରଶୁରାମଙ୍କୁ ଗାଁ ପିଲାଙ୍କର ମେଳରୁ ଉଦ୍ଧାର କରି ଅଣି ତାହାଙ୍କୁ ମୂର୍ଖ, ଅଶିକ୍ଷିତ ଆଉ ନିରକ୍ଷର ବୋଲି ତିରସ୍କାର କଲେ । ହେଲେ ସେହି ଗଣ୍ଡିଟିସାରୁ ପରଶୁରାମଙ୍କୁ ପାଖରେ ବସାଇ, ତାଙ୍କର ପିତାଙ୍କର ଆଭିଜାତ୍ୟ ଆଉ କୌଳିନ୍ୟ ବିଷୟରେ ବୁଝାଇଥିଲେ । ନିଜ ବିଷୟରେ ଆତ୍ମ-ବିସ୍ମୃତ ହୋଇଯାଇଥିବା ପରଶୁରାମ, ଯେପରି ଖୋଜି ପାଇଲେ ନିଜର ପରିଚୟ ଆଉ ବ୍ୟକ୍ତିତ୍ୱ । ଏହି ଘଟଣାଟି ଲଗାମଛଡ଼ା ପରଶୁରାମଙ୍କର ଜୀବନର ଗତିପଥକୁ ବଦଳାଇ ଦେଲା । ହେଲେ ଏତେବେଳକୁ ଜୀବନର ପହିଲି ଏଗାର ବର୍ଷ ଅଣହେଳାରେ ନିଜ ହାତରୁ ଖସିଯାଇଥିଲା ।

**ପ୍ରାଥମିକ ବିଦ୍ୟାଳୟ**—ପରଶୁରାମଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଥିଲା । ପରଦିନ ସକାଳେ ସେ ଅଭିଭାବକଙ୍କ ସଙ୍ଗେ ଯାଇ ଗାଁ ଚାଟଶାଳୀରେ ହାଜର ହେଲେ । ତାହା ଥିଲା ୧୮୮୧ର ଘଟଣା । ହଁ, ଏଗାର ବର୍ଷ ବୟସରେ ପରଶୁରାମ ପ୍ରଥମେ ସିଲଟ ଖଡ଼ି ଧରିଥିଲେ ଅବଧାନଆ ଚାଟଶାଳୀରେ । ସେ ଚାଟଶାଳୀ ପାଠ ଶେଷକରି ପ୍ରାଇମେରୀ ସ୍କୁଲରେ ପଢ଼ିଲେ । ତା'ପରେ ଉପର ପ୍ରାଇମେରୀ । ଏହି ପରୀକ୍ଷାରେ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇ ସେ ମାସିକ ଚାରିଟଙ୍କାର ବୃତ୍ତି ହାସଲ କଲେ । ଏହି ବୃତ୍ତି ହିଁ ତାହାଙ୍କୁ ମାଲୁଦରୁ ନେଇ ପହଞ୍ଚାଇ ଦେଲା ପାରିକୁଦ ଗଡ଼ରେ । ଏହା ପରେ ପ୍ରତିଦିନ ଦୀର୍ଘ ଦଶ କିଲୋମିଟର ଯାଇ ଗଡ଼ର ମାଇନର ସ୍କୁଲରେ ପଢ଼ିଲେ ।

Digitized by PPRACHIN, SOA

**ମାଇନର ପାସ୍**—ମାଇନର ପରୀକ୍ଷା ଦେବାକୁ ତାଙ୍କୁ ପୁରୀ ଯିବାକୁ ପଡ଼ିଲା । ଏ ଥିଲା ତାଙ୍କର ପହିଲି ପୁରୀ ଦର୍ଶନ । ପୁରୀରେ ପହଞ୍ଚିବା ପରେ ଜୀବନ ପ୍ରତି ତାଙ୍କର ଦୃଷ୍ଟିକୋଣ ବଦଳି ଯାଇଥିଲା । ମନରେ ଭରିଗଲା କିଛି ଉତ୍ସାହ ଓ ଭବିଷ୍ୟତର ଜୀବନ ଲାଗି କିଛି କଳ୍ପନା ଜଳ୍ପନା । ମାଇନର ପରୀକ୍ଷା ସରିଗଲା । ଆଉ ଖୁସି ମନରେ ନରେନ୍ଦ୍ର ପୋଖରୀରେ ସେ ଗାଧୁଆ ଶେଷକରି ଫେରୁଥିଲେ । ସେ ସମୟରେ ନରେନ୍ଦ୍ର ପୋଖରୀର ଏକ କୋଣରେ ଅବସ୍ଥାନ କରୁଥିବା ଜଣେ ସନ୍ନ୍ୟାସୀ ପରଶୁରାମଙ୍କର ସୁଦର୍ଶନ ଚେହେରା ଦେଖି ପ୍ରୀତ ହେଲେ ଆଉ ପାଖକୁ ଡାକଲେ । ସନ୍ନ୍ୟାସୀଟି ପରଶୁରାମଙ୍କର ହାତ ଦେଖିସାରି କହିଲେ "ଇସ୍ ପରୀକ୍ଷାମେ ତୁମକୋ କୁଛ ଇନାମ ମିଲେଗା ।"

ସନ୍ନ୍ୟାସୀଙ୍କର ଭବିଷ୍ୟତବାଣୀ ସତ୍ୟରେ ପରିଣତ ହୋଇଥିଲା । ସମସ୍ତ ପୁରୀ ଜିଲ୍ଲାରେ ମାଇନର ପରୀକ୍ଷାରେ ଉଚ୍ଚସ୍ଥାନ ଅଧିକାର କରି ସେ ମାସିକ ପାଞ୍ଚଟଙ୍କା ବୃତ୍ତି ପାଇବାର ଯୋଗ୍ୟତା ହାସଲ କରିଥିଲେ । ଏହାହିଁ ତାଙ୍କର ପରବର୍ତ୍ତୀ ଜୀବନର ଗତିପଥକୁ ନିର୍ଦ୍ଧାରିତ କରିଥିଲା ।

ଅଭାବ ଓ ଦୈନ୍ୟ ମଧ୍ୟରେ ପରଶୁରାମ ମାଲୁଦରୁ ପାରିକୁଦଗଡ଼ ଆଉ ପାରିକୁଦ ଗଡ଼ରୁ ଅସି ପହଞ୍ଚିଲେ ଜିଲ୍ଲାର ସଦର ମହକୁମା ପୁରୀରେ । ଏହାହିଁ ସମ୍ଭବ ହୋଇଥିଲା ତାଙ୍କର କ୍ରମାଗତ ଭାବେ ବୃତ୍ତି ହାସଲ କରିବାରେ ।

ଡାକ୍ତର ରାଧାଚରଣ ପଣ୍ଡାଙ୍କର ଲିଖିତ ପରଶୁରାମଙ୍କର ଜୀବନଚରିତରେ ଘଟଣାମାନ ଏପରି ସ୍ଥାନ ପାଇଛି—

**ପାଠପଢ଼ା**—

ସେ କାଳରେ ମାଲୁଦରେ ଅଧିକକ ସ୍କୁଲ ନ ଥିଲା । ୧୮୮୯ରେ ଏଗାର ବର୍ଷ ବୟସରେ ପରଶୁରାମ ଏଠାବାର ଏକ ଅବଧାନିଆ ଚାହାଲିରେ ପାଠପଢ଼ା ଆରମ୍ଭ କଲେ । ଏହାର ପାଞ୍ଚ ଛ ବର୍ଷ ପରେ ମାଲୁଦର ଏକ ପ୍ରାଇମେରୀ ସ୍କୁଲରେ ଶିକ୍ଷା ଶେଷ କଲେ । ପରେ ପାରିକୁଦର କୃଷ୍ଣପ୍ରସାଦ ଗଡ଼ଠାରେ ମି: ଇ: ପଢ଼ିଲେ ।

ଏ ପଢ଼ା ସମୟରେ ପାରିକୁଦର ମହେନ୍ଦ୍ର ସିଂହ ସାମନ୍ତ ତାହାଙ୍କର ପଢ଼ା ସାଥି ଥିବାର ସେ କହନ୍ତି । ପୁଣି ଭଲ ପଢ଼ା କରୁଥିବାରୁ ମାସକୁ ଚାରି ଟଙ୍କାର ଛାତ୍ର ବୃତ୍ତି ମଧ୍ୟ ମିଳୁଥିଲା ।

**ପୁରୀରେ ଇଂରାଜୀ ଶିକ୍ଷା ବିସ୍ତାର**—ପୁରୀ ସହର ଭାରତର ପ୍ରସିଦ୍ଧ ତୀର୍ଥ କ୍ଷେତ୍ର । ଏଠାରେ ବାସ କରୁଥିଲେ ବହୁ ସଂସ୍କୃତ ବିଦ୍ୱାନ । ତୀର୍ଥସ୍ଥାନର ମହତ୍ତ୍ୱ ଦୃଷ୍ଟିରୁ ସମସ୍ତ ଓଡ଼ିଶା ମଧ୍ୟରେ ଏଠାରେ ହିଁ ପ୍ରଥମ ଇଂରାଜୀ ସ୍କୁଲଟି ଖୋଲିଥିଲା

Digitized by PPRACHIN, SOA

୧୮୩୫ ସାଲରେ । ପୁରୀରେ ସଂସ୍କୃତ ବିଦ୍ୱାନ୍‌ମାନଙ୍କର ଉପସ୍ଥିତି ଯୋଗୁଁ ଏହି ସ୍କୁଲରେ ଇଂରାଜୀ ସହିତ ସଂସ୍କୃତ ପଠନର ବ୍ୟବସ୍ଥା ଥିଲା । ମାତ୍ର ପୁରୀରେ ଥିବା ରକ୍ଷଣଶୀଳ ସମାଜର ପ୍ରରୋଚନାରେ ଛାତ୍ରମାନେ ସ୍କୁଲରେ ଯୋଗଦେବାକୁ ଅନିଚ୍ଛୁକ ଥିଲେ । ଛାତ୍ର ଉପସ୍ଥାନ ନୈରାଶ୍ୟଜନକ ହେବାରୁ ସ୍କୁଲଟି ଉଠିଗଲା । ଏହି ପହିଲି ସ୍କୁଲର ଅକାଳ ମୃତ୍ୟୁ ପରେ ପୁରୀରେ ଭର୍ଣ୍ଣାକୁଲାର ସ୍କୁଲଟି ୧୮୪୮ରେ ଏବଂ ଇଂରାଜୀ ସ୍କୁଲଟି ୧୮୫୩ ମସିହାରେ ପ୍ରତିଷ୍ଠିତ ହେଲା । ମାତ୍ର କଟକରେ ଇଂରାଜୀ ସ୍କୁଲଟି ୧୮୪୧ରେ ସ୍ଥାପିତ ହେବାପରେ କଟକ ଜିଲ୍ଲାରେ ଇଂରାଜୀ ଶିକ୍ଷାର ଦ୍ରୁତ ପ୍ରସାର ଘଟିଲା । ପୁରୀସହର ଓଡ଼ିଶାରେ ସର୍ବପ୍ରଥମ ଇଂରାଜୀ ସ୍କୁଲ ପ୍ରତିଷ୍ଠିତ ସହର ରୂପେ ମାନ୍ୟତା ପାଇଆସୁଛି ଆଉ ଅଧିକ ଶିକ୍ଷିତ ବ୍ୟକ୍ତି ସହରରୁ ବାହାରିପାରି ଥାଆନ୍ତେ, ମାତ୍ର ସେଠାରେ ରକ୍ଷଣଶୀଳ ସମାଜର ପ୍ରତିରୋଧ ଫଳରେ ଇଂରାଜୀ ଶିକ୍ଷା ପ୍ରାପ୍ତି ପନ୍ଦରରୁ କୋଡ଼ିଏ ବର୍ଷକାଳ ପଛରେ ପଡ଼ିଗଲା ।

ପରଶୁରାମ ୧୯୦୪ ମସିହାରେ ଯେତେବେଳେ ପୁରୀ ହାଇସ୍କୁଲରେ ଯୋଗଦେଲେ, ସେତେବେଳକୁ ସାରା ଓଡ଼ିଶାରେ (ଦକ୍ଷିଣ ଓଡ଼ିଶାକୁ ଛାଡ଼ି) ସାତ ଗୋଟି ହାଇସ୍କୁଲ ଥିଲା ଏବଂ ଏହି ସମସ୍ତ ହାଇସ୍କୁଲରେ ଛାତ୍ରସଂଖ୍ୟା ମାତ୍ର ଚଉଦ-ଶହ ମଧ୍ୟରେ ସୀମିତ ଥିଲା ।

ଏଠାରେ ଲକ୍ଷ୍ୟ କରିବାର କଥା ଯେ ପରଶୁରାମ ପୁରୀ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ଯୋଗ ଦେଲା ବେଳକୁ ତାଙ୍କର ବୟସ ପଚିଶି ବର୍ଷରୁ ଅତିକ୍ରାନ୍ତ ହୋଇଯାଇଥିଲା । ଏଭଳି ପରିଣତ ବୟସରେ, ପ୍ରାପ୍ତ ଯୌବନର ବେଳରେ ଯେତେବେଳେ ତାଙ୍କର ଗୃହସ୍ଥ ଧର୍ମ ଆଚରିବା କଥା, ସେ ଅନାୟାସରେ ଛାତ୍ର ଜୀବନର ଶୃଙ୍ଖଳାକୁ ମାନି ନେଇ ପାଠ ପଢ଼ିବାର ଗଭୀର ଅଧ୍ୟବସାୟରେ ନିମଗ୍ନ ରହିଥିଲେ । ଏଥିପାଇଁ ତାଙ୍କର ପାଠ ପଢ଼ିବାର ତୀବ୍ର ଆକାଙ୍‌କ୍ଷା ହିଁ ସମସ୍ତ ବାଧାକୁ ଅତିକ୍ରମ କରି ତାହାଙ୍କୁ ସ୍କୁଲର ଜଣେ ମେଧାବୀ ଓ ପ୍ରତିଭାଶାଳୀ ଛାତ୍ରରୂପେ ପ୍ରତିଷ୍ଠିତ କରାଇପାରିଥିଲା ।

**ମଣିବୋଉ ମେସ୍**—ମାଲୁଦରେ, ଘରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । କେବଳ ଏତିକି ନୁହେଁ କିଛି ବର୍ଷର ଫସଲହାନି ପରେ ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା । ତେଣୁ ଏଭଳି ଦୁର୍ଦ୍ଦିନରେ ସେ ପାଞ୍ଚଟଙ୍କିଆ ବୃତ୍ତିର ଆଶ୍ରାରେ ଆସି ପହଞ୍ଚିଲେ ପୁରୀ ସହରରେ । ପୁରୀରେ ସେ ଆସି ରହିଲେ କୁଣ୍ଡାଇବେଣ୍ଟ ସାହିର ଲବଣୀଖିଆ ଛକରେ ଥିବା 'ମଣିବୋଉ ମେସ'ରେ । 'ମଣିବୋଉ' ଜଣେ ବୋଧହୁଏ ବିଧବା ମହିଳା । ଛାତ୍ରମାନଙ୍କୁ ଭାତ ରାନ୍ଧି ବାଢ଼ି ଖାଦ୍ୟ ପରଶି ଦେଉଥିଲେ । ଆଉ ମା'ର ସମସ୍ତ ସ୍ନେହ ଆଉ ସୋହାଗ ଢାଳିଦେଇ ସେମାନଙ୍କୁ

Digitized by PPRACHIN, SOA

ଏକରକମ ପାଳୁଥିଲେ । ତେଣୁ ଏହି ମେସର ଅନ୍ତେବାସୀ ଗଣଙ୍କର ମଣିବୋଉଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ରହିଥିଲା ।

ସେତେବେଳକୁ ମଣିବୋଉ ମେସରେ ମାସିକ ଖର୍ଚ୍ଚ ଦୁଇଟଙ୍କା ମଧ୍ୟରେ ସୀମିତ ଥିଲା । ଏ ସମୟରେ ଟଙ୍କାକୁ କିଟଙ୍କା ୧୬/୧୭ ସେର ଚାଉଳ ମିଳୁଥିଲା । ପରଶୁରାମ ଅନାୟାସରେ ମାସିକ ବୃତ୍ତି ମିଳୁଥିବା ପାଞ୍ଚଟଙ୍କା ନିଜପାଇଁ ଖର୍ଚ୍ଚ କରି ପାରିଥାଆନ୍ତେ । ମାତ୍ର ବଡ଼ମା'ଙ୍କର ଅଯାଚିତ ସ୍ନେହ ଆଉ ନିଜର ପୁଅକୁ ପଢ଼ାଇବାର ଅକୁଣ୍ଠ ସ୍ୱାର୍ଥତ୍ୟାଗ, ପରଶୁରାମଙ୍କ ମନରେ ଗଭୀର ରେଖାପାତ କରିଥିଲା । ସେ ବଡ଼ମା'ଙ୍କୁ ଡାକୁଥିଲେ 'ମାମା' ବୋଲି । ସେହି 'ମାମା' ହିଁ ପରଶୁରାମଙ୍କର ଜୀବନ ଉନ୍ନତି ଲାଗି ମଙ୍ଗଳ କାମନା ପ୍ରେରଣ କରୁଥିଲା ।

ତେଣୁ ସେହି ବୃତ୍ତିଟଙ୍କାରୁ ସଞ୍ଚୟ କରି ପ୍ରତି ମାସରେ ହାରାହାରି ଦୁଇଟଙ୍କା ପଠାଉଥିଲେ ମାମାଙ୍କ ପାଖକୁ ଦାଦାଙ୍କ ଜରିଆରେ ପରିବାରର ପ୍ରତିପୋଷଣ ପାଇଁ ।

ଏ ସମସ୍ତ ମଧ୍ୟରେ ପିତାଙ୍କର ଅଭିଜାତ୍ୟ ଆଉ ରାଜବଂଶରୁ ଆସିଥିବା ମାତୃକୁଳର କୌଳିନ୍ୟ ତାହାଙ୍କୁ ଉଚ୍ଚାଭିଳାଷୀ ହେବାପାଇଁ ପ୍ରେରଣା ଦେଇଥିଲା । ଦାରିଦ୍ର୍ୟର ଯନ୍ତ୍ରଣା ତାହାଙ୍କୁ ପ୍ରାୟ ବିବଳିତ କରି ଦେଉଥିଲା । ହେଲେ ସେହି ଦାରିଦ୍ର୍ୟର କଷାଘାତରୁ ମୁକ୍ତ ହେବାପାଇଁ ସେ ଅହରହ ଚେଷ୍ଟିତ ଥିଲେ ମୁଖ୍ୟତଃ ଉଚ୍ଚଶିକ୍ଷା ଲାଭ କରି ଜୀବନରେ ପ୍ରତିଷ୍ଠିତ ହେବାପାଇଁ । ହେଲେ ଏଥିପାଇଁ ତାଙ୍କୁ ସ୍ୱାଭିମାନତା କେବେହେଲେ ହ୍ରାସ କରି ନ ଥିଲା । ସିଧାସଳଖ ମୁଣ୍ଡ ଟେକି ଛିଡ଼ା ହୋଇ ନିଜକୁ ସୁପ୍ରତିଷ୍ଠିତ ବା ଜାହିର କରିବାକୁ ସେ ପଛେଇ ଯାଇ ନ ଥିଲେ ।

ପରଶୁରାମ ଅନାୟାସରେ ପୁଣି ସ୍କୁଲର ଶୃଙ୍ଖଳାକୁ ମାନି ନେଉଥିଲେ । ତାଙ୍କର ସୌଜନ୍ୟପୂର୍ଣ୍ଣ ବ୍ୟବହାର, ମଧୁର ମିଷ୍ଟ ସମ୍ଭାଷଣ ଆଉ ପଢ଼ିବା ଲାଗି ପ୍ରବଳ ଉତ୍ସାହ, ତାଙ୍କୁ ଶ୍ରେଣୀରେ ସମ୍ମାନଜନକ ସ୍ଥାନ ପ୍ରଦାନ କରିଥିଲା ।

ପୁରସ୍କାର—ସ୍କୁଲର ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବର ଅବ୍ୟବହିତ ପୂର୍ବରୁ ଅନୁଷ୍ଠିତ ହେଉଥିବା ପ୍ରତିଯୋଗିତାର ବିଭିନ୍ନ ବିଭାଗରେ ସେ ଅଂଶଗ୍ରହଣ କରୁଥିଲେ । ତେଣୁ ପ୍ରାୟ ସମସ୍ତ ବିଭାଗରେ ସେ ପୁରସ୍କାର ହାସଲ କରିବାକୁ ସମର୍ଥ ହେଉଥିଲେ । ଥରେ ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବରେ ତାଙ୍କୁ ଏତେ ପରିମାଣରେ ପୁରସ୍କାର ମିଳିଥିଲା ଯେ, ସେ ସମସ୍ତ ପୁରସ୍କାରକୁ ଏକାକୀ ନିଜର ରହଣୀ ସ୍ଥାନ (ମେସ)କୁ ନେଇଯିବା ପାଇଁ ସମ୍ଭବ ହୋଇ ନ ଥିଲା । ଏଥିରେ ସହାୟତା କରିବାପାଇଁ ଆଗେଇ ଆସିଲେ ସହପାଠୀ ଶ୍ରୀଶଚନ୍ଦ୍ର ଘୋଷ ।

Digitized by PPRACHIN, SOA

ଶ୍ରୀଶଚନ୍ଦ୍ର ଘୋଷ ରାମଚଣ୍ଡୀ ସାହିର ଜଣେ ସମ୍ଭ୍ରାନ୍ତ ଜମିଦାରଙ୍କର ପୁତ୍ର ଥିଲେ । ସେ ଘୋଡ଼ା ଗାଡ଼ିରେ ହିଁ ଯିବା ଆସିବା କରୁଥିଲେ । ତେଣୁ ସେ ପରଶୁରାମଙ୍କର ସମସ୍ତ ପୁରସ୍କାରକୁ ଘୋଡ଼ା ଗାଡ଼ିରେ ନେଇ ଆସି ନିଜର ବାବାଙ୍କ ସହ ପରିଚୟ କରାଇଦେଲେ । ସେହିଦିନଠାରୁ ଶ୍ରୀଶଚନ୍ଦ୍ରଙ୍କ ପିତାଙ୍କର ପରଶୁରାମଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ଜାଗ୍ରତ ହୋଇଥିଲା । ନିଜର ପୁତ୍ରର ଘନିଷ୍ଠ ବନ୍ଧୁ ପରଶୁରାମଙ୍କୁ ନିଜ ଘରକୁ ବହୁବାର ଡାକନେଇ ଆପ୍ୟାୟିତ କରୁଥିଲେ । ହେଲେ ଏ ସମସ୍ତ ପରିସ୍ଥିତିରେ ପରଶୁରାମ ନିଜର ଆତ୍ମ ସମ୍ମାନ ପ୍ରତି ସଜାଗ ଥିଲେ, ଯାହା ଶ୍ରୀଶଚନ୍ଦ୍ର ମଧ୍ୟ ଲକ୍ଷ୍ୟ କରିଥିଲେ । ତେଣୁ ବନ୍ଧୁ ହିସାବରେ ମଧ୍ୟ ପରଶୁରାମଙ୍କ ପ୍ରତି ଉପଯୁକ୍ତ ମର୍ଯ୍ୟାଦା ଦେବାପାଇଁ ପଶ୍ଚାତ୍ପଦ ନ ଥିଲେ । ଏହା ଦୁଇବନ୍ଧୁଙ୍କ ମଧ୍ୟରେ ଅନାବିଳ ସ୍ନେହର ସମ୍ପର୍କ ସ୍ଥାପିତ କରିବାପାଇଁ ସହାୟକ ହୋଇଥିଲା । ଏ ସମ୍ପର୍କ କ୍ରମେ ଦୃଢ଼ ହୋଇଥିଲା । ଉଭୟେ ଅନ୍ତରଙ୍ଗ ବନ୍ଧୁ ରୂପରେ ପରିଣତ ହୋଇଥିଲେ । ଏ ବନ୍ଧୁତା ଜୀବନର ଶେଷକାଳ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା । ଅବସର କାଳୀନ ଜୀବନରେ ମଧ୍ୟ ଜଣେ ବନ୍ଧୁ ଅନ୍ୟ ଜଣକ ପାଖକୁ ଆସି କଥାବାର୍ତ୍ତା କିମ୍ବା ଆଦର ସମ୍ଭାଷଣ ନ ଜଣାଇଲେ ମନ ତୃପ୍ତ ନ ଥିଲା ।

୧୯୦୭ ଟେଲର ପୁରୀ ହାଇସ୍କୁଲ । ସେଇବର୍ଷ ପରଶୁରାମ ଅଷ୍ଟମ ଶ୍ରେଣୀରେ ଯୋଗଦେଲେ । ଆଉ ଗୋଦାବରୀଶ ମଧ୍ୟ ପଢ଼ୁଥିଲେ ପୁରୀ ହାଇସ୍କୁଲରେ । ସେ ତ ପୁରୀ ହାଇସ୍କୁଲରେ ଯୋଗଦେଇଥିଲେ ୧୯୦୪ ମସିହାରେ ଓ ଦଶମ ଶ୍ରେଣୀରେ ପଢ଼ୁଥିଲେ । ଆଉ ନୀଳକଣ୍ଠ ଥିଲେ ଏକାଦଶ ଶ୍ରେଣୀର ମେଧାବୀ ଛାତ୍ର ।

**ଉତ୍କଳ ସମ୍ମିଳନୀ—**

ବହୁକାଳଧରି ନିଦରେ ଶୋଇପଡ଼ିଥିବା ଓଡ଼ିଶାର ଘୁମନ୍ତ ରାଜନୈତିକ ବାତାବରଣ, କାହାର ପ୍ରଚଣ୍ଡ ଅହ୍ୱାନରେ ଚେଇଁ ଉଠିଥିଲା । ସେହି ଆହ୍ୱାନଟି ଆସିଥିଲା ଜାତିର ପ୍ରାଣ ପ୍ରତିଷ୍ଠାତା ମଧୁସୂଦନଙ୍କଠାରୁ । ଆତ୍ମବିସ୍ମୃତ ଓଡ଼ିଆ ଜାତି ନିଦ ମଳ ମଳ ଆଖିରେ ବୋଧହୁଏ ନିଜର ପରିଚୟ ଓ ବ୍ୟକ୍ତିତ୍ୱକୁ ଖୋଜି ବୁଲୁଥିଲା । ଏତିକବେଳେ ୧୯୦୩ ସାଲରେ ମଧୁବାବୁଙ୍କ ଉଦ୍ୟମରେ ଅନୁଷ୍ଠିତ ଉତ୍କଳସମ୍ମିଳନୀ ଓଡ଼ିଆମାନଙ୍କୁ ଦେଇଥିଲା ସମ୍ମାନ ବୋଧ, ଆଉ ନିଜ ଗୋଡ଼ରେ ଛିଡ଼ା ହେବାଲାଗି ଆତ୍ମ ପ୍ରତ୍ୟୟ ।

ମଧୁବାବୁ ମହାତ୍ମାଗାନ୍ଧିଙ୍କର ବହୁ ପୂର୍ବରୁ ଏବଂ ବଙ୍ଗଭଙ୍ଗ ସମ୍ପର୍କିତ ସ୍ୱଦେଶୀ ଆନ୍ଦୋଳନର କିଛି ବର୍ଷ ପୂର୍ବରୁ ୮୮୯୭ ସାଲରୁ ତାରକସି କାମ ପୁନଃ ସଂସ୍ଥାପନ ସହିତ ଚମଡ଼ାଶିଳ୍ପ କରିଆରେ ୧୯୦୫ ସାଲରୁ ଉନ୍ନତ ବୟନ ଶିଳ୍ପର ପ୍ରଶିକ୍ଷଣ ପ୍ରଦାନ କରୁଥିଲେ । ଏହାଛଡ଼ା ସୂତା କଟା ଲାଗି ୧୯୦୮ ସାଲରେ ଉନ୍ନତ ଅରଟର ପ୍ରଚଳନ କରାଇଥିଲେ । ମଧୁବାବୁ ଓଡ଼ିଶାର ବହୁ ପୁରପଲ୍ଲୀରେ ଏକ

Digitized by PPRACHIN, SOA

ସ୍ୱଦେଶୀ ଆନ୍ଦୋଳନର ବାର୍ତ୍ତା ପ୍ରଚ୍ଚୁର କରିଥିଲେ । ୧୯୦୪ ବେଳର ପୁରୀର ଘଟଣା । ତାହା ପଣ୍ଡିତ ନୀଳକଣ୍ଠଙ୍କର ଆତ୍ମ ଚରିତରେ ଏହିଭଳି ଭାବରେ ସଂକଳିତ ହୋଇଛି ।

**ପ୍ରତିଜ୍ଞାପତ୍ର —**

"ପୁରୀରେ ଜଗନ୍ନାଥ ବଲ୍ଲଭରେ ଏକ ବିରାଟ ସଭା ହୋଇଥିଲା । ସହରର ବହୁ ଭଦ୍ରବ୍ୟକ୍ତି ଓ ସ୍କୁଲଛାତ୍ର ଉପସ୍ଥିତ ଥିଲେ । ସ୍ୱଦେଶୀ ସମ୍ବନ୍ଧରେ ମଧୁବାବୁ ଏକ ଆବେଗପୂର୍ଣ୍ଣ ବକ୍ତୃତା ଦେଇଥିଲେ । ସମସ୍ତେ ତାଙ୍କର ବକ୍ତୃତା ଶୁଣି ତନ୍ମୟ ହୋଇଯାଇଥିଲେ । ମଧୁବାବୁ ଏକ ମଲାଟ ବନ୍ଧା ଖାତାରେ ସ୍ୱଦେଶୀ ପ୍ରତିଜ୍ଞା ପତ୍ର ଲେଖି ରଖିଥିଲେ । ସେହି ପ୍ରତିଜ୍ଞାର ସଂକଳ୍ପ ହେଉଛି ଏହିପରି, "ମୁଁ ପ୍ରାଣପଣେ ସ୍ୱଦେଶୀ ଜିନିଷ ବ୍ୟବହାର କରିବି । ବିଶେଷରେ ସ୍ୱଦେଶୀ ଲୁଗା ଛଡ଼ା ଆଉ କିଛି ପିନ୍ଧିବି ନାହିଁ ।" ସେହି ପ୍ରତିଜ୍ଞା ପତ୍ରର ଖାତା ବୁଲିଗଲା । କେହି ଦସ୍ତଖତ କରିବାକୁ ସାହସ କଲେ ନାହିଁ । ସେ ହେଉଛି ଇଂରେଜ ଅମଳ । ସେତେବେଳେ ଇଂରେଜ ପ୍ରତିପତ୍ତିର ବେଳ । ଲର୍ଡ କର୍ଜନଙ୍କ ପରି ଦଣ୍ଡା ଲୋକ ସେତେବେଳେ ଗଭର୍ଣ୍ଣର ଜେନେରାଲ । ସାହସ କରି ସ୍ୱଦେଶୀ ପ୍ରତିଜ୍ଞାପତ୍ରରେ ଦସ୍ତଖତ କରୁଛି କିଏ ? ଏବେ ଲୋକେ ଏହାର ତାତ୍ପର୍ଯ୍ୟ ଅନୁମାନରେ ବୁଝିପାରିଲେ ନାହିଁ । ଇଂରେଜ ଭୟରେ ଲୋକେ ଡରୁଥାଆନ୍ତି । ଲୁଗା ସହିତ ସବୁ ବ୍ୟବହାରର ମାଲ ହେଉଛି ଇଂରେଜ । ସ୍ୱଦେଶୀ ବସ୍ତୁ ବ୍ୟବହାର ଲାଗି ସଂକଳ୍ପ କଲେ ଇଂରେଜ ବିରୋଧି ହେବାକୁ ହେବ ।

"ସ୍ପଷ୍ଟ ମନେଅଛି ଏ ପ୍ରତିଜ୍ଞାପତ୍ର ବୁଲି ବୁଲି ଆମ ପାଖକୁ ଆସିଲା । ସେ ଖାତାରେ ପ୍ରଥମେ ଦସ୍ତଖତ କରିଥିଲେ ନଗେନ୍ଦ୍ର ନାଥ ରକ୍ଷିତ । ତା'ପରେ ଦସ୍ତଖତ କରିଥିଲି ମୁଁ ନିଜେ । ସେହି ଦିନୁ ନଗେନ୍ଦ୍ର ନାଥ ରକ୍ଷିତ ଓ ମୁଁ ଦୁହେଁ ସ୍ୱଦେଶୀ ବସ୍ତ୍ର ଛଡ଼ା ଅନ୍ୟ କିଛି ବ୍ୟବହାର କଲୁନାହୁଁ । ବିଦେଶୀ ବର୍ଜନ ଓ ସ୍ୱଦେଶୀ ବସ୍ତ୍ର ପରିଧାନ ସେହିଦିନୁ ଆରମ୍ଭ କରିଥିଲି । ସେହି ଆରମ୍ଭ ପଛରେ ଥିଲା ଗୋଟିଏ ସଂକଳ୍ପ ଓ ସେହି ସଂକଳ୍ପକୁ ଦେଖି ଗୋଟିଏ ପ୍ରତିଜ୍ଞା ପତ୍ରରେ ଦସ୍ତଖତ ।"

ଆଗରୁ କୁହାଯାଇଛି ଯେ ପୁରୀ ହାଇସ୍କୁଲରେ ସେ ବେଳରେ ପରଶୁରାମଙ୍କ ସହ ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶ ମଧ୍ୟ ଛାତ୍ର ଥିଲେ । ହେଲେ ଏମାନଙ୍କ ମଧ୍ୟରୁ ପରଶୁରାମଙ୍କର ଗୋଦାବରୀଶଙ୍କ ସହ ଅଧିକ ଘନିଷ୍ଠତା ଗଢ଼ି ଉଠିଥିଲା । କାରଣ ଉଭୟେ ଚିଲିକା କୂଳର ଅଞ୍ଚଳରୁ ଆସିଥିଲେ ଆଉ ନିଃସ୍ୱ ଅବସ୍ଥାରୁ ନିଜକୁ ପ୍ରତିଷ୍ଠା କରିବାକୁ ପ୍ରଚେଷ୍ଟା କରୁଥିଲେ । ନୀଳକଣ୍ଠଙ୍କର ଘରର ଅବସ୍ଥା ବହୁ ପରିମାଣରେ ସ୍ୱଚ୍ଛଳ ଥିଲା । ନୀଳକଣ୍ଠ ବି ମଣିବେଉ ମେସରେ କିଛି ଦିନ ପାଇଁ

Digitized by PPRACHIN, SOA

ଥିଲେ । ଏଠାରେ ପରଶୁରାମଙ୍କର ନୀଳକଣ୍ଠଙ୍କ ସଙ୍ଗେ ଘନିଷ୍ଠତା ସ୍ଥାପନ ହୋଇଥିଲା; ଯାହା ମୃତ୍ୟୁ ପର୍ଯ୍ୟନ୍ତ ଅବ୍ୟାହତ ଥିଲା ।

**ଅର୍ଦ୍ଧଶତାବ୍ଦୀର ଓଡ଼ିଶା—**

ଗୋଦାବରୀଶଙ୍କର ଆତ୍ମଜୀବନୀ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ଗ୍ରନ୍ଥରେ ବହୁସ୍ଥାନରେ ପରଶୁରାମଙ୍କ ସହ ତାଙ୍କର ଆନ୍ତରିକତା ଆଉ ଘନିଷ୍ଠତାର ସମ୍ପର୍କ ଫୁଟିଉଠିଛି । ତାହାର କିଛି ଅଂଶ ଏହିପରି, "ସେ ବର୍ଷ ମୁଁ ଅଙ୍କନରେ ଭଲ ନମ୍ବର ପାଇଲି ନାହିଁ । ସେ ଚିତ୍ର ଅଙ୍କନ ସମସ୍ତଙ୍କର ହାତକଥା ନୁହେଁ । ଥରେ ପରୀକ୍ଷାରେ ଗୋଟିଏ ଗାଈ ଆଙ୍କିବାକୁ ପ୍ରଶ୍ନ ପଡ଼ିଲା । ପରଶୁରାମ ବର୍ମା ବେଦ ଉପନିଷଦ ଗୀତା ପ୍ରଭୃତିରେ ଧୁରନ୍ଧର ଥିଲେ କିନ୍ତୁ ଚିତ୍ରାଙ୍କନରେ ଥିଲେ ନିତାନ୍ତ ନିପଟ୍ଟ । ସେ ଥରେ ଗାଈ ଆଙ୍କି ସାରି ନିଜେ ଗାଈର ପ୍ରତିରୂପରେ ସନ୍ତୁଷ୍ଟ ନୋହି ଚିତ୍ର ତଳେ ଲେଖିଦେଲେ, 'ଏ ବଳଦ ଗାଈ' । ସେଥିପାଇଁ ପରୀକ୍ଷକ ତାଙ୍କୁ ଯେଉଁ ନମ୍ବର ଦେଲେ ତା ତଳେ ଲେଖିଦେଲେ 'ବଳଦ ଆଙ୍କ', ।

ଗୋଦାବରୀଶଙ୍କ ରଚନାରେ ପରଶୁରାମଙ୍କ ସମ୍ପର୍କରେ ଫଳିତ ଏହି କାହାଣୀରେ ଫୁଟି ଉଠିଥିଲା ପରଶୁରାମଙ୍କର ଗଭୀର ହୃଦୟସ୍ଥ ଅନ୍ତରାଳର ମୂଳ ଚରିତ୍ର । ଗାଈର ପ୍ରକୃତ ଚିତ୍ର ଅଙ୍କନ କରିବାକୁ ଯାଇ ପରଶୁରାମ ହାରିଯାଇଥିଲେ । ଏଥିରେ ପରାଜୟ ସ୍ୱୀକୃତ ହୋଇଯାଇଥିଲେ ମଧ୍ୟ ସେ ସ୍ୱୀକୃତିରେ ନ ଥିଲା କିଛି ନୈରାଶ୍ୟ-ବୋଧ । ଏଥିରେ ଥିଲା କିଛି ଆତ୍ମ ପ୍ରତ୍ୟୟ, କିଛି କରିବାଲାଗି ଆତ୍ମବିଶ୍ୱାସ । ସେଥିପାଇଁ ଗାଈର ଚିତ୍ର ଅଙ୍କନରେ ସନ୍ତୁଷ୍ଟ ହୋଇ ନ ପାରି ପରଶୁରାମ ଚିତ୍ର ତଳେ ବୋଧହୁଏ ଲେଖିଦେଲେ, "ବଳଦ ଗାଈ" ।

ପରଶୁରାମଙ୍କ ସମ୍ପର୍କରେ ଅନ୍ୟ ଗୋଟିଏ ବିବରଣୀ ଗୋଦାବରୀଶଙ୍କ ଆତ୍ମ ଚରିତରେ ଏପରି ସ୍ଥାନ ପାଇଛି—

ପରଶୁରାମ ବାବୁ ମହାନ୍ତି ସାଙ୍ଗରେ ମାଇନର ପାଶ୍ କଲେ । ପ୍ରବେଶିକା ବେଳକୁ ପରୀକ୍ଷାରେ ପାସ୍ କଲେ ପରଶୁରାମ ପଟ୍ଟନାୟକ ଭାବରେ । ଆଇ. ଏ. ବେଳକୁ ନାମ ହେଲା ପଟ୍ଟନାୟକ ପରଶୁରାମ ସାମନ୍ତ୍ରବର୍ମା । ବି. ଏ. ବେଳକୁ ପରୀକ୍ଷା ଦିଆଗଲା ପରଶୁରାମ ସାମନ୍ତ ବର୍ମା ନାମରେ । ବି.ଟି. ପରୀକ୍ଷା ବେଳକୁ ରହିଲା ପର୍ଶୁରାମ ବର୍ମା । ପର୍ଶୁରାମ ବାବୁ ମୋର ବହୁ କାଳର ଅନ୍ତରଙ୍ଗ ସଙ୍ଗୀ । ନାମର ଏତେ ବଦଳାବଦଳି ଭିତରେ ମୋ ପ୍ରତି ତାଙ୍କ ସ୍ନେହର ତିଳେ ମାତ୍ର ପରିବର୍ତ୍ତନ ଅନୁଭବ କରିନାହିଁ ।

ଏ ବିବରଣୀ ମଧ୍ୟରେ ଏତିକି ସ୍ପଷ୍ଟ ହୁଇ ଦିଆଯାଇ ପାରେ ଯେ, ପରଶୁରାମଙ୍କର ନାମ ସହିତ ମହାନ୍ତି ସାଙ୍ଗ କେବେ ଯୋଡ଼ା ନ ଥିଲା । ଜମି, ଖତିଥାନ ଆଉ

Digitized by PPRACHIN, SOA

ସରକାରୀ ନଥିପତ୍ରରେ ପରଶୁରାମଙ୍କ ନାମ ସ୍ପଷ୍ଟଭାବେ ନିରଞ୍ଜନ ପଟ୍ଟନାୟକ ବୋଲି ଉଲ୍ଲେଖ ରହିଛି ।

ଲବଣୀଖିଆ ଛକର ସେହି ମଣିବୋଉ ମେସ । ମେସ ପଛପଟର ଅପଲାପ ଭୂଇଁରେ ବଢ଼ିଥିଲା ଅନାବନା ଜଙ୍ଗଲ । ତା' ଭିତରେ ଛତା ପରି ଛୁଞ୍ଚା ହୋଇଥିଲା ଲମ୍ବା ଲମ୍ବା କେତୋଟି ନଡ଼ିଆଗଛ, ବହି ଆସୁଥିବା ଦକ୍ଷିଣା ପବନକୁ ଆବାହନ ଜଣାଇ । ବେଳେ ବେଳେ ଦଲକାଏ ପବନ ଆସି ଛୁଇଁ ଯାଉଥିଲା ମେସର ଅନ୍ତେବାସୀଙ୍କୁ । ହଁ, ସେହି ପବନ ଭିତରେ ସିମିଠି ଭରି ରହିଥିଲା ଅସୁମାରି ସ୍ୱପ୍ନ । ତାହାହିଁ ବେଳେ ବେଳେ ଉଦ୍‌ବେଳିତ କରି ଦେଉଥିଲା ପରଶୁରାମଙ୍କୁ ।

ପାହାନ୍ତିଆର କେତେ ଘଡ଼ି ଆଗରୁ ନିଦ ଭାଙ୍ଗୁଥିଲା ପରଶୁରାମଙ୍କର । ମିଞ୍ଜି ମିଞ୍ଜି ଲଣ୍ଠନ ବା ଡିବି ଆଲୁଅରେ ପାଠପଢ଼ାସାରି ପାହାନ୍ତିଆରୁ ପୁଳାଏ ସୋରିଷ ତେଲ ମାଖି ଦେଇ ପରଶୁରାମ ଯାଉଥିଲେ ଗୋଟିଏ ଦାନ୍ତକାଠି ମୁହଁରେ ଗୁଞ୍ଜିଦେଇ ପାଖ ଯାଗା ପୋଖରୀକୁ । ସେଠାରେ ନିତ୍ୟକର୍ମ ଓ ଗାଧୁଆ ସାରି ମୁଠିଏ ଭୁଜା ପାଟିରେ ପୁରାଇ ଦେଇ ପୁଣି ଆରମ୍ଭ କରୁଥିଲେ ପାଠପଢ଼ା । ଦିନ ନଅଟା ବେଳକୁ ବଢ଼ା ହେଉଥିଲା ସକାଳଓଳିର ପାରୁଶ । ସେହି ରନ୍ଧାରେ କିଛି ଆଭିଜାତ୍ୟ ନ ଥିଲେ ମଧ୍ୟ ଖାଇବାଟା ଥିଲା ଘରୋଇ ରନ୍ଧା ପରି ତୃପ୍ତିକର । ସେହି ଢାଞ୍ଚାରେ ମିଶି ରହିଥିଲା ମଣିବୋଉଙ୍କର ଆନ୍ତରିକତା । ତେଣୁ ମେସ୍‌ରେ ଚଳିବାରେ କିଛି ଅସୁବିଧା ହେଉ ନ ଥିଲା । ହେଲେ ବେଳେ ବେଳେ ମନରେ ଝୁରିମାରୁଥିଲା ବଡ଼ ମା'ଙ୍କର ଆଦର ଓ ଯତ୍ନ । ବାପ ମା ଛେଉଣ୍ଡ ସନ୍ତାନର ଏକମାତ୍ର ସମ୍ପର୍କ ଥିଲେ ବଡ଼ ମା ଆଉ କିଛି ପରିମାଣରେ ଦାଦା ।

## ବଡ଼ ମା' ଓ ଦାଦା :

ପରଶୁରାମ ଅନାୟାସରେ ପୁରାର ପରିସ୍ଥିତି ସହିତ ଖାପଖୁଆଇ ନିଜକୁ ଚଳାଇ ନେଇପାରୁଥିଲେ । ପରଶୁରାମ କିଛି ପରିମାଣରେ ଥିଲେ ନିଃସ୍ୱ । କେବଳ ବୃତ୍ତି ଉପରେ ନିର୍ଭର କରି ଚଳୁଥିବା ପରଶୁରାମଙ୍କ ଆର୍ଥିକ ଅବସ୍ଥା ବେଳେ ବେଳେ ଶୋଚନୀୟ ହୋଇପଡ଼ୁଥିଲା । ଯେତେବେଳେ ବୃତ୍ତି ମିଳିବାରେ ଅଯଥା ବିଳମ୍ବ ଘଟିଯାଉଥିଲା ମେସ ଖର୍ଚ୍ଚ ଦେଇ ନ ପାରି କିଛିଦିନ ଉପବାସ ବା ଅର୍ଦ୍ଧାହାରରେ ସମୟ କାଟିବାକୁ ହେଉଥିଲା । ହେଲେ ଏ କଥା କାହାରି ନଜରକୁ ଆସୁ ନ ଥିଲା । ଆଉ ଯେତେବେଳେ ବୃତ୍ତି ମିଳୁଥିଲା ସେଥିରୁ କିଛି ଟଙ୍କା ନିଶ୍ଚୟ ପଠାଉଥିଲେ ବଡ଼ମା'ଙ୍କ ପାଖକୁ ଖର୍ଚ୍ଚ ତୁଲାଇବା ପାଇଁ ।

ଅତ୍ୟନ୍ତ ଆତ୍ମ ଅଭିମାନୀ ଥିଲେ ପରଶୁରାମ । ତାଙ୍କର ଥିଲା ଗଭୀର ସମ୍ମାନ ବୋଧର ଭାବନା । ନିଜର ଚେହେରାରେ ସେ ଥିଲେ ନିଶ୍ଚୟ ଅଭିଜାତ ଶ୍ରେଣୀର ।

Digitized by PPRACHIN, SOA

ତେଣୁ ସେ ସମସ୍ତ ପରିସ୍ଥିତିରେ ଆତ୍ମସମ୍ମାନ ରକ୍ଷାପାଇଁ ତତ୍ପର ଥିଲେ । ସେ ଗଭୀର ଅଧ୍ୟବସାୟ ସହକାରେ ପଢ଼ୁଥିଲେ । ଶ୍ରେଣୀ ମଧ୍ୟରେ ସେ ଥିଲେ ସବୁଠାରୁ ବୟସ୍କ । ପିଲାବେଳରେ ନିଜର ଅଜାଣତରେ ଆଉ ଅସତ୍ୟରେ ନିଜ ହାତରୁ ଖସିଯାଇଥିବା ୧୧ ବର୍ଷର ସମୟ ଲାଗି ତାଙ୍କର ଟିକିଏ ଅନୁଶୋଚନା ଥିଲା । ହେଲେ ତାହା ତାଙ୍କ ପାଇଁ ହୀନମନ୍ୟତାର କାରଣ ହୋଇ ନ ଥିଲା । ସେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ ଜଣେ ମେଧାବୀ ଆଉ ପରିଶ୍ରମୀ ଛାତ୍ର ଭାବରେ । ଲୁଣିପାଣି ଘେରା ଅନାବୁଆ ମାଲୁଦ ଅଞ୍ଚଳରୁ ଆସିଥିବା ପରଶୁରାମଙ୍କ ପାଇଁ ଅଷ୍ଟମ ଶ୍ରେଣୀର ପ୍ରଥମ ସ୍ଥାନଟି ଯେପରି ସଂରକ୍ଷିତ ହୋଇ ରହିଯାଇଥିଲା ।

ଏ ମଧ୍ୟରେ ହାରାହାରି ବରଷଟିଏ ବିତିଗଲାଣି । ୧୯୦୭ ସାଲର ଭାରତ । ଦୀର୍ଘକାଳ ଧରି ସ୍ଥିର ରହିଥିବା ଦେଶର ରାଜନୈତିକ ଶାନ୍ତ ଶିଥିଳ ସ୍ରୋତଟି ହଠାତ୍ ଜୋରରେ ଚହଲି ଗଲା । କେଉଁ ପ୍ରବଳ ଘୂର୍ଣ୍ଣିର ଅଶାନ୍ତ ଆଘାତରେ ପାଣିର ସୁଅଟି ହଠାତ୍ ବିକ୍ଷୁବ୍ଧ ହୋଇଗଲା । ତାହା ଥିଲା ବଙ୍ଗଭଙ୍ଗ ଆନ୍ଦୋଳନର ସମୟ । ଭାରତ ଭୂଇଁରେ ମୁଣ୍ଡ ଟେକିଲା ସନ୍ତ୍ରାସବାଦ ଦେଶ ମାତୃକାର ସେବା ଲାଗି ।

**ଶଶୀଦା :**

ସେହି ସନ୍ତ୍ରାସବାଦ ଆନ୍ଦୋଳନରେ ଦୀର୍ଘକାଳ କଟାଉଥିବା ଜଣେ ବ୍ୟକ୍ତି ହଠାତ୍ କଟକ ଆସି ପହଞ୍ଚିଗଲେ ପୁରୀରେ । ବୋଧହୁଏ କିଛି ସମୟ ଅଜ୍ଞାତବାସରେ ବିତାଇ ଓଡ଼ିଶାରେ ସେହି ସନ୍ତ୍ରାସବାଦର ଧାରାକୁ ସମ୍ପ୍ରସାରିତ କରିବାପାଇଁ କିଛି ପ୍ରଚେଷ୍ଟା କରୁଥିଲେ । ସେ ସମ୍ପର୍କରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଆତ୍ମଜୀବନୀରୁ କିଛି ଉଦ୍ଧୃତି ଏହିପରି ଭାବରେ—

"ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଓ ବିଂଶ ଶତାବ୍ଦୀର ଆରମ୍ଭରେ ବଙ୍ଗଦେଶରେ ସନ୍ତ୍ରାସବାଦୀ ଦଳ ରାଜନୈତିକ କ୍ଷେତ୍ରରେ ବେଶ୍ ଜଣାଶୁଣା ହୋଇ-ଥିଲେ । ସେ ଥିଲେ ସେହି ଦଳର ଜଣେ ମୁଖ୍ୟକର୍ମୀ । ସେତେବେଳେ ରାଜନୈତିକ ହତ୍ୟାକାଣ୍ଡମାନ ସନ୍ତ୍ରାସବାଦୀମାନଙ୍କ ଦ୍ୱାରା ଘଟୁଥିଲା । ଭାରତର ସ୍ୱାଧୀନତା ଥିଲା ସେମାନଙ୍କର କାମ୍ୟ । ଦଳ ଭିତରେ ତାଙ୍କ ଡାକନାମ ଥିଲା ଶଶୀଦା । ମାତ୍ର ପ୍ରକୃତ ନାମ ଥିଲା ଶଶୀଭୂଷଣ ରାୟ ଚୌଧୁରୀ । ଶଶୀଦା ବଙ୍ଗଳା ଡାକ, ଓଡ଼ିଆରେ ଶଶୀନା ବା ଶଶୀଭାଇନା ହେବ । ତାଙ୍କଠାରୁ ବୟୋଜ୍ୟେଷ୍ଠ ଲୋକ ସୁଦ୍ଧା ସେହି ଡାକ ନାମରେ ଡାକୁଥିଲେ । ଶଶୀଦା ନିଜ ହାତରେ କାହାକୁ ହତ୍ୟା କରି ନ ଥିଲେ । କିନ୍ତୁ ହତ୍ୟାକାରୀକୁ ପିସ୍ତଲ ବୋମା ଆଦି ଯଥାସ୍ଥାନରେ ଯୋଗାଇଦେବା ଥିଲା ତାଙ୍କର କାମ । ସେ କାମ ସେ ନିଜେ ଧରା ନ ପଡ଼ି ହତ୍ୟାକାରୀକୁ ଧରା ନ ପକାଇ ଭଲ ଭାବରେ କରିପାରୁଥିଲେ । ଦଳ ଭିତରକୁ ନୂଆ ନୂଆ ଲୋକ ଆଣି ପୁଷ୍ଟ କରିବା ମଧ୍ୟ ତାଙ୍କ ଉପରେ ନ୍ୟସ୍ତ ଥିଲା । ଏସବୁ ମୁଁ ଜାଣିଲି ତାଙ୍କ ସଙ୍ଗେ ବହୁକାଳ ରହିବା

Digitized by PPRACHIN, SOA

ପରେ । ସେ ଗ୍ରନ୍ଥାବାସକୁ ଆସି ପ୍ରଥମେ କେତେଜଣ ସମସ୍ତଙ୍କ ସଙ୍ଗେ ସମୂହ ଭାବରେ କଥାବାର୍ତ୍ତା କଲେ । ତା' ପରେ ସେ ସ୍ଵଳ୍ପ ଜଣଙ୍କୁ ବାଛିଲେ । ସେ ସ୍ଵଳ୍ପଜଣ ନୀଳକଣ୍ଠ ଦାସ, ପରଶୁରାମ ବର୍ମା, ରଘୁନାଥ ମହାପାତ୍ର ଆଉ ମୁଁ । ନୀଳକଣ୍ଠ ଦାସ ଏକାଦଶ ଶ୍ରେଣୀର । ପରଶୁରାମ ଓ ରଘୁନାଥ ଅଷ୍ଟମ ଶ୍ରେଣୀର ।''

ଶଶୀଦାଙ୍କ ସମ୍ପର୍କରେ ଆସି ପରଶୁରାମଙ୍କ ଦୂରଦୃଷ୍ଟି ଖୋଲିଯାଇଥିଲା । ତାଙ୍କଠାରୁ ଆଣି ପଢ଼ୁଥିଲେ ବଙ୍ଗଳା ଭକ୍ତିଯୋଗ । ତାଙ୍କ ପାଖେ ବସି ଶୁଣିଥିଲେ ସରକାରଙ୍କଦ୍ଵାରା ବାଜେୟାପ୍ତ ହୋଇଥିବା କିଛି ବହି, ଯେପରି 'ଦେଶର ଡାକ' । ଶଶୀଦାଙ୍କ ସମ୍ପର୍କରେ ଆସି ପରଶୁରାମ ଦେଶର ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ସଙ୍ଗେ ଭଲଭାବରେ ପରିଚିତ ହୋଇଥିଲେ । ଆଉ ମଧ୍ୟ ପରିଚୟ ପାଇଥିଲେ ବ୍ରାହ୍ମସମାଜ ଆଦି ଧର୍ମର ନୂତନ ସଂସ୍କାର ବିଧି ଆଉ ଶ୍ରୀରାମକୃଷ୍ଣ ଓ ବିବେକାନନ୍ଦଙ୍କର ବେଦାନ୍ତ ଭିତ୍ତିକ ଦର୍ଶନର କିଛି ଅଂଶ । ଏହା ତାଙ୍କର ଜ୍ଞାନର ପରିସରକୁ ପ୍ରସାରିତ କରିଥିଲା । ଏସବୁ ମଧ୍ୟରେ ତାଙ୍କର ସନ୍ତ୍ରାସବାଦୀ ଦଳରେ ଯୋଗଦେବାକୁ ଇଚ୍ଛା ନ ଥିଲା । କାରଣ ଦାରିଦ୍ର୍ୟ କଷାଘାତରୁ ମୁକ୍ତ ହେବା ପାଇଁ ତାଙ୍କର ଆପ୍ରାଣ ଚେଷ୍ଟା ଥିଲା । ତାହା କେବଳ ସମ୍ଭବ ହେବ ତାଙ୍କର ଉଚ୍ଚ ଶିକ୍ଷାଲାଭ କରି ପ୍ରତିଷ୍ଠିତ ହୋଇପାରିବା ଦ୍ଵାରା । ତେଣୁ ସେ ରାଜନୈତିକ ଜୀବନର ଅନିଶ୍ଚିତତା ଭିତରେ ପୁଣି ଦାରିଦ୍ର୍ୟ ମଧ୍ୟକୁ ଝାମ୍ପ ଦେବାପାଇଁ ରାଜି ନ ଥିଲେ । ହେଲେ ସେ ଶଶୀଦାଙ୍କୁ ଭେଟୁଥିଲେ ସାମୟିକ ଭାବରେ ।

ଏ ସମ୍ପର୍କରେ ପଣ୍ଡିତ ମିଶ୍ରଙ୍କର ଅମୃତ ଚରିତରୁ କିଛି ଅଂଶ—''ପରଶୁରାମ କ୍ରମେ ଆପେ ଆପେ ଖସିଗଲେ । ସେ ଯେପରି ମେଧାବୀ ସେପରି ପରିଶ୍ରମୀ । ନିଜ ପଢ଼ାପଢ଼ିରେ କ୍ଷତି ଘଟାଇ ସେ ଶଶୀଦାଙ୍କ ମେଳରେ ରହିବାପାଇଁ ଭଲ ମଣିଲେ ନାହିଁ । ଶଶୀଦା ମଧ୍ୟ ଦିନେ ହସି ହସି କହିଲେ, ''ମୁଁ କ'ଣ ଭଲ ରାସ୍ତା ଖୋଜୁଛି କି ? ଯେ ଭଲ ହୋଇପାରିବ ଅଥଚ ହୋଇପାରୁ ନାହିଁ, ମୋର ସେମିତି ପିଲା ଦରକାର । ମୁଁ ଜାଣିଥିଲି ପରଶୁରାମକୁ ଗ୍ରନ୍ଥ ଭୂ ଏକା ମୋ ପାଖକୁ ଆସନ୍ତୁ ନାହିଁ । ତା' ଠେଇଁ ମୋର ଆଉ ଦରକାର କ'ଣ ?''

ଶଶୀଦାଙ୍କର ଅନ୍ତରଙ୍ଗ ସାନ୍ନିଧ୍ୟରୁ ପରଶୁରାମ ଖସି ଆସିଥିଲେ ମଧ୍ୟ ପୁରୀ ହାଇସ୍କୁଲରେ ଶଶୀଦାଙ୍କର ପ୍ରଭାବ ତାଙ୍କୁ ବହୁ ପରିମାଣରେ ଆଚ୍ଛନ୍ନ କରି ରଖିଥିଲା । ଶଶୀଦାଙ୍କର ମେଳରେ ଗୁଣ୍ଡିଚା ଯାତ୍ରା ବେଳେ ସେ ଯାତ୍ରୀଙ୍କ ସେବାରେ ବ୍ୟସ୍ତ ରହୁଥିଲେ । ପରଶୁରାମଙ୍କର ନବମ ଶ୍ରେଣୀର ବର୍ଷ । ସେ ବର୍ଷ ଅସଂଖ୍ୟ ଯାତ୍ରୀ ଆସି ପହଞ୍ଚିଲେ ଗୁଣ୍ଡିଚା ଯାତ୍ରାରେ । ଏହି ଯାତ୍ରୀଙ୍କ ସେବାର ନେତୃତ୍ଵ ନେଇଥାଆନ୍ତି ଗୋପବନ୍ଧୁ । ମାତ୍ର ମୁଖ୍ୟ କାରପରଦାର ଥାଆନ୍ତି ଶଶୀଦା । ଗୋଦାବରୀଶ, ପରଶୁରାମ ଅନ୍ୟ ଛାତ୍ରମାନଙ୍କ ସହିତ ଯାତ୍ରୀଙ୍କ ସେବାରେ ବ୍ୟସ୍ତ ରହୁଥାଆନ୍ତି ।

Digitized by PPRACHIN, SOA

ହଠାତ୍ ସେହି ବର୍ଷ ହଇଜା ଦେଖାଗଲା । କ୍ରମେ ହଇଜା ପ୍ରବଳ ଆକାର ଧାରଣ କଲା । ଶହ ଶହ ଲୋକ ମରିବାକୁ ଲାଗିଲେ । ସହରର ରାସ୍ତା ଘାଟରେ ବହୁତେଇ ହୋଇଗଲା ଶବ । ଦୃଶ୍ୟ ଅତି ମର୍ମସ୍ପର୍ଶୀ ଓ କରୁଣ ଥିଲା । ଏ ଶବମାନଙ୍କର ସତ୍କାରର ଦାୟିତ୍ୱ ପଡ଼ିଲା ଛାତ୍ରମାନଙ୍କ ଉପରେ ; ଅବଶ୍ୟ ବୟସ୍କମାନେ ସାହାଯ୍ୟ ଓ ଉପଦେଶ ପ୍ରଦାନ କରୁଥାଆନ୍ତି । ସେ ବର୍ଷ ଖରା ଛୁଟିକୁ ମିଶାଇ ଆଉ ଅଧିକ ଦେଡ଼ମାସ ସ୍କୁଲ ଛୁଟି ହେଲା ।

ଏହି ସମୟରେ ଗୋଦାବରୀଶଙ୍କର ଜୀବନର ଗୋଟିଏ ମର୍ମନ୍ତୁଦ ଘଟଣା ଘଟିଲା । ଏହା ସହିତ ଅନ୍ତରଙ୍ଗ ବନ୍ଧୁ ଭାବେ ସଂପୃକ୍ତ ଥିଲେ ପରଶୁରାମ, ଗୋଦାବରୀଶଙ୍କର ଘନିଷ୍ଠ ବନ୍ଧୁ ଭାବରେ । ତାହା ଏପରିଭାବେ ବର୍ଣ୍ଣିତ ହୋଇଛି ଗୋଦାବରୀଶଙ୍କର ଆତ୍ମ ଚରିତରେ—

"ହଇଜା ଖବର ଯାଇ ମଫସଲରେ ବ୍ୟାପିଲା । ମୋତେ ଘରକୁ ନେଇଯିବା ନିମନ୍ତେ ଶ୍ରାବଣମାସ ଶୁକ୍ଳପକ୍ଷ ପ୍ରାରମ୍ଭରେ ମୋ ପିତା ଆସି ପୁରୀରେ ପହଞ୍ଚିଲେ । ସେତେବେଳକୁ ଛୁଟି ସରିବାର ସମୟ ହୋଇଯାଇଥିଲା । ସ୍ୱେଚ୍ଛାସେବକ ମେଳରେ ମୋ କାର୍ଯ୍ୟ ସେ କେତେଦିନ ଦେଖିଲେ । ମୁଁ ସେ ସମୟରେ ଘରକୁ ଯିବାକୁ ମନାକଲି । ଶଶୀଦା ମୋ କଥାର ସମର୍ଥନ କଲେ । ପିତା ବୁଝିଲେ ମୁଁ ଘରକୁ ନ ଗଲେ ଚଳେ । ସୁତରାଂ ସେ ଅଷ୍ଟମୀଦିନ ଫେରିଗଲେ । ମୁଁ ଷ୍ଟେସନକୁ ଛାଡ଼ିବାକୁ ଗଲି । ତାଙ୍କୁ ବିଦାୟ ଦେବାବେଳେ ମୁଁ ବିନା ବରାବର ଆଖି ଛଳ ଛଳ କରେ, ସେ କେବେ ବିଚଳିତ ହେଉନ୍ତି ନାହିଁ । ମାତ୍ର ସେଦିନ ସେ କାନ୍ଦି ପକାଇଲେ । ଚାରିଦିନ ବିତିଗଲା । ଦ୍ୱାଦଶୀ ଦିନ ହଇଜା ରୋଗରେ ପିତାଙ୍କର ମୃତ୍ୟୁ ଘଟିଥିବା ବାର୍ତ୍ତା ଆଣି ଚିଠି ପହଞ୍ଚିଲା । ସେ ଚିଠି ପ୍ରଧାନଶିକ୍ଷକ ଚନ୍ଦ୍ରମୋହନ ବାବୁଙ୍କଠାରୁ ପାଇ ପରଶୁରାମ ମୋ ହାତରେ ଦେଲେ ।"

ଗୋଦାବରୀଶ ଦୁଃଖରେ ମୂହ୍ୟମାନ ହୋଇଗଲେ । ତାଙ୍କ ଜୀବନରେ ପିତାଙ୍କ ପରେ ଆସ୍ତେ ଆସ୍ତେ ମାତା, ବୁଢ଼ୀମା, ଶେଷରେ ସାନଭଉଣୀ ବି ବିଦାୟ ନେଇ ଚାଲିଗଲେ ସଂସାରରୁ । ହେଲେ ପରଶୁରାମଙ୍କର ଜୀବନରେ ଏ ସମସ୍ତ ଦୁଃଖ ଯିମିତି ଓଲ୍ଟାଇ ପଡ଼ିଥିଲା ଶୈଶବ ଅବସ୍ଥାରୁ । ମାତ୍ର ପାଞ୍ଚବର୍ଷ ବୟସରେ ସେ ବାପା ଓ ମା'ଙ୍କୁ ଏକାଠରରେ ହରାଇ ବସିଥିଲେ । ଉଷ୍ଣ ଭୂଇଁରେ ଗଜୁରିଥିବା ଅଙ୍କୁରଟି ରୁଆ ହେଲା ଚିଲିକା କୂଳର ଲୁଣିଆ ମାଟିରେ । ତା ପରେ ଶାଖା ମେଲାଇ ଦୁଏତ ଆସି ପହଞ୍ଚିଯାଇଥିଲା ପ୍ରବାସରେ, ପୁରୀ ସହରରେ । ତେଣୁ କୁଟୁମ୍ବ ଶୂନ୍ୟ ପରଶୁରାମଙ୍କ ପାଖକୁ ଦାଦି ଆସୁଥିଲେ ବରଷକେ ଥରେ ଅଧେ । ହେଲେ ଗୋଦାବରୀଶଙ୍କର ପିତା ଆସୁଥିଲେ ବହୁବାର । ଏହି ଅବକାଶରେ ତାଙ୍କ ସହିତ ପରଶୁରାମଙ୍କର ସମ୍ପର୍କ ହୋଇପାରିଥିଲା ନିବିଡ଼ ଆଉ ଅନ୍ତରଙ୍ଗ । ପରଶୁରାମଙ୍କ

Digitized by PPRACHIN, SOA

ପାଇଁ ଏହି ଦୁଃଖ ବ୍ୟକ୍ତିଗତ ହୋଇଥିଲେ ମଧ୍ୟ ଗୋଦାବରୀଶଙ୍କୁ ସାନ୍ତ୍ୱନା ଦେବା ପାଇଁ ସେ ଛିଡ଼ା ହୋଇଥିଲେ ।

**ଚନ୍ଦ୍ରମୋହନ ମହାରଣା :**

ପରଶୁରାମ ହାଇସ୍କୁଲରେ ଯୋଗଦେବାବେଳକୁ ଅଧର ଚନ୍ଦ୍ର ବାନାର୍ଜୀ ବଦଳି ହୋଇ ହଠାତ୍ ଯୋଗଦେଇଥାଆନ୍ତି ଚନ୍ଦ୍ରମୋହନ ମହାରଣା ପ୍ରଧାନ ଶିକ୍ଷକ ଭାବେ । ସେ ଥିଲେ ସର୍ବପ୍ରଥମ ଓଡ଼ିଆ ପ୍ରଧାନ ଶିକ୍ଷକ ପୁରୀ ଜିଲ୍ଲା ସ୍କୁଲର । ବାନାର୍ଜୀଙ୍କ ସମୟରେ ଭାଙ୍ଗି ପଡ଼ିଥିବା ଶୃଙ୍ଖଳାକୁ ଅଳ୍ପ ସମୟ ଭିତରେ ସଜାଡ଼ି ଦେଲେ ଚନ୍ଦ୍ରମୋହନ ବାବୁ । ସବୁ ହୋଇଗଲା ନିୟମିତ ଆଉ କାର୍ଯ୍ୟ ଚାଲିଲା ଶୃଙ୍ଖଳାର ବଶବର୍ତ୍ତୀ ହୋଇ । କ୍ଲାସ ବେଳ ଛଡ଼ା ଅନ୍ୟ ସମୟରେ ମଧ୍ୟ ଛାତ୍ରଙ୍କର ଚାଲିଚଳନ ପ୍ରତି ସଜାଗ ଦୃଷ୍ଟି ରଖାଗଲା ।

ଚନ୍ଦ୍ରମୋହନ ବାବୁ ଇଂରାଜୀ ଭାଷାରେ ଧୁରୀଣ ଓ ବିଶେଷଜ୍ଞ ଥିଲେ । ଆଉ ତାଙ୍କର ଇଂରାଜୀ ଭାଷାର ଉଚ୍ଚାରଣ ଥିଲା ଅତ୍ୟନ୍ତ ଶୁଦ୍ଧ, କିନ୍ତୁ ପରମ ଶରେ ସାହେବୀ ଢଙ୍ଗର । ତାଙ୍କର ଶିକ୍ଷାଦାନର କଠିନ ନିୟମବଦ୍ଧତା ଭିତରେ ଯେଉଁ ଛାତ୍ରମାନେ ପାରଦର୍ଶିତା ଲାଭ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଗୋଦାବରୀଶ ଆଉ ପରଶୁରାମ । ଚନ୍ଦ୍ରମୋହନଙ୍କ ଯୋଗୁଁ ସେମାନଙ୍କ ଉଚ୍ଚାରଣ ଅତ୍ୟନ୍ତ ସାବଲୀଳ ଆଉ ଶୁଦ୍ଧ ହୋଇପାରିଥିଲା । ପୁସ୍ତକ ଅଧ୍ୟୟନ ଛଡ଼ା ଇଂରାଜୀ ଶବ୍ଦକୋଷର କଠିନ ଶବ୍ଦମାନଙ୍କୁ ଆୟତ୍ତ କରିବାପାଇଁ ଚାଲିଥିଲା ସେମାନଙ୍କ ପ୍ରତିଯୋଗିତା ।

**ଉତ୍କଳମଣି :**

ଏହି ସମୟରେ ପରଶୁରାମଙ୍କ ଉପରେ ଯେଉଁ କେତେକ ବ୍ୟକ୍ତି ଗଭୀର ଛାପ ଆଙ୍କି ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଉତ୍କଳମଣି ଗୋପବନ୍ଧୁ । ଗୋପବନ୍ଧୁ ୧୯୦୪ ସାଲରେ ବି.ଏ. ପାସକରି କିଛି ବର୍ଷ ପରେ ଓକିଲାତି ଆରମ୍ଭ କରିଥାଆନ୍ତି । ମାତ୍ର ମନ ରହିଥାଏ ଦେଶ ସେବାରେ । କେବେ ବନ୍ୟା ଦୁର୍ଗତ ଲୋକଙ୍କର ସେବାରେ ଅଥବା କେବେ ସ୍ୱଦେଶୀ ଆନ୍ଦୋଳନର ପରିସର ମଧ୍ୟରେ । ଗୋଦାବରୀଶଙ୍କ ସଙ୍ଗେ ବହୁବାର ପରଶୁରାମ ଭେଟିଥିଲେ ଗୋପବନ୍ଧୁଙ୍କୁ ।

ପରଶୁରାମଙ୍କର ପାରିବାରିକ ଜୀବନରେ ବନ୍ଧନର ସେପରି କିଛି ଦୃଢ଼ତା ନ ଥିଲା । ଆଉ ସାମାଜିକ ରୀତି ନୀତିର କାଇଦା କଟକଣା ତାଙ୍କ ଉପରେ ଥିଲା ଶିଥିଳ । ଶଶୀଦାଙ୍କର ସହିତ ସମ୍ପର୍କ ତାଙ୍କର ଚିନ୍ତାର ଦିଗ୍‌ବଳୟ ସମ୍ପ୍ରସାରିତ କରିଥିଲା । ବ୍ରାହ୍ମ ସମାଜର ରାଜା ରାମମୋହନ ରାୟ, କେଶବ ଚନ୍ଦ୍ର ସେନଙ୍କ ଚିନ୍ତାଧାରା ସହିତ ପୁରୀର ବାତାବରଣ ଆବୋରି ବସିଥାଏ ଶ୍ରୀ ରାମକୃଷ୍ଣ ପରମହଂସଙ୍କ

Digitized by PPRACHIN, SOA

ଦର୍ଶନ । ଖ୍ରୀଷ୍ଟିଆନ ସମାଜର ସାର୍ବଜନୀନ ଭ୍ରାତୃଭାବ ଶିକ୍ଷିତ ସମାଜ ଉପରେ ପ୍ରଭାବ ବିସ୍ତାର କରିଥାଏ । ପରିଣାମରେ କେବଳ ଜାତିପ୍ରାଣ ମଧୁସୂଦନ ଖ୍ରୀଷ୍ଟଧର୍ମ ଗ୍ରହଣ କରିନଥିଲେ, କବିବର ରାଧାନାଥ ଓ ବ୍ୟାସକବି ଫକୀର ମୋହନ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ ଲାଗି ସିଦ୍ଧାନ୍ତ ନେଇ ସାରିଥିଲେ ମଧ୍ୟ ସାମାଜିକ ବାଛନ୍ଦର ଭୟରେ ନିବୃତ୍ତ ରହିଥିଲେ । ଏ ସମସ୍ତ ପ୍ରଭାବ ଯୋଗୁଁ ପରଶୁରାମଙ୍କୁ ବହୁ ସାମାଜିକ ଓ ଧାର୍ମିକ ବିଧିବିଧାନ ଅଲୋଡ଼ା ମନେ ହୋଇଥିଲା । ଅଉ ପୁଣି ମନ୍ଦିରରେ ଅର୍ଦ୍ଧଶିକ୍ଷିତ କିମ୍ବା ଅଜ୍ଞ ପଣ୍ଡାମାନଙ୍କର ଯାତ୍ରୀମାନଙ୍କ ଉପରେ ଦୌରାତ୍ମ୍ୟ, ପରଶୁରାମଙ୍କର ମନରେ ଭରିଦେଇଥିଲା ଏକ ରକମ ବିତୃଷ୍ଣାର ଭାବ । ଅନେକ ପୁରୋହିତ ସଂସ୍କୃତ ଭାଷାରେ ସମ୍ପୂର୍ଣ୍ଣ ଅଜ୍ଞ ରହି ଯେପରି କର୍ମକର୍ମାଣି ସବୁ ଉପରଠାଉରିଆ ଭାବରେ କରିଚାଲିଥିଲେ, ତାହାପ୍ରତି ଥିଲା ପରଶୁରାମଙ୍କର ପରୋକ୍ଷରେ ଆକ୍ଷେପ । ବୋଧହୁଏ ତାହା ଥିଲା ୧୯୦୭ ମସିହାର କଥା । ପରଶୁରାମ ଦଶମ ଶ୍ରେଣୀରେ ଅଧ୍ୟୟନ, କରୁଥିଲେ । ସେତେବେଳକୁ ଗୋଦାବରୀଶ ସ୍କୁଲଶିକ୍ଷା ଶେଷକରି କଟକରେ କଲେଜରେ ନାମ ଲେଖାଇଲେଣି । ଏହି ସମୟରେ ସହୃଦୟତା ଗଢ଼ିଉଠିଥିଲା ତାଙ୍କର ଶ୍ରେଣୀରେ ପଢ଼ୁଥିବା ପଦ୍ମନାଭ ମିଶ୍ରଙ୍କର ସହ । ପରଶୁରାମ କ୍ଲାସରେ ପ୍ରଥମସ୍ଥାନ ଅଧିକାର କରୁଥିବାରୁ ତାଙ୍କ ପ୍ରତି ଥିଲା ଟିକିଏ ସମ୍ମାନବୋଧ । ପରଶୁରାମ ଓ ପଦ୍ମନାଭ ଅନେକ ସମୟରେ ଏକାଠି ଖେଳାବୁଲା, ପଢ଼ାପଢ଼ି ଓ ଖିଆପିଆ କରୁଥିଲେ । ତେଣୁ ଉଭୟଙ୍କର ସମ୍ପର୍କ ହୋଇ ଉଠିଥିଲା ଅତ୍ୟନ୍ତ ଅନ୍ତରଙ୍ଗ ।

**କୁସଂସ୍କାର—**

ପଦ୍ମନାଭ ଆସିଥିଲେ ବୀରନରସିଂହପୁର ଶାସନରୁ । ଉଭୟଙ୍କର ଏକାସାଙ୍ଗରେ ଖରାଛୁଟିରେ ଆଗାମୀ ବର୍ଷର ମାଟ୍ରିକ୍ ପରୀକ୍ଷା ଲାଗି ପ୍ରସ୍ତୁତ ଚାଲିଥିଲା । ଏତିକିବେଳେ ପଡ଼ିଲା ଶୀତଳଷଷ୍ଠୀ ଯାତ୍ରା । ପୁରୀ ନିକଟବର୍ତ୍ତୀ ଶାସନ-ମାନଙ୍କରେ ଶୀତଳଷଷ୍ଠୀ ଯାତ୍ରା ଅତି ଧୂମଧାମରେ ପାଳିତ ହୁଏ । ଏହି ଉତ୍ସବରେ ବାଣ, ରୋଷଣୀ, ଯାତ୍ରା, ପଟୁଆର ଲାଗିରହୁଥିଲା । ପ୍ରତି ଗାଁରେ କୁଣିଆଁ ମଇପ-ଙ୍କର ଭିଡ଼ ଜମିଥାଏ । ପଦ୍ମନାଭ ପର୍ଶୁରାମଙ୍କୁ ନିମନ୍ତ୍ରଣ ଜଣାଇଲେ ତାଙ୍କର ଗାଁକୁ ଯାଇ ଯାତ୍ରାରେ ଭାଗନେବାପାଇଁ । ଶୀତଳଷଷ୍ଠୀ ଯାତ୍ରାର ପୂର୍ବଦିନ ସନ୍ଧ୍ୟାରେ, ପରଶୁରାମ ପଦ୍ମନାଭଙ୍କ ସହ ଯାଇ ପହଞ୍ଚିଲେ ବୀରନରସିଂହପୁର ଶାସନରେ । ପଦ୍ମନାଭଙ୍କର ଘରେ ପରଶୁରାମଙ୍କୁ ସ୍ୱାଗତ କରାଯାଇଥିଲା ଅତ୍ୟନ୍ତ ଆନ୍ତରିକତାର ସହ । ମାତ୍ର ତାର ଆରଦିନ ସକାଳେ କିଛି ଅଘଟଣ ଘଟିଗଲା । ତାହା ଏଭଳି ଭାବରେ ସଙ୍କଳିତ ହୋଇଛି ଡାକ୍ତର ରାଧାଚରଣ ପଣ୍ଡାଙ୍କର ରଚିତ ପରଶୁରାମଙ୍କର ଜୀବନ ଚରିତରେ

"ଆରଦିନ ସକାଳେ ପରଶୁରାମଙ୍କର ଗାଁ ମୁଣ୍ଡର ପୁଷ୍କରିଣୀରେ ଗାଧୋଇବା ସମୟରେ ସ୍ଥାନୀୟ ସନାତନୀ ବୁଢ଼ା କେତେଜଣ ପରଶୁରାମଙ୍କର ଗାଧୁଆଟାରୁ

Digitized by PPRACHIN, SOA

ଦାଚ୍ଛନ୍ତି । ସେ ଅବ୍ରାହ୍ମଣ ହୋଇଥିବାରୁ ବ୍ରାହ୍ମଣ ଶାସନର ପୁଷ୍କରଣୀରେ ଗାଧୋଇବା ଅନୁଚିତ ବୋଲି କହୁଥିଲେ । ପୁଣି ସାର୍ଥୀପିଲା ଘରେ ଖାଇବାକୁ ବାଧା ସୃଷ୍ଟି କରୁଥିଲେ ସେ । ବ୍ରାହ୍ମଣ ଘରେ ବସି ଖାଇବେ ନାହିଁ ବୋଲି ଆପତ୍ତି ହେଲା । ତଥାପି ବିଚଳିତ ନ ହୋଇ ପରଶୁରାମ ସବୁ ସହିଲେ ଏବଂ ନିଜର ଆପତ୍ତି ସବୁ ସ୍ପଷ୍ଟ ଭାବରେ ସେମାନଙ୍କୁ ବୁଝାଇ ଦେଉଥିଲେ ।"

ଏହା ପରର ବିବରଣୀ ମିଳିନାହିଁ । ହେଲେ ଏହିଭଳି କିଛି ଘଟଣା ପରେ ପରଶୁରାମଙ୍କ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ତାଙ୍କର ଦୃଷ୍ଟିଭଙ୍ଗୀକୁ ଆମୂଳଚୂଳ ଭାବରେ ପରିବର୍ତ୍ତିତ କରିଦେଇଥିଲା । ସମାଜର ପ୍ରଚଳିତ ଗତାନୁଗତିକ ବିରୁଦ୍ଧରେ ତାଙ୍କ ଭିତରେ ଉଠିଥିଲା ପ୍ରବଳ ସଂଶୟର ଝଡ଼ ଯାହାର ଆଘାତରେ ଏତେ କାଳଧରି ଯତ୍ନରେ ତାଙ୍କ ମନରେ ବସା ବାନ୍ଧିଥିବା କୁସଂସ୍କାର ଜଡ଼ିତ ପରମ୍ପରା ସବୁ ଭାଙ୍ଗି ଉଜୁଡ଼ି ଯାଇଥିଲା । ସେ ପରବର୍ତ୍ତୀ କାଳରେ ଅର୍ଥହୀନ କୁସଂସ୍କାର ଆଉ ଭିତ୍ତିହୀନ କର୍ମକାଣ୍ଡ ବିରୁଦ୍ଧରେ ଏକ ପ୍ରକାର ସଂଗ୍ରାମ ଜାରି ରଖିଥିଲେ । ସେ ବୈରାଗୀ ମିଶ୍ରଙ୍କ ପରି ଥିଲେ ଜଣେ ପ୍ରତିଶ୍ରୁତିବଦ୍ଧ ସଂସ୍କାରକ । ତେଣୁ ସେ ସାରା ଜୀବନଧରି ବିଭିନ୍ନ ସମ୍ପ୍ରଦାୟର ଆଧ୍ୟାତ୍ମିକ ତତ୍ତ୍ୱ ଓ ସାଧନାର ଧାରା ସମ୍ପର୍କରେ ଅନୁଧ୍ୟାନ କରି ଭାରତୀୟ ଦର୍ଶନରେ ବେଦାନ୍ତର ମୂଳ ଅନ୍ତର୍ନିହିତ ଅର୍ଥ ଖୋଜିବାପାଇଁ ପ୍ରଚେଷ୍ଟା କରିଥିଲେ । ଏଥିପାଇଁ ତାଙ୍କର ସମସ୍ତ ଜୀବନଟି ସମର୍ପିତ ହୋଇଥିଲା ଅନୁସନ୍ଧିତ୍ସା ଆଉ ଅନୁଧ୍ୟାନ ପାଇଁ । ତାଙ୍କର ସମସ୍ତ ଜୀବନଟି ବିତି ଯାଇଥିଲା । ଅହରହ ଅଧ୍ୟୟନ ଆଉ ଅନ୍ୱେଷଣରେ ।

ହଁ, ତାଙ୍କର ବ୍ୟକ୍ତିଗତ ଆକ୍ଷେପ ଥିଲା ଅଶିକ୍ଷିତ ପୁରୋହିତ ବର୍ଗ ତଥା ସମାଜର ଅତ୍ୟନ୍ତ କୁସଂସ୍କାର ଜଡ଼ିତ ବ୍ୟକ୍ତିମାନଙ୍କ ପ୍ରତି, ଯେଉଁମାନେ କର୍ମକାଣ୍ଡୀକୁ ମାତ୍ରାଧିକ କରିଦେଇ ଅଯଥାରେ କୁସଂସ୍କାରର ଜଟିଳ ଜଞ୍ଜାଳରେ ସମାଜକୁ ପଥଭ୍ରଷ୍ଟ ଓ ଭାରାକ୍ରାନ୍ତ କରି ଦେଉଥିଲେ । ତେଣୁ ସେ ନିଜର ପୂଜାପଦ୍ଧତି, ବିଧିବିଧାନ, ଶୁଦ୍ଧିଶ୍ରାଦ୍ଧ ଆଦି ନିଜେ ସମ୍ପାଦନ କରୁଥିଲେ ଅଥବା ବିଦ୍ୱାନ୍ ଓ ଅଭିଜ୍ଞ ସଂସ୍କୃତ ପଣ୍ଡିତ ବା ଅଧ୍ୟାପକମାନଙ୍କ ଦ୍ୱାରା ସମ୍ପାଦନ କରାଉଥିଲେ, ଯେଉଁମାନେ ଅଧିକାଂଶ ବ୍ରାହ୍ମଣ ସମ୍ପ୍ରଦାୟର ଥିଲେ । ତାଙ୍କର ପ୍ରୋତ୍ସାହନରେ ବହୁ ବ୍ରାହ୍ମଣ କୁଳର ବାଲ୍ୟ ବିଧବା ଓ ବିଦବାଙ୍କର ବିବାହ ସମ୍ପାଦିତ ହୋଇଥିଲା । ବାଲ୍ୟ ବିବାହ ପ୍ରଥା ଦୂର କରିବାପାଇଁ ସେ ଉଦ୍ୟମ ଜାରି ରଖିଥିଲେ । ଏଥିପାଇଁ ସହାୟତା କରିଥିଲେ ।

ଏହାଛଡ଼ା ବ୍ରାହ୍ମଣ ଶାସନମାନଙ୍କରେ ଶିକ୍ଷାର ପ୍ରସାର ଲାଗି ଅଧିକ ଧ୍ୟାନ ଦେଇଥିଲେ, ମୁଖ୍ୟତଃ ସମାଜରୁ କୁସଂସ୍କାର ଦୂର କରିବା ପାଇଁ ।

୧୯୦୮ ମସିହା । ତାହା ଥିଲା ପରଶୁରାମଙ୍କର ମାଟ୍ରିକ୍ ପରୀକ୍ଷାର ବର୍ଷ । ସେ ଗମ୍ଭୀର ଅଧ୍ୟବସାୟ ସହିତ ପାଠପଢ଼ା କରୁଥିଲେ । ତେଣୁ ପରୀକ୍ଷାରେ ଉଚ୍ଚସ୍ଥାନ

Digitized by PPRACHIN, SOA

ରଷି ଉତ୍ତୀର୍ଣ୍ଣ ହେଲେ । ଫଳରେ ତାଙ୍କୁ ପୁଣି ବୃତ୍ତି ମିଳିଲା କଲେଜ ଅଧ୍ୟୟନ ପାଇଁ । ସେହି ବୃତ୍ତି ଟଙ୍କା ହିଁ ତାହାଙ୍କୁ ପୁରୀଠାରୁ ନେଇ ସ୍ଥାନିତ କରିଥିଲା କଟକରେ ।

## କଲେଜ ଶିକ୍ଷା

ସେତେବେଳେ ରେଭେନ୍ସା କଲେଜ,—ଓଡ଼ିଶାରେ ଅଧ୍ୟୟନର ମୁଖ୍ୟ ପ୍ରାଣକେନ୍ଦ୍ର ଅବସ୍ଥିତ ଥାଏ, କଟେଶ୍ୱ ନିକଟରେ କାଠଯୋଡ଼ୀ କୂଳରେ । ସେ ସମୟରେ କାଠଯୋଡ଼ୀ ଦେଉ ସ୍କନ୍ଦମଟୌକ, ଲାଲବାଗ ଆଉ ଜମଚନ୍ଦ୍ର ଭିତରେ ରହିଯାଇଥିଲା କେବଳ କଟକ ନୁହେଁ ସାରା ଓଡ଼ିଶାର ସ୍ନାୟୁ କେନ୍ଦ୍ର । କେବଳ ମହାନଦୀର ସେ ପାଖର ଅଞ୍ଚଳରେ ଥିଲା ଜାତୀୟ ଗୌରବ ମଧୁସୂଦନଙ୍କର ବାସଭବନ । ସେତେବେଳର ଓଡ଼ିଶାର ରାଜନୀତିର ମୁଖ୍ୟ ପୁରୁଷମାନଙ୍କର ବିଷୟରେ ପରଶୁରାମ, ଯାହାଙ୍କର ସମ୍ପର୍କରେ ଶୁଣିଥିଲେ ଅବା ଦୂରରୁ ଦେଖିଥିଲେ ସେମାନେ ଏଠାରେ ଆସି ନିମିତ୍ତ ହାତ ପାଆନ୍ତାରେ ଧରା ଦେଉଥିଲେ ।

ସେତେବେଳକୁ ଓଡ଼ିଶାରେ ଚାଲିଥାଏ ଉତ୍କଳ ସମ୍ମିଳନୀର ଯୁଗ । ୧୯୦୩ ସାଲ ଡିସେମ୍ବର ୩୦ ତାରିଖ ଦିନ ଅନୁଷ୍ଠିତ ପହିଲି ସମ୍ମିଳନୀର ଉତ୍ତେଜନା ଏପର୍ଯ୍ୟନ୍ତ ହ୍ରାସ ହୋଇ ନ ଥାଏ । ପ୍ରଥମ ସମ୍ମିଳନୀ ଆଗରୁ ୧୯୦୩ ସାଲ ଡିସେମ୍ବର ଦଶ ତାରିଖରେ ପ୍ରକାଶ ପାଇଥିଲା [ଲର୍ଡ଼ କର୍ଜନଙ୍କର ଘୋଷଣାନାମା ରିସଲେ ସାର୍କୁଲାର ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣକୁ ସ୍ୱୀକୃତି ପ୍ରଦାନ କରି । ଏହି ରିସଲେ ସାର୍କୁଲାରର ଆଧାରରେ ୧୯୦୫ ସାଲ ଅକ୍ଟୋବର ମାସରେ କେବଳ ସମ୍ବଲପୁର ନୁହେଁ କଳାହାଣ୍ଡି, ପାଟଣା, ସୋନପୁର, ବାମଣ୍ଡା ଓ ରେଢ଼ାଖୋଲ ଗଡ଼ଜାତ ମଧ୍ୟପ୍ରଦେଶରୁ ଆଉ ଗାଙ୍ଗପୁର, ବଣେଇ (ପରେ ସରେଇକଲା ଓ ଖରସୁଆଁ), ଛୋଟନାଗପୁର ଡିଭିଜନରୁ ଆସି ଓଡ଼ିଶା ସହିତ ସମ୍ମିଳିତ ହେଲା । ଏହା ଥିଲା ଦେଶ ମିଶ୍ରଣ ଆନ୍ଦୋଳନର ପହିଲି ବିଜୟର ଅମଳିନ ସ୍ମାରକୀ, ଯାହା ଫଳରେ ପଶ୍ଚିମାଞ୍ଚଳ ଓଡ଼ିଶାର ମିଶ୍ରଣ ପୂର୍ବାଞ୍ଚଳର ମୂଳ ଭୂଖଣ୍ଡ ସହିତ ହୋଇଥିଲା । ଯେଉଁ ଐତିହାସିକ କର୍ତ୍ତବ୍ୟ ଏକାଦଶ ଶତାବ୍ଦୀରେ ଯଯାତି କେଶରୀ କୋଶଳ ସହିତ ଉତ୍କଳର ସମ୍ମିଶ୍ରଣ କରି ସମ୍ପାଦିତ କରିଥିଲେ, ତାହା ପୁଣି ସମ୍ପାଦିତ ହୋଇଥିଲା, ମଧୁସୂଦନଙ୍କର ଦ୍ୱାରା ୧୯୦୦ ମସିହାରେ ବଡ଼ଲାଟ କର୍ଜନଙ୍କର ସମକ୍ଷରେ ଅତ୍ୟନ୍ତ ପ୍ରଭାବଶାଳୀ ଭାବରେ ଓଡ଼ିଶାର ଦାବୀ ଉପସ୍ଥାପନା କରିବା ଫଳରେ । ମଧ୍ୟ

Digitized by PPRACHIN, SOA

ସୁଦନଙ୍କର ଏହି ଦାବୀ ଫଳରେ ଲର୍ଡ଼ କର୍ଜନ ପ୍ରସ୍ତାବିତ କରିଥିଲେ ରିସଲେ ସର୍କୁଲାର । ମାତ୍ର ମାନ୍ଦ୍ରାଜ ସରକାରଙ୍କର ଦୃଢ଼ ପ୍ରତିବାଦ ଯୋଗୁ ଦକ୍ଷିଣାଞ୍ଚଳ ଓଡ଼ିଶାର ମିଶ୍ରଣ ସମ୍ଭବପର ହୋଇପାରୁ ନ ଥିଲା । ଏହି ସମୟରେ ପରଶୁରାମଙ୍କର ସମ୍ପର୍କ ଗଢ଼ିଉଠିଲା ବ୍ରଜସୁନ୍ଦର ଦାସଙ୍କର ସହ । ତାଙ୍କର ବାସଭବନ ସାଂସ୍କୃତିକ କେନ୍ଦ୍ର । ସେଠାରେ ବେଳେବେଳେ ବସେ ସାନ୍ଧ୍ୟ ଅଧିବେଶନ, ଯହିଁରେ ଥରେ ଥରେ ଯୋଗ ଦିଅନ୍ତି ଜାତିର ପ୍ରାଣ ପ୍ରତିଷ୍ଠାତା ମଧୁସୂଦନ । ତାଙ୍କର ପ୍ରଚଣ୍ଡ ସ୍ୱାଭିମାନ ସମ୍ପନ୍ନ ବ୍ୟକ୍ତିତ୍ୱ ପରଶୁରାମଙ୍କର ମନରେ ଆଙ୍କି ଦେଇଥିଲା ଅଲିଭା ଛାପ । ସେତେବେଳକୁ ୧୯୦୮ ସାଲରେ ପରଶୁରାମ ଯୋଗ ଦେଇଥାନ୍ତି ରେଭେନ୍ସା କଲେଜର ଆଇ. ଏ. ଶ୍ରେଣୀରେ । ନୂତନ ଉଦ୍ଦୀପନାରେ ଭରି ଯାଇଥାଏ ତାଙ୍କର ଅନ୍ତର । ପାଠପଢ଼ାର ଅପୂର୍ବ ସୁଯୋଗ ତାହାଙ୍କୁ ମିଳିଥାଏ ।

୧୯୦୮ ମସିହାର ଡିସେମ୍ବର ମାସ । ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହେଲା ପୁରୀରେ । ନୀଳକଣ୍ଠ ଓ ଗୋଦାବରୀଶଙ୍କର ସହ ପରଶୁରାମ ଆସି ପହଞ୍ଚିଲେ ପୁରୀରେ ଆଉ ଆୟୋଜନରେ ସହଯୋଗ କରୁଥିଲେ । ପୁରୀ ତୀର୍ଥକ୍ଷେତ୍ର । ତେଣୁ ବହୁ-ସଂଖ୍ୟାରେ ପ୍ରତିନିଧି ଆସି ପହଞ୍ଚିଗଲେ । ସେହି ବର୍ଷ ସମ୍ମିଳନୀରେ ଦେଖାଦେଇଥାଏ ଅଦ୍ଭୁତ ଜନ ଜାଗରଣ । ସଭିଙ୍କର ମନରେ ଭରି ଯାଇଥିଲା ଉତ୍ସାହ ଓ ଉଦ୍ଦୀପନା । ସଭିଏଁ ସତୃଷ୍ଣ ନୟନରେ ଚାହିଁ ରହିଥାଆନ୍ତି ମଧୁବାବୁଙ୍କର ଅନର୍ଗଳ ଭାଷଣକୁ ଶୁଣିବା ପାଇଁ । ମଧୁବାବୁ ସମବେତ ଦର୍ଶକ ମଣ୍ଡଳୀଙ୍କର ମଧ୍ୟରେ ଅପୂର୍ବ ଜାଗରଣ ଦେଖି ଉଲ୍ଲସିତ ହୋଇ ଉଠିଥିଲେ । ତାଙ୍କର ବଜ୍ର ନିର୍ଘୋଷ କଣ୍ଠରୁ ଶୁଭିଲା ଅଭିଭାଷଣ । "ସମବେତ ଦର୍ଶକ ମଣ୍ଡଳୀ ମଧ୍ୟରେ ଅପୂର୍ବ ଉନ୍ମାଦନାର ଶିହରଣ ଦେଖି, ମୁଁ ଭାବୁଛି ଆଜିହିଁ ସମ୍ମିଳନୀର ବିଦ୍ୟାରମ୍ଭର ଦିନ । ଆଜି ସେହି ବିଦ୍ୟାରମ୍ଭର ମହତ୍ତ୍ୱପୂର୍ଣ୍ଣ ଶପଥ ଗ୍ରହଣ କରିବା ।

"ହଁ, ବଡ଼ଦେଉଳ ବାଲିରେ ପୋତି ହୋଇଯାଇଥିଲା । ରାଜାଙ୍କର ଘୋଡ଼ା ଟାପୁ ବାଜିବାରୁ ରାଜା ତାକୁ ପୁନରୁଦ୍ଧାର କରିଥିଲେ । ଏହି ସ୍ଥାନରେ ବଡ଼ଦେଉଳକୁ ଚାହିଁ ଜାତିର ପୁନରୁଦ୍ଧାର କର । ଏହିଠାରେ ଆମ୍ଭେମାନେ ଉତ୍କଳ ଜନନୀ ତଥା ଭାରତ ଜନନୀଙ୍କର କୋଳରେ ବସିଥାଇଁ । ସମସ୍ତେ ଏହି କଥା ଭାବ ଆଉ ପ୍ରତିଜ୍ଞା କର—'ମୁଁ ଏହି ସଭାରେ ଦୃଢ଼ ପ୍ରତିଜ୍ଞା କରୁଛି, ମୁଁ ପ୍ରତିଦିନ ପାଞ୍ଚ ମିନିଟ୍ ସମୟ ଦେଶର କଥା ଭାବିବି ଏବଂ ସମ୍ମିଳନୀ ସକାଶେ ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ଅନ୍ତତଃ ପାଞ୍ଚମିନିଟ୍ ସମୟ ଦେବି' । ଏହା ସମସ୍ତେ ମୋ ସହିତ କଣ୍ଠ ମିଳାଇ ପ୍ରତିଜ୍ଞା କର ।"

ସମବେତ ଜନତାଙ୍କ ସହିତ ପରଶୁରାମ ମଧ୍ୟ ଉଚ୍ଚାରଣ କରିଥିଲେ ନିନାଦିତ ସ୍ୱରରେ ସେହି ଦେଶ ସେବାଲାଗି ବିଦ୍ୟାରମ୍ଭର ଆବାହନ ମନ୍ତ୍ର । ଏହାହିଁ ସୃଷ୍ଟି

Digitized by PPRACHIN, SOA

କରିଥିଲା ଅନୁପ୍ରେରଣା ପରଶୁରାମଙ୍କର ମନରେ ପରବର୍ତ୍ତୀ ଜୀବନରେ ଦେଶର ଲାଗି କିଛି ସମସ୍ତ ବ୍ୟୟିତ କରିବା ପାଇଁ ।

ଦିନେ ସର୍ବଭାରତୀୟ ନେତା ସୁରେନ୍ଦ୍ର ନାଥ ବାନାର୍ଜୀଙ୍କର କଟକ ଆସିବାର କାର୍ଯ୍ୟସୂଚୀ ଥିଲା । କଲେଜ ଛାତ୍ରମାନେ ଯାଇ ପହଞ୍ଚି ଥିଲେ ରେଳ ଷ୍ଟେସନରେ ମି: ବାନାର୍ଜୀଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ । ସେମାନଙ୍କର ହାତରେ ଥିଲା ଫୁଲମାଳ । ଷ୍ଟେସନର କେନ୍ଦ୍ର ସ୍ଥଳରେ ଛିଡ଼ା ହୋଇଥିଲେ ଅପ୍ରତିଦ୍ୱନ୍ଦୀ ନେତା ମଧୁସୂଦନ । ତାଙ୍କର ମୁହଁରେ ଦୃଢ଼ ସଂକଳ୍ପ ବୋଧ ଆଉ ପ୍ରଚଣ୍ଡ ଆତ୍ମବିଶ୍ୱାସର ଭାବ ଫୁଟି ଉଠିଥିଲା ।

ନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଲା । ଷ୍ଟେସନ ଭିତରକୁ ଟ୍ରେନ ଆସି କ୍ରମେ ପ୍ରବେଶ କରୁଥାଏ । ଏତିକି ବେଳେ ଛାତ୍ରମାନେ ଅତ୍ୟନ୍ତ ବିଶୃଙ୍ଖଳିତ ଭାବେ ଟ୍ରେନ ପାଖକୁ ଦୌଡ଼ିବାକୁ ଲାଗିଲେ । ମାତ୍ର ମଧୁବାବୁ, ଛାତ୍ରମାନଙ୍କୁ ଏହିଭଳି ଅବ୍ୟବସ୍ଥିତ ଭାବରେ ଦଉଡ଼ି ଯିବାକୁ ବାରଣ କରି ଗୋଟିଏ ସ୍ଥାନରେ ଶୃଙ୍ଖଳିତ ଭାବରେ ଠିଆ ହେବାପାଇଁ ନିର୍ଦ୍ଦେଶ ଦେଲେ ।

ଟ୍ରେନଟି ଷ୍ଟେସନରେ ଆସି ପହଞ୍ଚିଲା । ମଧୁବାବୁ ଷ୍ଟେସନର କେନ୍ଦ୍ର ସ୍ଥଳରେ ଠିଆ ହୋଇ ତାଙ୍କର ବଜ୍ର ନିର୍ଘୋଷ କଣ୍ଠରେ ସମ୍ବୋଧନ କଲେ, 'ମି: ବାନାର୍ଜୀ ! ମି: ବାନାର୍ଜୀ ।' ସେହି କଣ୍ଠସ୍ୱର ଏଭଳି ତୀବ୍ର ଆଉ ଶାଣିତ ଥିଲା, ଯେ ତାହା ସମଗ୍ର ଷ୍ଟେସନକୁ ପ୍ରକମ୍ପିତ କରି ପ୍ରତିଧ୍ୱନିତ ହେଲା । ଟ୍ରେନ ମଧ୍ୟରୁ ସାଙ୍ଗେ ସାଙ୍ଗେ ସୁରେନ୍ଦ୍ର ନାଥ ବାନାର୍ଜୀ ଉତ୍ତର ଦେଲେ 'ମି: ଦାସ ! ମୁଁ ଏଠାରେ ଅଛି ।'

ସାଙ୍ଗେ ସାଙ୍ଗେ ମଧୁବାବୁ ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦେଲେ ଟ୍ରେନର ସେହି ଡବା ପାଖକୁ ଯାଇ ସ୍ୱାଗତ ଜଣାଇବା ପାଇଁ । ଛାତ୍ରମାନେ ମି: ବାନାର୍ଜୀଙ୍କର କଣ୍ଠରେ ଫୁଲମାଳ ଲମ୍ବାଇ ଅଭ୍ୟର୍ଥନା କରି ଆଣିଲେ ।

ଫୁଲମାଳ ପିନ୍ଧି ମି: ବାନାର୍ଜୀ ଷ୍ଟେସନର କେନ୍ଦ୍ର ସ୍ଥଳରେ ପହଞ୍ଚିବା ବେଳକୁ ମଧୁବାବୁ ଟିକିଏ ଆଗେଇ ଯାଇ, ଅତିଥିଙ୍କୁ କୋଳାଗ୍ରତ କରି ପାଖେଇ ଆଣିଲେ ଆଉ ଅତିଥିଙ୍କର ସ୍ୱାଗତ ଜଣାଇ ସମବେତ ଜନତାଙ୍କର ସମକ୍ଷରେ ଗୋଟିଏ କ୍ଷୁଦ୍ର ଭାଷଣ ଦେଲେ ।

ଏହି ଘଟଣାଟି ଛାତ୍ରମାନଙ୍କର ତଥା ପରଶୁରାମଙ୍କର ଉପରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ମଧୁବାବୁ ଥିଲେ ସ୍ୱାଭିମାନର ପ୍ରତୀକ । ସେ ନିଜର ଓ ଜାତିର ଆତ୍ମ ସମ୍ମାନ ରକ୍ଷା ଲାଗି ସଦା ଚେଷ୍ଟିତ ଥିଲେ । ସେ କହୁଥିଲେ 'ଆତ୍ମେ ସଖି ! ଆପଣା ମହତ ଆପେ ରଖି ।' ମଧୁବାବୁଙ୍କର ପ୍ରଭାବରେ ପରଶୁରାମ ନିଜର ଆତ୍ମ ମର୍ଯ୍ୟାଦା ରକ୍ଷା ଲାଗି ସଦା ତତ୍ପର ଥିଲେ ।

Digitized by PPRACHIN, SOA

**ହଇଜା :**

ବର୍ଷାଦିନ । କଟକ ନଦୀ ଆରପାଖ କଟକ ନିକଟସ୍ଥ ଗାଁ ଗଣ୍ଡାରେ ହଠାତ୍ ହଇଜା ମହାମାରୀ ରୂପ ଧାରଣ କଲା । ଏକ ସମୟରେ ଏତେ ଲୋକ ମରୁଥିଲେ ଯେ ସେମାନଙ୍କର ଶବ ସତ୍କାର ହୋଇପାରୁ ନ ଥିଲା । ଏହି ଅବସ୍ଥାର ନିରାକରଣ ପାଇଁ ପରଶୁରାମ ଶବ ସତ୍କାର ସମିତିଟିଏ ଗଠନ କରିଥିଲେ । ଫଳରେ ନଦୀ ଆରପାଖ ଗାଁର ଅସହାୟ ଲୋକମାନେ ପରଶୁରାମଙ୍କ ସହ ସମ୍ପର୍କ ସ୍ଥାପନ କରୁଥିଲେ ଆଉ ପରଶୁରାମ ସାଥି ମେଳରେ ଯାଇ ଶବ ସତ୍କାର କରି ଫେରୁଥିଲେ ।

**ଶବସତ୍କାର :**

ଥରେ ରାତିରେ ଛଅଘଣ୍ଟା ଶବ ସତ୍କାର କରି ଫେରିଲା ବେଳକୁ ହୋଇଥିଲା ରାତି ଦୁଇଟା । ଟିକିଏ ଶୋଇ ନିଦ ଲାଗିଛି କି ନାହିଁ, ପୁଣି ଦୁଆରେ ଖଟ୍ ଖଟ୍ ଶବ୍ଦ ଶୁଭିଲା । ସଙ୍ଗ ସାଥୀମାନେ ଆଉ ଯିବାକୁ ରାଜି ହେଲେନାହିଁ । ପରଶୁରାମ ଏକାକୀ ସେଦିନ ରାତିରେ ଗଲେ ପୁନରାୟ କାଠଯୋଡ଼ି ନଦୀ ପାରି ହୋଇ । ଗୋଟିଏ ଗର୍ଭିଣୀ ସ୍ତ୍ରୀ ପ୍ରସବ କରି ନ ପାରି ମୃତ୍ୟୁମୁଖରେ ପଡ଼ିଥାଏ । ଦୁଇ ଦିନ ବିତିଗଲାଣି । ଶବଟି ଫୁଲି ବିକଟାକାର ରୂପ ଧାରଣ କରିଥାଏ । ଆଉ ମୁଣ୍ଡର ବାଳଗୁଡ଼ିକ ବିଛେଇ ହୋଇ ପଡ଼ି ତାର ରୂପକୁ କରିଥାଏ ଆହୁରି ଭୟଙ୍କର ଆଉ ଭୀତିପ୍ରଦ । ଶବ ସତ୍କାର ଆରମ୍ଭ ହେଲା । ସାଙ୍ଗରେ ଥିବା ଲୋକ ସବୁ ଚାଲିଗଲେ । ମାତ୍ର ଏତିକିବେଳେ ହଠାତ୍ ପବନ ବହିଲା ସୁଉ ସୁଉ ହୋଇ, ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଲଣ୍ଠନଟି ଲିଭିଗଲା । ମହା ବିକଟାଳ ରଜନୀ । ଘନ ଅନ୍ଧକାର । ପରଶୁରାମ ଏକାକୀ । ସମ୍ମୁଖରେ ଅର୍ଦ୍ଧଦଗ୍ଧ ଶବଟି । ହଠାତ୍ ଶବର ଖପୁରିଟି ଫାଟି ଛିଟିକି ଆସି ପଡ଼ିଲା ପରଶୁରାମଙ୍କର କୋଡ଼ରେ । ପରଶୁରାମ ଟିକିଏ ଶଙ୍କି ଗଲେ । ପବନର ଭୀତିପ୍ରଦ ଗର୍ଜନରେ ଶ୍ମଶାନ ଭୂମିଟି ସିମିତି ଥରି ଉଠୁଥାଏ । ବହୁ କଷ୍ଟରେ ରାତି ପାହାନ୍ତାକୁ ପରଶୁରାମ ଫେରି ଆସିଲେ ମେସ୍‌କୁ, ଦେହରେ ଜ୍ୱରର ତାତି ଧରି । ପରଦିନରୁ ସେ ଜ୍ୱରରେ ଅଚେତ ହୋଇ ପଡ଼ିରହିଲେ ସାତଦିନ । ତା'ପରେ ଧୀରେ ରୋଗମୁକ୍ତ ହେଲେ । ମାତ୍ର ଏହା କୌଣସି ପ୍ରତିବନ୍ଧକ ସୃଷ୍ଟି କରି ନ ଥିଲା । ସେ ସାରା ଜୀବନ ଧରି ଶବସତ୍କାର କରୁଥିଲେ । ଅରକ୍ଷ ଲୋକଙ୍କ ଶବ ସତ୍କାର କରିବା ଯେମିତି ତାଙ୍କ ଜୀବନର ବ୍ରତ ହୋଇ ଯାଇଥିଲା ।

ପରଶୁରାମଙ୍କର ପରିବାରରେ ଜମିବାଡ଼ିର ପରିମାଣ ଅତ୍ୟନ୍ତ ସୀମିତ ଥିଲା । ଲୁଣି ପାଣି ଘେରା ମାଲୁଦର ମରୁଡ଼ି ଥିଲା ଚିର ସହଚର । ଆଉ ଆଦାୟର ପରିମାଣ ଥିଲା ଅତି ସାମାନ୍ୟ । ତେଣୁ ପରିବାରରେ ଦାରିଦ୍ର୍ୟ ଥିଲା ତୀବ୍ର । ସେ

Digitized by PPRACHIN, SOA

ସମସ୍ତର ଦାରିଦ୍ର୍ୟର କଶାଘାତରେ ସଢ଼ୁଥିବା ପରିବାରର କରୁଣ ଦୃଶ୍ୟ ପ୍ରକାଶ ପାଇଛି ଗୋଦାବରୀଶଙ୍କର ଅଠର ଚରିତରେ ଏହିପରି ଭାବରେ—

'ମୋର ସତୁରି ବର୍ଷ ବୟସର ବୁଢ଼ୀମା । ମଫସଲର ସରଳ କଢ଼ାଳୀ ହିତରେ ସରଳ କଢ଼ାଇବା ଫଳରେ ତାଙ୍କର ଆଖି ଦୁଇଟି ଫୁଟି ଯାଇଥିଲା । ତାଙ୍କର ସରଳ କଢ଼ାହେବା ଦୃଶ୍ୟଟି ମୁଁ ପିଲାଦିନେ ଆଖିରେ ଦେଖିଥିଲି । କିନ୍ତୁ ତା'ଠାରୁ ଆହୁରି କରୁଣ ଦୃଶ୍ୟଟିଏ ମନେ ପଡ଼ିଲେ ଏବେ ପ୍ରାୟ ଛପନ ବର୍ଷ ପରେ ମୋର ପଥର ଦେହ ଶୀତେଇ ଯାଏ । ସେ ଦୃଶ୍ୟ ହେଉଛି ମୋର ପିତା ଯେଉଁଦିନ କଦଳୀ ଆଣନ୍ତି, ଯୋଡ଼ିକରୁ କମ୍ ଆଣନ୍ତି ନାହିଁ । ଗୋଟିଏ ମୋପାଇଁ ଆଉ ଗୋଟିଏ ମୋର ବୁଢ଼ୀ ମା'ଙ୍କ ପାଇଁ । ବୁଢ଼ୀମା କଦଳୀ ଦୁଇଟି ମୋ ପାଟିରେ ଦେଇ ନିଜେ ଖାଆନ୍ତି ଚୋପାଯାକ । ସେ କଦଳୀ ଚୋପା ଗୋଟି ପାଟି ପାକୁଳ କଲାପରି ପାକୁଆ ପାଟିରେ ଚୋବାଇ ଲାଗନ୍ତି ।'

**ଆଇ.ଏ.ରେ ବୃତ୍ତି**—ପରଶୁରାମ ଆଇ ଏ. ପାସକଲେ କୃତିତ୍ୱର ସହ ୧୯୧୦ ସାଲରେ । ତା'ପରେ ପାଇଲେ ବୃତ୍ତି, ଯାହା ତାଙ୍କର ବି. ଏ. କ୍ଲାସରେ ଯୋଗଦେବାର ପଥ ସୁଗମ କରିଦେଲା । ବି. ଏ. ଶ୍ରେଣୀରେ ସେ ଦର୍ଶନ ଶାସ୍ତ୍ରରେ ଅନର୍ସ ନେଇଥିଲେ ।

**ବଜାରବନ୍ତ ଅଧ୍ୟାପକ**—ତେଣୁ ଦର୍ଶନ ଅଧ୍ୟାପକଙ୍କ ସହ ତାଙ୍କର ଅତୁଟ ସମ୍ପର୍କ ଥିଲା । ଅଧ୍ୟାପକ ମହାଶୟ ପ୍ରତିଦିନ ସକାଳେ ବଜାରକୁ ଯାଇ ଘରର ସଉଦା ନିଜେ କରି ଆଣୁଥିଲେ । ତାଙ୍କ ଘରେ ଥିଲେ ଚାକର ଆଉ ପୂଝାରୀ । ତେଣୁ ଏ ସମ୍ପର୍କରେ ପରଶୁରାମ ତାଙ୍କର ଅଧ୍ୟାପକଙ୍କୁ ପ୍ରଶ୍ନ କରିଥିଲେ । ଏହାର ଉତ୍ତରରେ ଅଧ୍ୟାପକ ମହାଶୟ କହିଲେ, ହେ ପରଶୁରାମ ! ପ୍ରତିଦିନ ସକାଳେ ବଜାରରେ ସଉଦା କରିବା ମୋର ରୁଚି ବୋଲୁଛ । ମୁଁ ଆଗେ ଚାକରକୁ ପଠାଉଥିଲି ପଇସା ଦେଇ ବଜାରରୁ ସଉଦା କରିବାକୁ । ଚାକର ସଉଦା କରି ଫେରିବା ପରେ ମୋ ସ୍ତ୍ରୀ ଚାକରକୁ ହିସାବ ମାଗନ୍ତି । ସେ ହିସାବ ଦେଲାବେଳେ ଚାକରକୁ କେବଳ ଯେ ଅଯଥା ସନ୍ଦେହ କରନ୍ତି ତା ନୁହେଁ ତାକୁ ମଧ୍ୟ ଗାଳିଗୁଲଜ କରିବା ଆରମ୍ଭ କରି ଦିଅନ୍ତି । ଫଳରେ ମୋର ସ୍ତ୍ରୀଙ୍କର ସ୍ୱଭାବ ଚିଡ଼ିଚିଡ଼ା ହୋଇଯାଏ ଆଉ ପରିବାରର ସୁସ୍ଥ ବାତାବରଣଟି ନଷ୍ଟ ହୋଇଯାଏ । ଏହି ପରିସ୍ଥିତିରୁ ମୋ ସ୍ତ୍ରୀ ଓ ପରିବାରକୁ ରକ୍ଷା କରିବା ପାଇଁ ମୋର ସମସ୍ତ ଅନିଚ୍ଛା ସତ୍ତ୍ୱେ ମୋତେ ଏତେ ସକାଳୁ ଉଠି ନିଜେ ଯାଇ ବଜାର ସଉଦା କରିବାକୁ ପଡ଼ୁଥାଏ ଅଗତ୍ୟା । ଏଥିରୁ ସେ ସମୟର ଅଧ୍ୟାପକମାନଙ୍କର ମୂଲ୍ୟବୋଧ ଓ ଚରିତ୍ରବଳ କିପରି ଉଚ୍ଚ ଥିଲା ତାର ପ୍ରମାଣ ମିଳିଥାଏ । ଏହିଭଳି ଅଧ୍ୟାପକମାନଙ୍କର ସାନ୍ନିଧ୍ୟରେ ଆସି ପରଶୁରାମଙ୍କର ଦୃଷ୍ଟି ପ୍ରସାରିତ ଓ ମହିମାମୟ ହୋଇ ଯାଇଥିଲା ।

Digitized by PPRACHIN, SOA

**କଲେଜ ସହପାଠୀ**—ପରଶୁରାମଙ୍କର କଲେଜ ଜୀବନରେ ସହପାଠୀ ଥିଲେ ପ୍ରସିଦ୍ଧ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା ଓ ବିଶିଷ୍ଟ ଶିକ୍ଷାବିତ୍ ଶ୍ୟାମାଚରଣ ତ୍ରିପାଠୀ, ପ୍ରଥମ ଓଡ଼ିଆ ଡି. ପି. ଆଇ. । ସେମାନଙ୍କ ସହିତ ପରଶୁରାମଙ୍କର ଆନ୍ତରିକ ସଦ୍‌ଭାବ ବହୁକାଳ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା । ଏପରିକି ପରବର୍ତ୍ତୀ ଜୀବନରେ ଗସ୍ତବେଳେ ପର୍ଶୁରାମଙ୍କ ଘରେ ଅବସ୍ଥାନ କରୁଥିଲେ ପୁରାତନ ବନ୍ଧୁତ୍ୱକୁ ସୁଦୃଢ଼ କରିବା ପାଇଁ ଶ୍ୟାମାଚରଣ ତ୍ରିପାଠୀ ।

**ଦର୍ଶନ ଶାସ୍ତ୍ରର ଛାତ୍ର** –ପରଶୁରାମଙ୍କର ପ୍ରିୟ ବିଷୟ ହେଲା ଦର୍ଶନ ଶାସ୍ତ୍ର । ଏଥିରେ ଥିଲା ତାଙ୍କର ଅନର୍ସ । ଏହାଛଡ଼ା ଇଂରାଜୀ ସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ଥିଲା ଅପରିସୀମ । ତେଣୁ ସେ ଇଂରାଜୀ ସାହିତ୍ୟ ଚର୍ଚ୍ଚା ସହିତ ଶବ୍ଦ-କୋଷର ପ୍ରତ୍ୟେକ ଶବ୍ଦକୁ ଆୟତ୍ତ କରିଥିଲେ ଗଭୀର ଅଧ୍ୟବସାୟ ସହ । ସଂସ୍କୃତରେ ମଧ୍ୟ ଥିଲା ବ୍ୟୁତ୍ପତ୍ତି, ଯାହା ତାହାଙ୍କୁ ଭାରତୀୟ ଦର୍ଶନଶାସ୍ତ୍ରର ମୂଳ ଗ୍ରନ୍ଥ ସବୁ ଅଧ୍ୟୟନ ଲାଗି ସହାୟକ ହୋଇଥିଲା ।

**ଦୁର୍ବାର ଆହ୍ୱାନ**—ପରଶୁରାମ ବି. ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ । ଏ ସମୟରେ ଜଣେ ସନ୍ନ୍ୟାସୀ ଆସି ଛାତ୍ରମାନଙ୍କର ହାତ ଦେଖିଲେ ଆଉ ପର୍ଶୁରାମଙ୍କୁ ସନ୍ନ୍ୟାସୀ ଜଣକ କହିଲେ ଯେ "ସେ ପରୀକ୍ଷାରେ ଅନର୍ସରେ କୃତକାର୍ଯ୍ୟ ହେବେ ନାହିଁ ।" ଏହା ଥିଲା ପରଶୁରାମଙ୍କ ପ୍ରତି ଏକ ଆହ୍ୱାନ । ସେହି ଦିନଠାରୁ ତାଙ୍କର ଅଧ୍ୟବସାୟର ଜୟଯାତ୍ରା ଆରମ୍ଭ ହୋଇଗଲା । ସାରା ରାତି କଟିଗଲା ଉଜାଗରରେ ବିତାଇ, ପାଠ ପଢ଼ାର ନିରବଚ୍ଛିନ୍ନ ସାଧନା ମଧ୍ୟରେ । ସେ ସମ୍ମୁଖୀନ ହୋଇଥିଲେ ଅସମ୍ଭବକୁ ସମ୍ଭବ କରିବାର ଏକ ଦୁର୍ବାର ଆହ୍ୱାନର । ତାହାହିଁ ସମ୍ଭବ ହୋଇଥିଲା । ଆଉ ପରଶୁରାମ ଉତ୍ତୀର୍ଣ୍ଣ ହୋଇଥିଲେ କେବଳ ଦର୍ଶନ ଶାସ୍ତ୍ରରେ ଅନର୍ସ ରଖି ନୁହେଁ, ସମସ୍ତ ବିଷୟରେ ତାଙ୍କର ନମ୍ବର ଥିଲା ବିଶେଷ ଶ୍ରେଣୀର । ଛାତ୍ର ଜୀବନର ଏହି ଅନ୍ତିମ ପର୍ଯ୍ୟାୟରେ ସେ ନିରେଖି ଦେଖୁଥିଲେ ତାଙ୍କର ଜୀବନର ଅତୀତକୁ ଯେଉଁଥିରେ ହଜି ଯାଇଥିବା ନିରୁଦ୍ଦିଷ୍ଟ ମଣିଷଟିଏପରି ତାଙ୍କର ପିଲାଦିନର ଏଗାରଟି ବର୍ଷ ଦିନର ଅଜାଣତରେ ହଜି ଯାଇଥିଲା ।

**ଶଲକାର ପ୍ରଥମ ଗ୍ରାଜୁଏଟ୍**—ପ୍ରାଥମିକ ସ୍କୁଲରେ ଯୋଗ ଦେବା ବେଳକୁ ତାଙ୍କର ବୟସ ଅଧିକ ଥିଲା । କୈଶୋରର ଶେଷ ପାଦରେ ଆରମ୍ଭ ହୋଇଥିଲା ପଠନ ଶିକ୍ଷାର ପ୍ରାରମ୍ଭ । ତା'ପରେ ଅସିଲା ଅଛୁଣ୍ଟା ପାଠପଢ଼ାର ବେଳ । ନିମ୍ନ ମାଧ୍ୟମିକ ଶ୍ରେଣୀ ଶିକ୍ଷା ଶେଷକରି ସେ ହାଇସ୍କୁଲରେ ଯୋଗଦେଲେ ୧୯୦୪ରେ ଭରା ଯୌବନର ଉଚ୍ଛଳବେଳରେ ପଚିଶି ବର୍ଷ ବୟସରେ । ଚାରିବର୍ଷ ହାଇସ୍କୁଲ, ଆଉ ଚାରିବର୍ଷ କଲେଜରେ ଅଧ୍ୟୟନ ପରେ ସେ ଚଉତିରିଶି ବର୍ଷ ବୟସରେ ୧୯୧୨ରେ ବି. ଏ. ଅନର୍ସ (ଡିଷ୍ଟିଙ୍କସନ) ସହ ପାଶ୍ କରିଥିଲେ । ସେ ଥିଲେ ସମସ୍ତ

Digitized by PPRACHIN, SOA

ଚଳିବା ଆଡ଼ଂଗୁଣ ଅଞ୍ଚଳର ପ୍ରଥମ ଗ୍ରାଜୁଏଟ୍ । ଏହାଙ୍କର ବହୁ ବର୍ଷ ପରେ ବୋଧହୁଏ ମାୟାଧର ମାନସିଂହ ଥିଲେ ଏ ଅଞ୍ଚଳର ଦ୍ୱିତୀୟ ଗ୍ରାଜୁଏଟ୍ ।

ଡାକ୍ତର ରାଧାଚରଣ ପଣ୍ଡାଙ୍କର ଲିଖିତ ପରଶୁରାମଙ୍କର ଜୀବନ ଚରିତ (ଲକ୍ଷେ ଗୁରୁଙ୍କର ଗୁରୁ)ରେ ହାଇସ୍କୁଲ ଓ କଲେଜରେ ବିଦ୍ୟାଧ୍ୟୟନ ସମ୍ପର୍କରେ ଏହିଭଳି ବିବରଣୀ ସଙ୍କଳିତ ହୋଇଛି—

"୧୯୦୪ ଖ୍ରୀଷ୍ଟାବ୍ଦରେ ୧୫ ବର୍ଷ ବୟସରେ ପରଶୁରାମ ପୁରୀ ଯାଇ ସେଠାରେ ୧୯୦୮ ସୁଦ୍ଧା ମାଟ୍ରିକ ପଢ଼ା ଶେଷ କରିଥିଲେ । ପରେ ୧୯୦୮-୧୨ ମଧ୍ୟରେ କଟକରେ ଆଇ. ଏ. ଓ ବି. ଏ. ପାସ କଲେ । ପୁରୀ ଓ କଟକରେ ପଢ଼ିବା ସମୟରେ ଛାତ୍ରବୃତ୍ତି ପାଉଥିଲେ । ଏଣୁ କୌଣସି ଅସୁବିଧା ହେଉ ନ ଥିଲା ।

୧୯୧୩-୧୪ରେ ସେ ବିହାର ରାଜଧାନୀ 'ପାଟଣା' ଯାଇ ସେଠାରେ ବି. ଟି. ଟ୍ରେନିଂ ପାସ କଲେ ।

ପିଲାଟିଦିନୁ ପିତା ମାତାଙ୍କୁ ହରାଇସୁଦ୍ଧା ଜଣେ ମେଧାବୀ ଛାତ୍ର ନିଜର ବୁଦ୍ଧି ବଳରେ କିପରି ପାଠ ପଢ଼ି ସରକାରୀ ବୃତ୍ତି ପାଇ ବି. ଏ., ବି. ଟି. ପାଶ କରି-ପାରେ, ତହିଁର ନିଦର୍ଶନ ପରଶୁରାମଙ୍କର ଜୀବନରୁ ସ୍ପଷ୍ଟ ଜାଣି ହେବ । ଏ ପଢ଼ା ସମୟରେ ଦାନୀ ଦଧିବାମନ ପଟ୍ଟନାୟକ, ପରଶୁରାମଙ୍କ ପ୍ରତି ଯେଉଁ ସ୍ନେହ ଓ ସଦ୍ଭାବ ଦେଖାଇଥିଲେ ତାହା ଅତୁଳନୀୟ ।

ପୁରୀରେ ସ୍କୁଲରେ ଓ ପରେ କଟକ କଲେଜ ପଢ଼ା ସମୟରେ ପରଶୁରାମ ବାଣପୁରର ଗୋଦାବରୀଶ ମିଶ୍ରଙ୍କୁ ନିଜର ପଢ଼ା ସାଥୀ ଭାବେ ପାଇଥିଲେ । ଗୋଦାବରୀଶ ମଧ୍ୟ ଅତି ଗରୀବ କିନ୍ତୁ ମେଧାବୀ ଛାତ୍ର ଥିଲେ ଏବଂ ସରକାରୀ ବୃତ୍ତି ପାଉଥିଲେ । ଏ ଦୁଇଜଣ ବେଶ ସୁନ୍ଦର ଭାବେ ପଢ଼ାପଢ଼ି କରି ସରକାରୀ ବୃତ୍ତି ପାଉଥିଲେ ।"

**ନୀତିବାନ୍—**

୧୯୧୨ ମସିହା ବେଳକୁ ସୃଷ୍ଟି ହୋଇଥିଲା ବିହାର ଓଡ଼ିଶା ପ୍ରଦେଶ । ଅର୍ଥିକ ଦୁରବସ୍ଥା ମଧ୍ୟରେ ତାଙ୍କ ପକ୍ଷରେ ପାଟଣା ଯାଇ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରିବା ସମ୍ଭବପର ହୋଇ ନ ଥିଲା । ତାହାଙ୍କୁ କନ୍ୟାଦାନ କରି ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ ଲାଗି ଏପରିକି ବିଲାତ ପଠାଇବା ଲାଗି କିଛି ପ୍ରସ୍ତାବ ଆସି ପହଞ୍ଚିଥିଲେ ମଧ୍ୟ ନିଜ ହାତରେ ନିଜ ଜୀବନକୁ ଗଢ଼ୁଥିବା ପରଶୁରାମଙ୍କର କାହାର ଅନୁଗ୍ରହ ପ୍ରାର୍ଥୀ ହେବା ଯେପରି ଥିଲା ନୈତିକତାର ବିରୁଦ୍ଧ ।

ଏହିଠାରେ ହିଁ ତାଙ୍କର ବିଧିବଦ୍ଧ ଛାତ୍ର ଜୀବନର ସମାପ୍ତି ଘଟିଲା । ମାତ୍ର ତାଙ୍କର ସାରା ଜୀବନଟି ଥିଲା ଛାତ୍ର ଅବସ୍ଥା ପରି ଶୃଙ୍ଖଳିତ ଅଧ୍ୟୟନର ସମୟ ।

Digitized by PPRACHIN, SOA

ପରଶୁରାମଙ୍କର ପ୍ରବେଶ ଥିଲା ରାଜନୀତିରେ । ସ୍କୁଲ ବେଳରେ ଶଶୀଦା ଆଉ ଗୋପବନ୍ଧୁଙ୍କର ପ୍ରଭାବ ଓ କଲେଜ ଜୀବନରେ ମଧୁବାବୁଙ୍କର ପ୍ରତି ତାଙ୍କର ଆକର୍ଷଣ, ମନରେ ଜାଗ୍ରତ କରିଥିଲା ଦୁର୍ବାର ଆଗ୍ରହ ଓଡ଼ିଶାର ଉନ୍ନତି ଲାଗି ନିଜକୁ ନିୟୋଜିତ କରିବା ପାଇଁ ।

ହେଲେ ତାଙ୍କୁ ଘେରିଆଡ଼ି ଆବୋରି ବସିଥିଲା ଉଗ୍ର ଦାରିଦ୍ର୍ୟ । ଛାତ୍ର ବୃତ୍ତିକୁ ଆଶ୍ରାକରି ତାଙ୍କର ବିତିଥିଲା ଅଧ୍ୟୟନର ଜୀବନ । ମାତ୍ର ତା ଭିତରେ ତାଙ୍କୁ ଭୋଗିବାକୁ ପଡ଼ିଥିଲା ଅଭାବର ନିପୀଡ଼ନ । ସେ ଏଥିରୁ ମୁକ୍ତ ପାଇବା ପାଇଁ ଚେଷ୍ଟିତ ଥିଲେ, । ତେଣୁ ଉପାର୍ଜନହୀନ ରାଜନୈତିକ ଜୀବନରେ ପୁଣି ପରର ଅନୁଗ୍ରହ ପ୍ରାର୍ଥୀ ହୋଇ ଅନିଶ୍ଚିତତା ମଧ୍ୟକୁ ଝାମ୍ପ ଦେବାପାଇଁ ସେ ରାଜି ନ ଥିଲେ । ଯଦିଓ ଦେଶଲାଗି କାର୍ଯ୍ୟ ସମ୍ପାଦନ କରିବା ପାଇଁ ତାଙ୍କ ମନରେ ଜାଗରିତ ହୋଇଥିଲା ଏକ ଅଲଙ୍ଘ୍ୟ ବାସନା ।

**ସ୍ପଷ୍ଟଭାଷୀ**—ତେଣୁ ଛାତ୍ର ଜୀବନର ସମାପ୍ତି ପରେ ଯେତେବେଳେ ଗୋପବନ୍ଧୁ ରାଜନୀତିରେ ଯୋଗ ଦେବାପାଇଁ ଆହ୍ୱାନ ଜଣାଇ ଥିଲେ, ସେତେବେଳେ ତାଙ୍କର ସିଧାସଳଖ ଉତ୍ତର ଏପରି ଥିଲା—"ସାରା ଛାତ୍ରଜୀବନଟି ଘୋର ଦାରିଦ୍ର୍ୟ ମଧ୍ୟରେ ବିତାଇ ଦେଇ ମୋର ମନରେ ଭୋଗ ଲାଗି ରହିଛି ଟିକିଏ ତୃଷ୍ଣା । ତେଣୁ ରାଜନୀତିର ତ୍ୟାଗପୂତ ଜୀବନକୁ ଗ୍ରହଣ କରି ମୁଁ ନିଜପ୍ରତି ହିଁ ଛଳନା କରିବି । ତେଣୁ ମୋତେ କ୍ଷମା କରନ୍ତୁ । ମାତ୍ର ଚାକିରି ଜୀବନ ମଧ୍ୟରେ ଦେଶସେବା ପାଇଁ ଯେଉଁ ସୁଯୋଗ ଆସିବ, ତାହାକୁ ନିଶ୍ଚୟ ଆଗ୍ରହର ସହ ଗ୍ରହଣ କରିବି ।"

ଏହାହିଁ ପ୍ରତିଫଳିତ ହୋଇଥିଲା ତାଙ୍କ ସମସ୍ତ ଚାକିରି ଜୀବନର ପରିସର ମଧ୍ୟରେ. ଯହିଁରେ ଜୀବନକୁ ଉପଭୋଗ କରିବାର ସ୍ୱାଦ ଥିଲେ ମଧ୍ୟ, ନ ଥିଲା ସେଥିରେ ଉଚ୍ଛୃଙ୍ଖଳତା ଆଉ ସ୍ୱାର୍ଥପରତା । ସେଥିରେ ଥିଲା ନିଜର ଦରମା-ପ୍ରାପ୍ତ ସ୍ୱଚ୍ଛନ୍ଦ ଜୀବନକୁ ଦେଶର ସେବାରେ ବିନିଯୋଗ କରିବାର ଏକ ପ୍ରତିଶ୍ରୁତି-ବଦ୍ଧ ସଙ୍କଳ୍ପ । ସେହି କାର୍ଯ୍ୟର ପରିଧି ଥିଲା ବ୍ୟାପକ । ଦେଶ ମିଶ୍ରଣ ଆନ୍ଦୋଳନଠାରୁ ଆରମ୍ଭ କରି ସମାଜ ସଂସ୍କାର ଏବଂ ଅବହେଳିତ ଆଉ ଦୁର୍ଗତଙ୍କର ସେବା କରିବା ଥିଲା ତାଙ୍କର କର୍ତ୍ତବ୍ୟ କର୍ମର ପରିସର ।

**ସ୍ୱାଧୀନ ମନ—**

ପରଶୁରାମ ଅତ୍ୟନ୍ତ ସ୍ୱାଧୀନଚେତା ଥିଲେ । ତାଙ୍କ ହୃଦୟ ମଧ୍ୟରେ ଫଲ୍‌ଗୁ ସ୍ରୋତପରି ପ୍ରବାହିତ ହେଉଥିଲା ଦେଶ ସେବାଲାଗି ଏକ ଅନ୍ତଃ ସଲିଳାର ଧାରା । ତେଣୁ ସେ ସରକାରୀ ଚାକିରିର ଗୋଲାମିକୁ ଗ୍ରହଣ କରିବାକୁ ରାଜି ନ ଥିଲେ, ଯଦିଓ ସେ କାଳର ଡେପୁଟି କଲେକ୍ଟର ସରକାରୀ ଚାକିରି ତାଙ୍କର ହାତ ପାଆନ୍ତାରେ

Digitized by PPRACHIN, SOA

ଥିଲା । ମାତ୍ର ସେ ବରଣ କରିଥିଲେ ଶିକ୍ଷକତାର ଜୀବନ । ଯହିଁରେ ସ୍ୱାଧୀନଭାବେ କାର୍ଯ୍ୟ ସମ୍ପାଦନ ସହିତ ଦେଶ ପ୍ରତି ନିଜର କର୍ତ୍ତବ୍ୟ ପୂରଣ ଲାଗି ଥିଲା ପୂର୍ଣ୍ଣ ସୁଯୋଗ ।

## ଚାକିରି ଜୀବନ

ଡାକ୍ତର ରାଧାଚରଣ ପଣ୍ଡାଙ୍କର ଲିଖିତ ପରଶୁରାମଙ୍କ ଜୀବନ ଚରିତ (ଲକ୍ଷେ ଗୁରୁଙ୍କର ଗୁରୁ) ବହିରେ ପରଶୁରାମଙ୍କର ଚାକିରି ଜୀବନର ପ୍ରାରମ୍ଭ ସମ୍ପର୍କରେ ଏଭଳି ଉଲ୍ଲେଖ ଅଛି ।

"ପ୍ୟାରୀମୋହନ ଏକାଡେମୀ—
ପରଶୁରାମଙ୍କର ଚାକିରି ଜୀବନର ଆରମ୍ଭ ହେଲା ୧୯୧୩ ମସିହାରେ । ବି. ଏ. ପାସ୍ କରିବା ପରେ ସେ କଟକରେ ପ୍ୟାରୀମୋହନ ଏକାଡେମୀରେ ଜଣେ ସହକାରୀ ଶିକ୍ଷକ ରୂପେ ଯୋଗଦେଇଥିଲେ । ଏଠାରେ ଜଣେ ଚମ୍ପାତି ପଟ୍ଟନାୟକ ପ୍ରଧାନଶିକ୍ଷକ ଥିଲେ । ଏବଂ ଆର୍ଯ୍ୟ ହରିହର ସାଥୀ ଶିକ୍ଷକ ଥିଲେ ।"

ହଁ, ଚାକିରି ଜୀବନର ଆରମ୍ଭ ହେଲା । ମା'ର ସ୍ନେହ ଦେଇ ତାଙ୍କୁ ବଢ଼ାଇଥିବା ବଡ଼ମା'ଙ୍କ ପ୍ରତି ଥିଲା ତାଙ୍କର ସୁନ୍ଦର କର୍ତ୍ତବ୍ୟ । ବାର୍ଦ୍ଧକ୍ୟର ରୋଗ ଗ୍ରାସ କରିଥିଲା ବଡ଼ମା'ଙ୍କୁ । ତାଙ୍କୁ ଟିକିଏ ସେବା ଶୁଶ୍ରୂଷା ଦେବାପାଇଁ ପରଶୁ-ରାମଙ୍କର ମନ ଉଦ୍‌ଗ୍ରୀବ ହୋଇଉଠିଲା ।

**ଶ୍ରୀମତୀ ନୀଳମଣି**—ଗ୍ରାମ୍ୟ ଜୀବନଟି କଟିଯାଇଥିଲା ମେସ୍‌ରେ । ଆଉ ଚାକିରି ଜୀବନରେ ତାର ପୁନରାବୃତ୍ତି କାହିଁକି ? ଚାକିରିରେ ଯୋଗଦେବାର କିଛି ଦିନ ପରେ ବିବାହ ହୋଇଯାଇଥିଲା ଗୋଟିଏ ସମ୍ଭ୍ରାନ୍ତ ପରିବାରରେ । ପାତ୍ରୀଟି ଥିଲେ ପୁରୀ କୁଣ୍ଢେଇବେଣ୍ଟ ସାହିର ସ୍ୱରୂପ କିଶୋର ଦାସଙ୍କର ଦ୍ୱିତୀୟା କନ୍ୟା ଶ୍ରୀମତୀ ନୀଳମଣି ଦେବୀ । ରୂପରେ ଆଉ ଗୁଣରେ ଉଭୟେ ଉଭୟଙ୍କର ପରିପୂରକ ଥିଲେ । ଯେପରି ଜଣେ ଅନ୍ୟ ଜଣଙ୍କ ପାଇଁ ବିଧାତା ହାତରେ ଗଢ଼ା ହୋଇଥିଲେ । ପାତ୍ରୀଟି ଥିଲେ ସୌନ୍ଦର୍ଯ୍ୟରେ ଅତୁଳନୀୟା । ପାତ୍ରୀ ନୀଳମଣି ଦେବୀଙ୍କର ପିତା ସ୍ୱରୂପ କିଶୋର ସେ ସମୟର ପୁରୀ କଲ୍ଲାର ରେଭିନ୍ୟୁ ବିଭାଗର ଜଣେ ଅଧିକାରୀ, ଯେ କି ପରବର୍ତ୍ତୀ କାଳରେ ପାରିକୁଦ ଜମିଦାରୀର ଦେଓ୍ୱାନ ଭାବରେ ଅବସ୍ଥାପିତ ଆଇ ଅବସର ଗ୍ରହଣ କରିଥିଲେ । ଆଉ ନୀଳମଣି ଦେବୀ ହେଉଛନ୍ତି, ସେ ସମୟର ଡେପୁଟୀ କଲେକ୍ଟର ସୁଦର୍ଶନ ଦାସଙ୍କର ଭଉଣୀ ।

Digitized by PPRACHIN, SOA

ବିବାହ ଉତ୍ସବର ସମସ୍ତ ଭାର ପଡ଼ିଲା ବଡ଼ମା'ଙ୍କ ଉପରେ । ସେଇଥି ପାଇଁ ସେ ଦୀର୍ଘକାଳ ଧରି ସନ୍ତୁଷ୍ଟ ନୟନରେ ସ୍ମୃତି ବସିଥିଲେ । ପୁତ୍ରର ପରଶୁରାମଙ୍କ ବିବାହ ପରେ ସେ ଗାଁର ସମସ୍ତ ଜଞ୍ଜାଳ ତୁଟାଇ ଦେଇ ଆସିଲେ କଟକ ପରଶୁରାମଙ୍କ ପାଖକୁ । ତାଙ୍କ ଜୀବନର ଅନ୍ତିମ ଦିନଗୁଡ଼ିକ କଟିଥିଲା ପରଶୁରାମଙ୍କର ପରିଚର୍ଯ୍ୟାରେ ।

**ପତ୍ନୀ ଧର୍ମ**—ପରଶୁରାମଙ୍କର ପତ୍ନୀ ଶୀଳମଣି ଦେବୀ ଆସିଥିଲେ ରକ୍ଷଣଶୀଳ ପରିବାରରୁ । ଅନ୍ୟ ପକ୍ଷରେ ପରଶୁରାମ ସମାଜର ସମସ୍ତ କୁସଂସ୍କାର ତଥା ଅନାବଶ୍ୟକ ବିଧିବିଧାନରୁ ମୁକ୍ତ ରହି ଧର୍ମଚର୍ଚ୍ଚା ଓ ଦେଶସେବା ସହିତ ଆଧ୍ୟାତ୍ମିକ ଜୀବନର ସ୍ପର୍ଶ ପାଇବା ପାଇଁ ଆଗ୍ରହୀ ଥିଲେ । ହଁ, ତାଙ୍କର ଜୀବନଟି କଟିଥିଲା ସମାଜ ସଂସ୍କାର ଆଧ୍ୟାତ୍ମିକ ସାଧନାକୁ ନେଇ । ତେଣୁ ରକ୍ଷଣଶୀଳ ପରିବାରରୁ ଆସିଥିବା ଶୀଳମଣି ଦେବୀଙ୍କୁ ବହୁତ କିଛି ସ୍ୱାର୍ଥତ୍ୟାଗ କରିବାକୁ ପଡ଼ିଲା ସ୍ୱାମୀଙ୍କର ରୁଚି ସହିତ ନିଜକୁ ଖାପ ଖୁଆଇ ଚଳିବାପାଇଁ ।

ଶିକ୍ଷକ ଜୀବନରେ ସେ ପାଇଥିଲେ ଅନୁପମ ସାଥୀ ହିସାବରେ ଆଚାର୍ଯ୍ୟ ହରିହରଙ୍କୁ । ତେଣୁ ପ୍ରାରମ୍ଭିକ ଚାକିରି ଜୀବନରେ ସେ ପାଇଥିଲେ ଅନୁପ୍ରେରଣା ଜଣେ ଆଦର୍ଶ ଶିକ୍ଷକ ରୂପେ ନିଜର ଜୀବନର ଧାରାକୁ ଢାଳିଦେବାପାଇଁ । ପରଶୁରାମଙ୍କର କଟକ ରହଣି ଗ୍ରୁହଜୀବନକୁ ମିଶାଇ ପାଞ୍ଚବର୍ଷରୁ ଅଧିକ ହେଲାଣି । ମାତ୍ର ଅନ୍ୟ ଅଞ୍ଚଳରେ କାର୍ଯ୍ୟ କରିବାପାଇଁ ଆସିଥିବା ଆହ୍ୱାନକୁ ତାଙ୍କ ପକ୍ଷେ ଏଡ଼ିବା ସମ୍ଭବ ହୋଇ ନ ଥିଲା । କଟକରେ ତାଙ୍କର ଶିକ୍ଷକତାର ସମୟ ଥିଲା ମାତ୍ର ଛଅମାସ । ତା'ପରେ ସେ ଆସି ଯୋଗଦେଲେ ଖୋର୍ଦ୍ଧା ହାଇସ୍କୁଲରେ ଜଣେ ସହକାରୀ ଶିକ୍ଷକ ରୂପେ ୧୯୧୪ ମସିହାରେ ।

**ଖୋରଧା ସ୍କୁଲ**—ଖୋରଧାର ମାଟିରେ ଓଡ଼ିଶାର ଶେଷ ସ୍ୱାଧୀନତାର ରକ୍ଷା ଲାଗି ପ୍ରାଣମୂର୍ଚ୍ଛା ଲଢ଼େଇ ହୋଇଥିଲା । ଏହା ପରେ ଖୋର୍ଦ୍ଧା ହେଲା "ଖାସ" ଇଂରେଜମାନଙ୍କର ସିଧାସଳଖ ଶାସିତ ଅଞ୍ଚଳ । ତେଣୁ ଏ ହେଲା "ଖାସମାହାଲ" । ପ୍ରଶାସନ ଚଳାଇବା ପାଇଁ ଏଠାରେ ଅବସ୍ଥାପିତ କରାଯାଇଥିଲା ଆଇ. ସି. ଏସ୍. ପଦାଧିକାରୀ ଖୋରା ଅଫିସର ଆଉ ଜଙ୍ଗଲ ବିଭାଗର ଅଧିକାରୀ ରୂପେ ସଂରକ୍ଷିତ ବନସେବାର ଗୋରାସାହେବ ମାନଙ୍କୁ । ସେତେବେଳର ବନବିଭାଗ ଅଧିକାରୀଙ୍କର ନାମ ଥିଲା ଡଡ୍ସୱାର୍ଥ । ଖୋରଧା ଟିକିଏ ରକ୍ଷଣଶୀଳତାରୁ ମୁକ୍ତ ରହିଥିଲା । ଏଠାରେ ହିନ୍ଦୁ ଓ ମୁସଲମାନଙ୍କ ଛଡ଼ା ଥିଲେ ଖ୍ରୀଷ୍ଟିଆନ୍ ଗୋଷ୍ଠୀ । ବରୁଣାଇ ପାହାଡ଼ର ପଛ ଭୂମିରେ ଏଠାରେ ଶୋଭା ପାଉଥିଲା ଗୋଟିଏ ସୁଦୃଶ୍ୟ ଗୀର୍ଜା । କେବଳ ସେତିକି ନୁହେଁ ନିକଟରେ ଥିବା ରେଲ ଷ୍ଟେସନ ଖୋର୍ଦ୍ଧା ରୋଡ଼ରେ ଥିଲେ ବହୁ ଆଙ୍ଗ୍ଲୋ ଇଣ୍ଡିଆନ ସମ୍ପ୍ରଦାୟର ଲୋକ ।

Digitized by PPRACHIN, SOA

ଖୋରଧା ହାଇସ୍କୁଲ ପ୍ରତିଷ୍ଠା ହୋଇଥିଲା ୧୮୯୭ ମସିହାରେ ପୂର୍ଣ୍ଣାଙ୍ଗ ହାଇସ୍କୁଲ ରୂପେ । ଖୋରଧା ସ୍କୁଲଟି ଚାଲୁଥିଲା ଏକ ଚାଳଘରେ । ବର୍ତ୍ତମାନର କୋଠାଘରଟି ପରବର୍ତ୍ତୀ କାଳରେ ନିର୍ମିତ ହୋଇଥିଲା ।

ଏଠାରେ ପରଶୁରାମଙ୍କର ଶିକ୍ଷକ ଜୀବନର ମୂଳଦୁଆ ପଡ଼ିଥିଲା । ନିଜର ଉଚ୍ଚ ନୈତିକ ବୋଧ ଆଉ ସୁସମାହିତ ସଂସ୍କୃତ ସମ୍ପନ୍ନ ବ୍ୟକ୍ତିତ୍ୱର ଧାରା ଅନୁସାରେ ନିଜର ନିଜସ୍ୱ ପଢ଼ାଇବାର ଅନବଦ୍ୟ ଶୈଳୀକୁ ସେ ଏଠାରେ ହାସଲ କରିଥିଲେ ଯହିଁରେ ଆପଣାର ଔଦାର୍ଯ୍ୟପୂର୍ଣ୍ଣ ମହନୀୟ ଦୀପ୍ତ ପ୍ରଭା ଝଲମଲ କରି ଉଠୁଥିଲା । ଯୌବନର ମଧ୍ୟାହ୍ନ ସମୟ । ଶରୀରରେ ଅଫୁରନ୍ତ ଶକ୍ତିର ତରଙ୍ଗ । ଦେଶପାଇଁ କିଛି କରିବାର ଅନୁପ୍ରେରଣା ତାଙ୍କ ମନଭିତରେ ଖେଳି ବୁଲୁଥିଲା । ଏଇଥିପାଇଁ ଛାତ୍ରମାନଙ୍କ ସହ ତାଙ୍କର ସମ୍ପର୍କ ହୋଇଯାଇଥିଲା ଅତି ଘନିଷ୍ଠ ।

ଏହି ସମୟରେ ପରଶୁରାମଙ୍କର ଜୀବନରେ ଗୋଟିଏ ଦୁଃଖଦ ଘଟଣା ଘଟିଲା । ସେ ଆପଣାର ମାତୃପ୍ରତିମ ବଡ଼ମା'ଙ୍କୁ ହରାଇ ଥିଲେ ।

ବଡ଼ମା' କଚ୍ଛାଦନ ପାଇଁ ତୀର୍ଥ ଦର୍ଶନରେ ଯାଇ ପୁରୀରେ ଅବସ୍ଥାନ କରୁଥିଲେ । ତାହାଙ୍କର ପରିଚର୍ଯ୍ୟା କରୁଥିଲେ ପରଶୁରାମଙ୍କର ପତ୍ନୀ ନୀଳମଣି ଦେବୀ । ବଡ଼ମା' ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ସମ୍ବାଦ ପାଇ ପରଶୁରାମ ପୁରୀ ଯାଇ ସେବା ଶୁଶ୍ରୂଷା ପ୍ରଦାନ କରିଥିଲେ ।

ମାତ୍ର ବିଧିର ଲେଖା ଅନ୍ୟ ପ୍ରକାର ଥିଲା । ବଡ଼ମା' ପରପାରିକୁ ଚାଲି-ଗଲେ । ଆଉ ପରଶୁରାମ, ବଡ଼ମା'ଙ୍କର ସମସ୍ତ କର୍ମ ଅତ୍ୟନ୍ତ ନିଷ୍ଠାର ସହ ସମ୍ପାଦନ କରିଥିଲେ ।

ଏହି ସମୟରେ ଏକ ମୁଖ୍ୟ ଘଟଣା ଘଟିଥିଲା । ଗୋପବନ୍ଧୁ ଗୋଟିଏ ବନବିଦ୍ୟାଳୟ ସ୍ଥାପନ ଲାଗି ବହୁଦିନରୁ ଆଶା ପୋଷଣ କରିଥିଲେ । ଫଳେ ସତ୍ୟବାଦୀର ମାଇନର ସ୍କୁଲଟିକୁ ୧୯୧୧ ମସିହାରେ ବନବିଦ୍ୟାଳୟ ରୂପରେ ପରିଣତ କରାଗଲା । ଏହାର ପ୍ରଥମ ପୁରସ୍କାର ବିତରଣୀ ସଭା ଅନୁଷ୍ଠିତ ହୋଇଥିଲା ସେହିବର୍ଷ ଜୁନ୍ ଅଠେଇଶି ତାରିଖରେ । ସେ ଉତ୍ସବରେ ପ୍ରଧାନ ଅତିଥିରୂପେ ଜାତୀୟ ଗୌରବ ମଧୁସୂଦନଙ୍କର ଭାଷଣଟି ଏପରି ଥିଲା ।

"ଗୋପବନ୍ଧୁ ବାବୁ ଓ ତାଙ୍କର ବନ୍ଧୁମାନଙ୍କୁ ମୋର ସବଶେଷ ଅନୁରୋଧ ଯେ, ଆପଣମାନେ ପରଦ୍ୱାରସ୍ଥ ନ ହୋଇ ନିଜର ବାହୁବଳରେ କାର୍ଯ୍ୟ କରି-ଯାଆନ୍ତୁ । ଭଗବାନ ଆପଣଙ୍କର ସହାୟ ହେବେ । ଯେ ଆତ୍ମନିର୍ଭରଶୀଳ ନୁହେଁ ତାକୁ କେହି କେବେ ସାହାଯ୍ୟ କରିନ୍ତି ନାହିଁ ।"

ପଣ୍ଡିତ ନୀଳକଣ୍ଠ ଦାସ, କଲିକତାରୁ ଏମ୍. ଏ. ପାସ୍ କରିବା ପରେ ୧୯୧୧ ମସିହାରେ ଏଠାରେ ପ୍ରଧାନଶିକ୍ଷକ ରୂପେ ଯୋଗଦେଲେ । ୧୯୧୮ ସାଲରେ

Digitized by PPRACHIN, SOA

ଆଗ୍ରହ ହରିହର ପ୍ରାଗ୍‌ମୋହନ ଏକାଡେମୀରୁ ଶିକ୍ଷକତା ପରିତ୍ୟାଗ କରି ଆସି ସତ୍ୟବାଦୀ ବନବିଦ୍ୟାଳୟରେ ଯୋଗ ଦେଲେ । ସେହି ବର୍ଷ ଗୋଦାବରୀଶ କଲିକତାରେ ଏମ୍. ଏ. ପରୀକ୍ଷା ଦେଇସାରି ଆସି ପହଞ୍ଚିଲେ । ୧୯୧୩ ସାଲରେ ଏଠାରେ ଅଧ୍ୟାପନା କାର୍ଯ୍ୟ ଗ୍ରହଣ କରିନେଲେ ।

ପରଶୁରାମ ୧୯୧୪ ମସିହାରେ ଖୋର୍ଦ୍ଧା ସ୍କୁଲରେ ଯୋଗ ଦେବା-ବେଳକୁ ସାକ୍ଷୀଗୋପାଳ ବନବିଦ୍ୟାଳୟଟି ନିଜସ୍ୱ ପ୍ରକୃତିରେ ଝଟକୁ ଥାଏ । ଏହାର ଖ୍ୟାତି ପ୍ରସାରିତ ହୋଇଥିଲା । ଫଳତଃ ବିହାର ଓଡ଼ିଶା ପ୍ରଦେଶର ଗଭର୍ଣ୍ଣରଙ୍କ-ଠାରୁ ଆରମ୍ଭ କରି କଲିକତା ବିଶ୍ୱବିଦ୍ୟାଳୟର କୁଳପତିଙ୍କ ପର୍ଯ୍ୟନ୍ତ ସମସ୍ତେ ବନବିଦ୍ୟାଳୟ ପରିଦର୍ଶନ କରିଥିଲେ । ଆଉ ପରଶୁରାମଙ୍କ ସହପାଠୀ ନୀଳକଣ୍ଠ ଆଉ ଗୋଦାବରୀଶ ସେଠାରେ ଅବସ୍ଥାପିତ ହୋଇଥିବାରୁ ବନବିଦ୍ୟାଳୟ ପରଶୁରାମଙ୍କର ପାଇଁ ପ୍ରିୟ ଜାଗା ଥିଲା । ଡକ୍ଟର ପଣ୍ଡାଙ୍କ ରଚିତ ପରଶୁରାମଙ୍କ ଜୀବନ ଚରିତରେ ଏହି ପ୍ରସଙ୍ଗରେ ଲେଖା ହୋଇଛି—

"ପରଶୁରାମ ପ୍ରତି ଶନିବାରରେ ସତ୍ୟବାଦୀ ଯାଇ ଗୋଦାବରୀଶ ଓ ଗୋପବନ୍ଧୁଙ୍କ ସହ କଥା ହୋଇ ଆସୁଥିଲେ । ଖୋର୍ଦ୍ଧାରେ ଥିବାବେଳେ ପରଶୁରାମ ଛାତ୍ରମାନଙ୍କର ସହିତ ସଦ୍‌ଭାବରେ ଚଳୁଥିଲେ । ସେମାନଙ୍କୁ ପାଠ ପଢ଼ାଇବା ସାଙ୍ଗେ ସାଙ୍ଗେ ଶାଠ ଶିଖାଇବା ପାଇଁ ନାନା ସ୍ଥାନ ଭ୍ରମଣ କରିବା ପାଇଁ ଉତ୍ସାହିତ କରୁଥିଲେ । କେତେ ଥର ଏହି ଉଦ୍ଦେଶ୍ୟରେ ପିଲାମାନଙ୍କୁ ନେଇ ଚିଲିକା ଦ୍ୱିପପୁଞ୍ଜ, ରମ୍ଭା, ସାକ୍ଷୀଗୋପାଳ, ପୁରୀ ଆଦି ସ୍ଥାନକୁ ବୁଲାଇ ନେଇ ଯାଉଥିଲେ ।

ପରଶୁରାମ ଖୋର୍ଦ୍ଧା ହାଇସ୍କୁଲରେ ଯୋଗଦେବାର ପରବର୍ଷ ୧୯୧୫ ମସିହାରେ ପାଟଣା ଯାଇ ବି. ଟି. ଟ୍ରେନିଂ ପାସ୍‌କରି ଆସି ହାଇସ୍କୁଲରେ ପ୍ରଧାନ ଶିକ୍ଷକ ହେଲେ ।

ନିର୍ଭୀକ—ଥରେ ଖୋର୍ଦ୍ଧା ନିକଟବର୍ତ୍ତୀ କେଉଁ ଗାଁରେ ହଇଜା ହେଲା । ପିଲାମାନଙ୍କୁ ନେଇ ରୋଗୀଙ୍କର ଚିକିତ୍ସା ଓ ପଥ୍ୟର ବ୍ୟବସ୍ଥା କରି ଆସିଥିଲେ । ସେ ନିଜେ ହୋମିଓପାଥିକ ଚିକିତ୍ସା ଜାଣିଥିଲେ । ତାହାଙ୍କର ଚିକିତ୍ସାରେ ବହୁତ ରୋଗୀ ଭଲ ହେଲେ । ତଥାପି ସ୍କୁଲ ପକ୍ଷରୁ ତାହାଙ୍କ ପ୍ରତି ଅସନ୍ତୁଷ୍ଟ ହେବାର ସେ କହନ୍ତି । ବିଚିତ୍ର ବୁଝାମଣା ।"

ଏ ସମ୍ପର୍କରେ ମୂଳ ଘଟଣାଟି ଏପରି ଥିଲା । ପରଶୁରାମଙ୍କର ଗ୍ରାମ ଗହଳରେ ସଚେତନତା ସୃଷ୍ଟି କରିବା ପାଇଁ ପ୍ରବଳ ଆଗ୍ରହ ରହିଥିଲା । ତେଣୁ ସାପ୍ତାହିକ ଛୁଟିମାନଙ୍କରେ ସେ ଅନେକ ଥର ଛାତ୍ରମାନଙ୍କୁ ନେଇ ଗ୍ରାମକୁ ଯାଉଥିଲେ । ଗ୍ରାମବାସୀଙ୍କ ମଧ୍ୟରୁ କୁସଂସ୍କାର ଦୂରକରି ସଚେତନତା ସୃଷ୍ଟି କରୁଥିଲେ ଓ

Digitized by PPRACHIN, SOA

ଅଧିକରୁ ଅଧିକ ଗ୍ରାମାଞ୍ଚଳରୁ ଛାତ୍ର ଆସି ଖୋର୍ଦ୍ଧା ହାଇସ୍କୁଲରେ ଯୋଗ ଦେବା ପାଇଁ ପ୍ରୋତ୍ସାହିତ କରୁଥିଲେ । ଏହା ଛଡ଼ା ଛାତ୍ରମାନଙ୍କୁ ସ୍ୱାବଲମ୍ବୀ, ଆତ୍ମନିର୍ଭରଶୀଳ ଆଉ ସ୍ୱାଧୀନଚେତା ହେବାପାଇଁ ସେ ପ୍ରେରଣା ଯୋଗାଉଥିଲେ । ଏହା ଖୋରଧାରେ ଅବସ୍ଥାପିତ ହୋଇଥିବା ଏସ୍. ଡି ଓ.ଙ୍କ ଦୃଷ୍ଟିକୁ ଆସିଥିଲା । ସେ ଛାତ୍ରମାନଙ୍କ ମଧ୍ୟରେ ଏହି ଜାଗରଣକୁ ସୁନଜରରେ ଦେଖୁ ନ ଥିଲେ ।

ଏହି ସମୟରେ ଖୋରଧା ନିକଟବର୍ତ୍ତୀ ଗ୍ରାମଗୁଡ଼ିକ ସହିତ ବେରଙ୍ଗରେ ହଇଜା ରୋଗ ଆରମ୍ଭ ହେଲା ପରଶୁରାମ ସ୍କୁଲ ଛାତ୍ରଙ୍କୁ ନେଇ ରୋଗୀମାନଙ୍କର ଚିକିତ୍ସା ଆରମ୍ଭ କରିଦେଲେ । ଗ୍ରାମଗୁଡ଼ିକରୁ ଆବର୍ଜନା ଦୂର କରି ପରିଷ୍କାର କରିବା ପାଇଁ ଛାତ୍ରମାନଙ୍କ ଜରିଆରେ ପ୍ରଚେଷ୍ଟା କରିଥିଲେ । ଏହି ଘଟଣା ଜାଣିବା ପରେ ଖୋର୍ଦ୍ଧା ଏସ୍. ଡି. ଓ. ପରଶୁରାମଙ୍କୁ ଡାକି କହିଲେ, "ତୁମେ ଛାତ୍ରମାନଙ୍କୁ ନେଇ ଗ୍ରାମରେ ହଇଜା ରୋଗୀଙ୍କୁ ଚିକିତ୍ସା କଲାବେଳେ ଯଦି କିଛି ଛାତ୍ର ରୋଗାକ୍ରାନ୍ତ ହୋଇ ମୃତ୍ୟୁ ବରଣ କରନ୍ତି ତାହା ଯୋଗୁଁ ଅଯଥା ସରକାରଙ୍କର ଅପନାମ ହେବ ଆଉ ଏଥିପାଇଁ ତୁମେ ହିଁ ଦାୟୀ ରହିବ ।"

ମାତ୍ର ଉତ୍ତରରେ ପରଶୁରାମ କହିଲେ, "ଛାତ୍ରମାନେ ନିଜେ ଉପଯୁକ୍ତ ପ୍ରତିଶେଧକ ବ୍ୟବସ୍ଥା ଗ୍ରହଣ କରି ସାରିବା ପରେ ଗ୍ରାମକୁ ଯାଇ ଚିକିତ୍ସା କରୁଥିବାରୁ ରୋଗାକ୍ରାନ୍ତ ହେବାର ସମ୍ଭାବନା ନାହିଁ କିନ୍ତୁ ଗ୍ରାମମାନଙ୍କରେ-ରୋଗୀମାନଙ୍କର ସେବାର ଜରୁରୀ ଆବଶ୍ୟକତା ରହିଛି, ଯାହାର ଶୀଘ୍ର ବ୍ୟବସ୍ଥା ହେବା ଦରକାର ।" ସଙ୍ଗେ ସଙ୍ଗେ ଏସ.ଡି. ଓ କହିଲେ "Do you think that the British Government is not aware of the fact ?" ଏହା ପରେ ମଧ୍ୟ ପରଶୁରାମ ସେହି ସେବାକାର୍ଯ୍ୟରୁ ବିରତ ହୋଇ ନ ଥିଲେ ମାନବିକତା ଦୃଷ୍ଟିକୋଣରୁ ।

ଖୋରଧାରେ ଅବସ୍ଥାପିତ ହେବା ସମୟରେ ପରଶୁରାମଙ୍କର ପ୍ରିୟ ଛାତ୍ର ଥିଲେ ବାଙ୍କୀର ଡାକ୍ତର ବନବିହାରୀ ପଟ୍ଟନାୟକ, ପ୍ରସିଦ୍ଧ ନାଟ୍ୟକାର କାଳୀଚରଣ ପଟ୍ଟନାୟକ, ବାଣପୁରର ଶିକ୍ଷକ ଶ୍ରୀ ବିଶ୍ୱନାଥ ଶତପଥୀ ଓ ଦଧିମାଛଗାଡ଼ିଆର ବରିଷ୍ଠ ଶିକ୍ଷାବିତ୍ ଉଦୟସିଂହ ପଟ୍ଟନାୟକ ।

ଏହାର ପରବର୍ତ୍ତୀ ଘଟଣା ଡାକ୍ତର ରାଧାଚରଣ ପଣ୍ଡାଙ୍କର ଲିଖିତ ପରଶୁରାମଙ୍କର ଜୀବନ ଚରିତ (ଲକ୍ଷେ ଗୁରୁଙ୍କର ଗୁରୁ) ପୁସ୍ତକରେ ଏହିଭଳି ସଂକଳିତ ହୋଇଛି ।

"ପରଶୁରାମଙ୍କର ସାକ୍ଷୀଗୋପାଳ ଯିବା ସମୟରେ ଜଣେ ଗଣ୍ଡାମ ଆସିକାର ଓକିଲ ହରିହର ପଣ୍ଡା ଆସି ଗୋପବନ୍ଧୁଙ୍କ ସହ କଥା ହେଉ ହେଉ କହିଲେ, 'ଜଣେ ଭଲ ଶିକ୍ଷକ ମିଳିଲେ ଆସିକାରେ ଏକ ହାଇସ୍କୁଲ ଖୋଲନ୍ତେ ।'

Digitized by PPRACHIN, SOA

ଏଭଳି କଥା ଶୁଣି ଶୁଣି ଗୋପବନ୍ଧୁ କହିଲେ, 'ଏହି ପରଶୁରାମ ବର୍ମା ହେଉଛନ୍ତି ଜଣେ ଉପଯୁକ୍ତ ଶିକ୍ଷକ । ସେ ଆସିକା ଗଲେ ଭଲ ହେବ ।'

ଗୋପବନ୍ଧୁଙ୍କର କଥା ଶ୍ରବଣ କରି ହରିହର ପଣ୍ଡା ପରଶୁରାମଙ୍କୁ ଆସିକା ନେବା ଠିକ କଲେ । ତାଙ୍କୁ ଏକ ତାର ପଠାଇ ଡକାଇ ନେଲେ । ତାରରେ ଏହିଭଳି ଲେଖା ଥିଲା, Catch 18th Morning Mail. Awaiting at Berhampur.,

## ଆସିକା ହାଇସ୍କୁଲ

ଆସିକା ସହର । ପ୍ରୟାଗ ଭଳି ଦୁଇଟି ଛଳ ଛଳ ହୋଇ ବହି ଯାଉଥିବା ନଦୀର ମିଳନ ସ୍ଥଳୀ । ଋଷିକୁଲ୍ୟା ଆଉ ବଡ଼ନଦୀ । ପୁର୍ବ ଘାଟ ଉଚ୍ଚା ଋଷିମାଳ ଆଉ ଶାଳେଣ୍ଟ ପାହାଡ଼ର ଗର୍ଭ ଫୁଟାଇ ନଦୀ ଦୁଇଟିରେ ବହି ଆସିଥିବା ଉର୍ବର ଜଳ ଆସିକା ଅଞ୍ଚଳକୁ ଶସ୍ୟଶାଳୀ କ୍ଷେତ ଖମାରେ ଭରି ଦେଇଛି । ସମସ୍ତ ଅଞ୍ଚଳଟି ଉର୍ବର ପଟୁମାଟିରେ ହୋଇଛି ଫଳପ୍ରସୂ । ତେଣୁ ଆସିକାଠାରୁ ଅଳ୍ପ କିଛି ଦୂରରେ ଗଢ଼ି ଉଠିଥିଲା ପ୍ରଖ୍ୟାତ ଅଶୋକ କାଳୀନ ନଗରୀ 'ସମାପା' । ଏହିଠାରେ ଖୋଦିତ ହୋଇଛି ଅଶୋକଙ୍କର ଶିଳାଲେଖ, ସବୁ ମଣିଷଙ୍କୁ ସମତାର ସୂତ୍ରରେ ବାନ୍ଧି ରଖିବା ପାଇଁ (ଜଉଗଡ଼ଠାରେ) ।

ସମଗ୍ର ଗଞ୍ଜାମ ଇଂରେଜ ଶାସନର ଅଧୀନକୁ ଆସିଲା ୧୭୬୫ ସାଲ ବେଳକୁ । ଇଂରେଜ ଶାସନର କିଛିକାଳ ପରେ ୧୭୮୯-୯୨ ମଧ୍ୟରେ ଭୟାନକ ଦୁର୍ଭିକ୍ଷ ଦକ୍ଷିଣ ଓଡ଼ିଶାରେ ଦେଖା ଦେଇଥିଲା, ଯାହାକୁ 'ପାଞ୍ଚମାଣିଆ କାନ୍ତାର' କୁହାଯାଏ । ପାଞ୍ଚମାଣିଆ କାନ୍ତାର ପରେ ୧୮୩୭ ପର୍ଯ୍ୟନ୍ତ ଦ୍ୱିତୀୟ ଓ ତୃତୀୟ ଉତ୍କଟ ମରୁଡ଼ି ଜନିତ ଦୁର୍ଭିକ୍ଷ ଲାଗି ରହିଲା । ଫଳରେ ବହୁ ଲୋକ ଭିଟାମାଟି ଛାଡ଼ି କଳାହାଣ୍ଡି ଆଉ ଗଡ଼ଜାତ ଅଞ୍ଚଳକୁ ଚାଲିଗଲେ । ଗ୍ରାମଗୁଡ଼ିକ ଜନଶୂନ୍ୟ ହୋଇଗଲା । ଏପରିକି ୧୮୦୦ ମସିହାରେ ଗଞ୍ଜାମର କଲେକ୍ଟର ମି. ବ୍ରାଉନ୍ ଲେଖିଛନ୍ତି ଯେ 'ସମଗ୍ର ଅଞ୍ଚଳଟି ଜନଶୂନ୍ୟତାର ଶେଷ ପର୍ଯ୍ୟାୟରେ ପହଞ୍ଚିଯାଇଛି ।' ଏଭଳି ଅବସ୍ଥାରେ ଦକ୍ଷିଣ ଓଡ଼ିଶାର ବିଦ୍ରୋହ ଦମନ କରିବାକୁ ଆସିଥିବା ତେଲୁଗୁ ସୈନ୍ୟମାନେ ତଥା ଇଂରେଜ ସରକାରଙ୍କ ଅଧୀନରେ କାମ କରୁଥିବା ତେଲୁଗୁ କର୍ମଚାରୀମାନେ ଏହି ଜନଶୂନ୍ୟ ଅଞ୍ଚଳକୁ ନିଜର କ୍ଷେତ୍ର ଦଖଲକୁ ନେଇଗଲେ ।

ତେଣୁ ଓଡ଼ିଆଭାଷୀ ଅଧ୍ୟୁଷିତ ସମଗ୍ର ଦକ୍ଷିଣ ଅଞ୍ଚଳଟିରେ କ୍ରମଶଃ ତେଲୁଗୁ ଲୋକଙ୍କର ଜନସଂଖ୍ୟା ବଢ଼ିବାକୁ ଲାଗିଲା ।

## ଗଞ୍ଜାମରେ ଓଡ଼ିଆଭାଷା ଆନ୍ଦୋଳନ

ଗଞ୍ଜାମ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଆଉ ବହୁ ମଣ୍ଡଳୀ କବିଙ୍କ ସାଧନା ପୀଠ ଥିଲା । ସେମାନଙ୍କର ସାରସ୍ୱତ ରଚନାବଳୀ

Digitized by PPRACHIN, SOA

ଜନମାନସକୁ ଉଦ୍‌ବୁଦ୍ଧ ଆଉ ଉତ୍ସାହିତ କରୁଥିଲା । ମାତ୍ର ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ଦକ୍ଷିଣ ଓଡ଼ିଶାର ଶାସନ ଡୋର ଚାଲି ଆସିଲା ଇଂରେଜମାନଙ୍କ ହାତକୁ ସେତେ ନୁହେଁ ତାହାଠାରୁ ଅଧିକ ଅନ୍ୟ ଅଞ୍ଚଳରୁ ଆସି ଶାସନ କରୁଥିବା ସରକାରୀ କର୍ମଚାରୀମାନଙ୍କ ହାତକୁ ।

ତେଣୁ କୋର୍ଟ କଚେରୀ ଆଉ ଶିକ୍ଷାନୁଷ୍ଠାନରେ ଇଂରେଜୀ ସହିତ ତେଲୁଗୁ ହୋଇଥିଲା ସର୍ବମାନ୍ୟ ଭାଷା । ଆପତ୍ତି, ଅଭିଯୋଗ ଆଉ ଅର୍ଜି ଦାଖଲ କରିବା ପାଇଁ କୋର୍ଟ କଚେରୀରେ ଓଡ଼ିଆ ଭାଷାର ସ୍ଥାନ ନ ଥିଲା । ଏହା ଯେପରି ପରିଣତ ହୋଇ ଯାଇଥିଲା କଥିତ ଭାଷାରେ ।

ଏହାର ବିରୁଦ୍ଧରେ ସ୍ୱର ଉଠିଥିଲା । ୧୮୭୦ ମସିହାରେ ଭଞ୍ଜଭୂମି ରସଲକୁଣ୍ଡା (ଭଞ୍ଜନଗର) ଠାରୁ ଏକ ଆବେଦନ ପତ୍ର ପ୍ରେରିତ ହୋଇଥିଲା ବଡ଼ଲାଟଙ୍କ ପାଖକୁ ସମଗ୍ର ଗଞ୍ଜାମରେ ଓଡ଼ିଆ ଭାଷା ପ୍ରଚଳନ ଲାଗି । ଏହି ସମ୍ମେଳନର ଉଦ୍ୟୋକ୍ତା ଥିଲେ ଦୀନବନ୍ଧୁ ପଟ୍ଟନାୟକ ଯାହାଙ୍କର ଅଧିନାୟକତ୍ୱରେ ଋଷିକୁଲ୍ୟା ନଦୀର ଉଭୟ ପାର୍ଶ୍ୱରେ ଥିବା ସମଗ୍ର ଗଞ୍ଜାମର ଅଗ୍ରଣୀ ଅଧିବାସୀମାନେ ମିଳିତ ହୋଇଥିଲେ ।

କିଛି ଆବେଦନ, କିଛି ସ୍ମାରକପତ୍ର, କିଛି ବ୍ୟକ୍ତିଗତ ପ୍ରଚେଷ୍ଟା ଫଳରେ ୧-୮-୧୮୯୦ରେ ସରକାରୀ ଘୋଷଣାନାମା ପ୍ରକାଶ ପାଇଲା ଯେ, ସମଗ୍ର ଜିଲ୍ଲାରେ ତେଲୁଗୁ ସହିତ ଓଡ଼ିଆ ଭାଷାର ପ୍ରଚଳନ ହେବ । ମାତ୍ର ଘୁମୁସର ଅଞ୍ଚଳରେ କେବଳ ଓଡ଼ିଆ ଭାଷା ଚାଲିବ । ମାତ୍ର ଏହା କେବଳ ରହିଥିଲା କାଗଜପତ୍ରରେ ଏବଂ ପରେ ଆଂଶିକ ଭାବେ ପ୍ରଚଳିତ ହେଲା ।

## ଗଞ୍ଜାମରେ ଶିକ୍ଷା ପ୍ରସାର

ଗଞ୍ଜାମରେ ପ୍ରଥମ ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା ଛତ୍ରପୁରରେ ୧୮୫୦ ସାଲରେ ତତ୍କାଳୀନ କଲେକ୍ଟର ଆର୍ଥର ଗୁଲ ଅନ୍‌ସ୍ଲୋଙ୍କ ଦ୍ୱାରା । ୧୮୫୭ରେ ବ୍ରହ୍ମପୁରରେ ଜିଲ୍ଲାସ୍କୁଲ ପ୍ରତିଷ୍ଠିତ ହୋଇ ୧୮୭୮ ବେଳକୁ କଲେଜ ସ୍ତରକୁ ଉନ୍ନୀତ ହୋଇଥିଲା । ୧୮୮୦ ବେଳକୁ ସମଗ୍ର ଗଞ୍ଜାମ ଜିଲ୍ଲାରେ ସାତ ଜଣ ମାଟ୍ରିକ୍ୟୁଲେସନ ଆଉ ତିନିଜଣ ଆଇ. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଦ୍ୱିତୀୟ ହାଇସ୍କୁଲଟି ପ୍ରତିଷ୍ଠିତ ହୋଇଥିଲା ୧୮୮୫ରେ ରସଲକୁଣ୍ଡା (ଭଞ୍ଜନଗର) ଠାରେ । ଆଉ ଚତୁର୍ଥଟି ପାରଳାଖେମୁଣ୍ଡିରେ ୧୮୯୨ରେ । ଏହାର ଅନେକ କିଛି ବର୍ଷ ପରେ ଆସିକାରେ ପ୍ରତିଷ୍ଠା ଲାଭ କଲା ପଞ୍ଚମ ହାଇସ୍କୁଲ ୧୯୧୮ ମସିହାରେ, ଯହିଁରେ ପରଶୁରାମ ବର୍ମା ପ୍ରଧାନ ଶିକ୍ଷକ ଭାବରେ ଯୋଗ ଦେଇଥିଲେ ।

Digitized by PPRACHIN, SOA

ପରଶୁରାମ ଟେଲିଗ୍ରାମ ପାଇ ୧୯୧୮ରେ ଖୋରଧାରୁ ଆସି ପହଞ୍ଚିଲେ ବ୍ରହ୍ମପୁର ରେଲଷ୍ଟେସନରେ । ସେଠାରେ ତାଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇଲେ ଦେଶପ୍ରେମୀ ହରିହର ପଣ୍ଡା । ସେଠାରୁ ପରଶୁରାମ ଆସି ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ ଯୋଗଦେଲେ ।

ପୂର୍ବରୁ କେବଳ ପ୍ରତିଷ୍ଠିତ ଥାଏ ମାଇନର ସ୍କୁଲ ଯାହା ଗୋଟିଏ ଭଡ଼ାଘରେ କାର୍ଯ୍ୟ କରି ଆସୁଥିଲା ଏବଂ ଅତ୍ୟନ୍ତ ଅସୁରକ୍ଷିତ ଅବସ୍ଥାରେ ଥିଲା ।

ଏ ସମସ୍ତ ବିଷୟରେ ଡାକ୍ତର ପଣ୍ଡାଙ୍କର ଲିଖିତ ପରଶୁରାମଙ୍କର ଜୀବନ ଚରିତରେ ଏପରି ଉଲ୍ଲେଖ ଅଛି—

"ସେ କାଳରେ ଗଞ୍ଜାମରେ ସି. ବି. କଟ୍ରେଲ୍ ନାମକ ସାହେବ ଜିଲ୍ଲା କଲେକ୍ଟର ଥିଲେ । ସେ ଜଣେ ଆଇ. ସି. ଏସ୍. ଓ ବିଚକ୍ଷଣ ଅଧିକାରୀ ଥିଲେ । ଓଡ଼ିଆ ପ୍ରେମୀ ଥିଲେ । ସେ ସମୟରେ ଗଞ୍ଜାମରେ ଆନ୍ଧ୍ରମାନେ ଯେଉଁଭଳି ବିଦ୍ୱେଷ ସୃଷ୍ଟି କରୁଥିଲେ ତାହାକୁ ଦବାଇବା ପାଇଁ କଟ୍ରେଲ୍ ସାହେବ ଆସିବାରେ ଏକ ହାଇସ୍କୁଲ ସ୍ଥାପନା କରିବା ପାଇଁ ହରିହର ପଣ୍ଡାଙ୍କୁ ଉତ୍ସାହିତ କରିଥିଲେ । ଫଳରେ ଶ୍ରୀ ପଣ୍ଡା ପରଶୁରାମଙ୍କୁ ଆଣି ହାଇସ୍କୁଲ ଖୋଲିଲେ ।

ସ୍କୁଲପାଇଁ ଭଲ ଘର ନ ଥିଲା । ଏହି କାରଣରୁ ସେଠାରେ ଥିବା ପୁରୁଣା ଚିନି କାରଖାନାର ଘରଟିକୁ ପଞ୍ଚବିଂଶ ହଜାର ଟଙ୍କାରେ କିଣି ହାଇସ୍କୁଲ କରିଥିଲେ । ଏ କାର୍ଯ୍ୟରେ ସେ ସମୟରେ ଶିକ୍ଷା ବିଭାଗ ଇନ୍‌ସପେକ୍ଟର ରନସ୍ଫୋର୍ଡ ସାହେବ ମଧ୍ୟ ସାହାଯ୍ୟ କରିଥିଲେ ଓ ଶ୍ରୀ ପରଶୁରାମ ବର୍ମା ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

୧୯୧୮-୧୯ରେ ଗଞ୍ଜାମ ଜିଲ୍ଲାରେ ବର୍ଷା ଅଭାବରୁ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା । ଏହି ଦୁର୍ଭିକ୍ଷ ନିବାରଣ ଲାଗି କଟ୍ରେଲ୍ ସାହେବ ୮୦ ଲକ୍ଷ ଟଙ୍କା ଖରଚ କରି ଜିଲ୍ଲାରେ ବହୁ ପୁଷ୍କରିଣୀ ଖୋଳାଇଲେ, ନଦୀଗୁଡ଼ିକୁ ଉଦ୍ଧାର କଲେ ଏବଂ ଲୋକଙ୍କୁ ଖାଦ୍ୟ ଯୋଗାଇଲେ । ତାଙ୍କର ଏହି ସାହାଯ୍ୟ ପାଇଁ ଗଞ୍ଜାମବାସୀମାନେ ନିଜ ମଧ୍ୟରେ ଏକଲକ୍ଷ ଟଙ୍କା ଚାନ୍ଦା ସଂଗ୍ରହ କରି ଏକ ପାଣ୍ଠି ଗଢ଼ିଥିଲେ । ଏହାକୁ କଟ୍ରେଲ ଫଣ୍ଡ ନାମ ଦିଆ ଯାଇଥିଲା । ଏଥିରୁ ଗରିବ ପିଲାମାନଙ୍କୁ ବିନା ସୁଧରେ ଋଣ ଦିଆ ଯାଉଥିଲା ବିଦ୍ୟା ଅଧ୍ୟୟନ ଲାଗି ।

**ଚିନି କାରଖାନା—**

ଆସିକା ଚିନି କାରଖାନା ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ଜର୍ମାନୀ ଦେଶରୁ 'ମିନ୍‌ଚିନ୍' ନାମକ ସାହେବ ଆସି ଏଠାରେ ଏକ ଚିନି କାରଖାନା ଖୋଲିଥିଲେ । ଏଠା ଚିନି ପାରିସ୍ ପ୍ରଦର୍ଶନୀରେ ପଦକ ଲାଭ କରିଥିଲା । ମିନ୍‌ଚିନ୍ ସାହେବଙ୍କ ଏକ ପ୍ରସ୍ତର ମୂର୍ତ୍ତି ପୁରୁଣା କାରଖାନାରେ ରଖାଯାଇଛି । ଚିନି କହିଲେ ଆସିକା

Digitized by PPRACHIN, SOA

ଚନ ବୋଲି ବୁଝା ଯାଉଥିଲା । ମିନ୍‌ଚନ୍ ସାହେବଙ୍କ ଖ୍ୟାତି ସେ କାଳରେ ସମସ୍ତ ମାନ୍ଦ୍ରାଜ ପ୍ରଦେଶରେ ବ୍ୟାପି ଯାଇଥିଲା । ଆସିକାରେ 'ସୁନା' ନାମ୍ନୀ ଏକ ସ୍ତ୍ରୀକୁ ମିନ୍‌ଚନ୍ ସାହେବ ନିଜ ଦେଶକୁ ନେଇ ବିବାହ କରିଥିଲେ ।"

**ଅସହିଷ୍ଣୁତା—**

ଏ ଥିଲା ଉତ୍କଳର ପଣ୍ଡାଙ୍କର ଲିଖିତ ବିବରଣୀ । ଆଜିର ଆସିକା ଆଉ ୧୯୧୮ର ଆସିକା ଭିତରେ ଆକାଶ ପାତାଳ ପ୍ରଭେଦ । ଏବେ ଆସିକା ଗୋଟିଏ ଓଡ଼ିଆବାସୀ ସହର ଯହିଁରେ ତେଲୁଗୁମାନଙ୍କ ସଂଖ୍ୟା ନଗଣ୍ୟ । ମାତ୍ର ୧୯୧୮ରେ ତେଲୁଗୁମାନେ ଥିଲେ ପ୍ରଭୃତ୍ୱଶାଳୀ ଗୋଷ୍ଠୀ । ସରକାରୀ ଦପ୍ତର, କଚେରି, ସ୍କୁଲ ଗୋଷ୍ଠୀ ଆଉ ଶିକ୍ଷକମାନଙ୍କ ମଧ୍ୟରେ ତେଲୁଗୁମାନେ ହିଁ ଥିଲେ ସଂଖ୍ୟାଧିକ ଅଭି କ୍ଷମତାଶାଳୀ । ବ୍ୟବସାୟ ମୁଖ୍ୟତଃ ସେମାନଙ୍କ ହାତରେ ଥିଲା । ସ୍କୁଲର ଛାତ୍ର ସଂଖ୍ୟା ବହୁତ କମ୍ ଥିଲା ଆଉ ପ୍ରତି ଶ୍ରେଣୀରେ ଦୁଇଟି ସେକ୍‌ସନ ବା ବିଭାଗ ଥିଲା । ଗୋଟିଏ ତେଲୁଗୁ ପିଲା ଏବଂ ଅନ୍ୟଟି ଓଡ଼ିଆ ଛାତ୍ରଙ୍କ ପାଇଁ । ପରଶୁରାମ ଆସିକାକୁ ଦେଶ ମିଶ୍ରଣ ଆନ୍ଦୋଳନର ଗୋଟିଏ ପ୍ରଧାନ କେନ୍ଦ୍ରରେ ପରିଣତ କରିବାକୁ ପରିକଳ୍ପନା କରିଥିଲେ ଏବଂ ତାଙ୍କର ରହିଥିଲା ଓଡ଼ିଆ ନେତାମାନଙ୍କ ସହ ଅତି ଆନ୍ତରିକ ସମ୍ପର୍କ । ପରଶୁରାମ ଉଭୟ ତେଲୁଗୁ ଓ ଓଡ଼ିଆ ଶିକ୍ଷକ ଓ ଛାତ୍ର ଗୋଷ୍ଠୀ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ରଖିଥିଲେ । ମାତ୍ର ପରଶୁରାମଙ୍କ ଓଡ଼ିଆ ପ୍ରୀତି ଯୋଗୁଁ ତାଙ୍କୁ ଏହି ସ୍କୁଲରୁ ତଡ଼ିବା ପାଇଁ ଷଡ଼ଯନ୍ତ୍ର ଆରମ୍ଭ ହୋଇଗଲା ତେଲୁଗୁମାନଙ୍କ ପକ୍ଷରୁ । ହଁ, ଏହି ଷଡ଼ଯନ୍ତ୍ରର କିଛି ପରିମାଣରେ ଶିକାର ହୋଇଥିଲେ ପରଶୁରାମ ।

ଆସିକା ନିକଟବର୍ତ୍ତୀ ସ୍କୁଲମାନଙ୍କର ବାର୍ଷିକ ପରୀକ୍ଷାସବୁ ସଞ୍ଚାଳିତ କରିବାପାଇଁ ଶିକ୍ଷାବିଭାଗ ପକ୍ଷରୁ ପରଶୁରାମଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ହୋଇଥିଲା । ପରୀକ୍ଷାପାଇଁ ସମସ୍ତ ପ୍ରସ୍ତୁତି ସରିଲା । ପ୍ରଶ୍ନ କାଗଜ ସବୁ ସାଇକ୍ଲୋଷ୍ଟାଇଲ ହୋଇ ସିଲହିଆ ପ୍ୟାକେଟ୍ ମାନଙ୍କରେ ରଖାଗଲା । ଏହାର ପରଦିନ ପରୀକ୍ଷା ଆରମ୍ଭ ହେବାର କଥା । ସେହି ରାତିରେ ଗୋଟାଏ ବେଳେ ପରଶୁରାମ ସମ୍ବାଦ ପାଇଲେ ଯେ ପ୍ରଶ୍ନପତ୍ର ସବୁ ଚୋରି ହୋଇଯାଇଛି । ପରଶୁରାମ ଅଫିସକୁ ଯାଇ ଦେଖିଲେ ଯେ ପ୍ୟାକେଟ୍ ସବୁ ଅକ୍ଷୁଣ୍ଣ ଅବସ୍ଥାରେ ରହିଛି । ମାତ୍ର ପ୍ରତି ପ୍ୟାକେଟ୍‌ରୁ ଖଣ୍ଡିଏ ଖଣ୍ଡିଏ ପ୍ରଶ୍ନପତ୍ର ବାହାର କରିନିଆଯାଇଛି ।

ସେହି ମଧ୍ୟରାତିରେ ପରଶୁରାମ ତାଙ୍କର ବିଶ୍ୱସ୍ତ ଶିକ୍ଷକମାନଙ୍କୁ ଡକାଇ ପଠାଇଲେ । ପୁଣି ନୂତନ ପ୍ରଶ୍ନପତ୍ର ତିଆରି ହୋଇ ସିଲ୍‌ହୋଇ ରହିଲା । ମାତ୍ର ଏ ଭିତରେ ଚୋରି ହୋଇଥିବା ପ୍ରଶ୍ନପତ୍ର ସବୁ ସାଇକ୍ଲୋଷ୍ଟାଇଲ ହୋଇ ବିଭିନ୍ନ ସ୍କୁଲର ଛାତ୍ରମାନଙ୍କ ମଧ୍ୟରେ ବଣ୍ଟା ସରିଥିଲା । ସକାଳେ ନୂତନ ତିଆରି ହୋଇଥିବା

Digitized by PPRACHIN, SOA

ପ୍ରଶ୍ନପତ୍ରସବୁ ବିଭିନ୍ନ ସ୍କୁଲକୁ ପଠାଇ ଦିଆଗଲା । ନିର୍ଦ୍ଧାରିତ ସମୟରେ ପରୀକ୍ଷା ହେଲା । ନୂତନ ପ୍ରଶ୍ନ ଦେଖି, କେବଳ ଛାତ୍ରମାନେ ନୁହନ୍ତି, ତାଙ୍କର ଷଡ଼ଯନ୍ତ୍ର-କାରୀମାନେ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଏହିପରି ଖୁବରେ ଆସନ୍ନ ବିପଦରୁ ପରଶୁରାମ ରକ୍ଷା ପାଇଗଲେ । ଏ ସମସ୍ତ ସତ୍ତ୍ୱେ ବହୁ ତେଲୁଗୁମାନଙ୍କର ସମ୍ମାନର ପାତ୍ର ହୋଇଥିଲେ ଓ ସମସ୍ତଙ୍କ ସହ ସୌଜନ୍ୟ ରକ୍ଷାକରି ଘନିଷ୍ଠ ସମ୍ପର୍କ ସ୍ଥାପନ କରିଥିଲେ । ବିଶେଷତଃ ତାଙ୍କର ଅଧ୍ୟାପନାର ଶୈଳୀରେ ସମସ୍ତେ ଅଭିଭୂତ ହୋଇଯାଉଥିଲେ ।

ପରବର୍ତ୍ତୀ ପର୍ଯ୍ୟାୟରେ ପରଶୁରାମଙ୍କୁ ହଟାଇବା ପାଇଁ ତେଲୁଗୁମାନେ ଅମୋଘଅସ୍ତ୍ର ପ୍ରୟୋଗ କଲେ । ସ୍କୁଲଟି ଗୋଟିଏ ଛପର ଘର ଥିଲା । ସେହି ଘରେ ନିଆଁ ଲଗାଇ ଦେଲେ । ଘରଟି କ୍ଷଣିକ ମଧ୍ୟରେ ଭସ୍ମୀଭୂତ ହୋଇଗଲା । ସ୍କୁଲକୁ ନୂତନ ଗୃହରେ ଅବସ୍ଥାପିତ କରିବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଲା ।

ଏ ସମୟରେ ସହାୟତା କରିଥିଲେ ଜିଲ୍ଲା କଲେକ୍ଟର କଣ୍ଟ୍ରେଲ ସାହେବ । ଚନ୍ଦ୍ର କଳର ପ୍ରତିଷ୍ଠାତା ସ୍ୱର୍ଗୀୟ ମିନ୍‌ଚିନ୍ ସାହେବଙ୍କର ବାସ ଭବନକୁ କିଣି, ସେଠାରେ ହାଇସ୍କୁଲକୁ ଅବସ୍ଥାପିତ କରାଗଲା । ନୂତନଭାବେ ହାଇସ୍କୁଲଟି ଗୋଟିଏ ସୁବିସ୍ତୀର୍ଣ୍ଣ ପରିସର ମଧ୍ୟରେ କାର୍ଯ୍ୟ କରିଚାଲିଲା । ଏହି ଭବନଟି ୧୮୫୦ ମସିହାରେ ନିର୍ମିତ ହୋଇଥିଲା । ଦୀର୍ଘ ଦେଢ଼ଶହ ବର୍ଷ ପରେ ସେହି ଭବନଟି ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଛି ।

ଏହା ପରେ ଆସିକାରେ ପରଶୁରାମଙ୍କ ସ୍ଥିତି ସୁଦୃଢ଼ ହୋଇଥିଲା । ସେ କ୍ରମେ ସ୍କୁଲରେ ଅଧିକ ଓଡ଼ିଆ ଛାତ୍ରମାନଙ୍କ ଯୋଗଦାନ ପାଇଁ ପ୍ରଚେଷ୍ଟା ଜାରି ରଖିଲେ । ପଲ୍ଲୀ ଅଞ୍ଚଳର ସ୍କୁଲମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ପାସ୍‌କରିଥିବା ଛାତ୍ରମାନଙ୍କୁ ହାଇସ୍କୁଲରେ ଯୋଗଦାନପାଇଁ ପ୍ରୋତ୍ସାହିତ କଲେ । ସେତେବେଳେ ହଷ୍ଟେଲ ନ ଥିବାରୁ ମଫସଲରୁ ଆଗତ ଛାତ୍ରମାନଙ୍କ ପାଇଁ ସ୍ୱତନ୍ତ୍ର ମେସ୍‌ଗୁଡ଼ିକର ବ୍ୟବସ୍ଥା କରାଯାଇଥିଲା । ଫଳରେ ଅଳ୍ପ ସମୟ ମଧ୍ୟରେ ସ୍କୁଲରେ ଓଡ଼ିଆ ଛାତ୍ରମାନଙ୍କ ସଂଖ୍ୟା ବହୁଗୁଣରେ ବଢ଼ିବାକୁ ଲାଗିଲା । ଏହି ସମସ୍ତ କାର୍ଯ୍ୟରେ ୧୯୨୪ ସାଲରେ ସ୍କୁଲରେ ଯୋଗ ଦେଇଥିବା ଶିକ୍ଷକ (ପରେ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍) ଦିବ୍ୟ-ସିଂହ ପଟ୍ଟନାୟକ ସହାୟତା କରିଥିଲେ ଓ ମେସ୍ ସବୁର ଦାୟିତ୍ୱରେ ରହିଥିଲେ ।

Digitized by PPRACHIN, SOA

## ଉତ୍କଳ ସମ୍ମିଳନୀ

ଉତ୍କଳ ସମ୍ମିଳନୀର ପରିକଳ୍ପନା ହୋଇଥିଲା ଗଞ୍ଜାମର ମାଟିରେ, ୧୯୦୨ରେ ରମ୍ଭା ଉତ୍ସବରେ ରାଜା ହରିହର ମର୍ଦ୍ଦରାଜଙ୍କର ପୁତ୍ରର ଦ୍ୱିତୀୟ ଜନ୍ମ ବାର୍ଷିକୀ ଅବସରରେ । ଏହି ସମାବେଶରେ ଉପସ୍ଥିତ ଥିଲେ ମଧୁବାବୁଙ୍କ ସହିତ ରାଧାନାଥ ରାୟ, ଫକୀର ମୋହନ, ପର୍ଶୁରାମ ପାତ୍ର, ନରସିଂହ ଦାସ ପ୍ରମୁଖ ବହୁ ମାନ୍ୟଗଣ୍ୟ ବ୍ୟକ୍ତି । ଉତ୍କଳ ସମ୍ମିଳନୀର ମୂଳ ପ୍ରାଣ ସତ୍ତା ଜନ୍ମ ନେଇଥିଲା ଏହି ମିଳନୀର ଅବସରରେ । ଆଉ ୧୯୦୩ ଏପ୍ରିଲ ମାସରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇଥିଲା ଗଞ୍ଜାମ ଜାତୀୟ ସମ୍ମିଳନୀ ଯହିଁରେ ମୁଖ୍ୟ ଅତିଥି ଥିଲେ ମଧୁବାବୁ । ସଭାପତି ଥିଲେ ଶ୍ୟାମସୁନ୍ଦର ରାଜଗୁରୁ ଆଉ ଆୟୋଜକ ଥିଲେ ରାଜା ହରିହର ମର୍ଦ୍ଦରାଜ । ଅତିଥିମାନଙ୍କ ମଧ୍ୟରେ ଥିଲେ ଫକୀର ମୋହନ, ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ଶଶୀଭୂଷଣ ରାୟ, ଆଉ ଗୋପବନ୍ଧୁ ଦାସ । ଏଥିରେ ସହଯୋଗ କରିଥିଲେ କୃଷ୍ଣଚନ୍ଦ୍ର ସାହାଣୀ, ଉଇଲ୍ୟମ ମହାନ୍ତି, ଶ୍ରୀବତ୍ସ ପଣ୍ଡା, ନରସିଂହ ଦାସ, ହରିହର ଖଣ୍ଡି ମହାନ୍ତ, ପରଶୁରାମ ପାତ୍ରଙ୍କ ଛଡ଼ା ଗୁନେସ୍ୱା ଶାସ୍ତ୍ରୀ ଓ ବାବୁରାଓ ନାଇଡୁଙ୍କ ପରି ନିରପେକ୍ଷ ତେଲୁଗୁ ଭଦ୍ରବ୍ୟକ୍ତି ଗଣ । ଏଠାରେ ମଧୁବାବୁ ଘୋଷଣା କରିଥିଲେ ଯେ, ଏହି ସଭାରେ ପ୍ରାକୃତିକ ଓଡ଼ିଶାର ପ୍ରତିନିଧିମାନେ ଯୋଗ ଦେଇଥିବାରୁ ପରବର୍ତ୍ତୀ ପ୍ରାଦେଶିକ ସମ୍ମିଳନୀଟି ଉତ୍କଳ ସମ୍ମିଳନୀ ନାମରେ ନାମିତ ହେବ ।

ଏହା ପରେ ମହା ଉଦ୍ଦୀପନାର ସହ ଉତ୍କଳ ସମ୍ମିଳନୀ କଟକରେ ଅନୁଷ୍ଠିତ ହୋଇଥିଲା ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ ।

ଏହା ପରେ ଉତ୍କଳ ସମ୍ମିଳନୀର ଯେଉଁ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ସେଥିମଧ୍ୟରୁ କେବଳ କେତୋଟି ସମ୍ମିଳନୀ ଗଞ୍ଜାମ ଜିଲ୍ଲାରେ ଅନୁଷ୍ଠିତ ହୋଇଥିଲା ।

| | | |
|---|---|---|
| ଚତୁର୍ଥ ଅଧିବେଶନ | ୧୯୦୭ | ବ୍ରହ୍ମପୁର |
| ଅଷ୍ଟମ ଅଧିବେଶନ | ୧୯୧୨ | ବ୍ରହ୍ମପୁର |
| ଦଶମ ଅଧିବେଶନ | ୧୯୧୪ | ପାରଳାଖେମୁଣ୍ଡି |

ଉତ୍କଳ ସମ୍ମିଳନୀର ଅଧିବେଶନ ଗୁଡ଼ିକ ମହାସମାରୋହରେ ପାଳିତ ହେଉଥିଲା ଏବଂ ସାରା ବର୍ଷ ଲାଗି ପ୍ରେରଣା ଯୋଗାଉ ଥିଲା । ଉତ୍କଳ ସମ୍ମିଳନୀର ବର୍ଷର ଅନ୍ୟ ସମୟରେ କ୍ଷୀଣଧାରା ନଦୀପରି ବହୁଥିଲେ ମଧ୍ୟ ବାଲିର ଆବରଣ ତଳେ ଅନ୍ତଃସଲିଳା ଜଳପ୍ରବାହ ପରି ତାହା ମଧ୍ୟରେ ରହିଥାଏ ଓଡ଼ିଆ ପ୍ରାଣର ଦରଦଭରା ଅକୁଣ୍ଠ ଅଭ ଆନ୍ତରିକ ଆବେଦନ । ପଦ୍ମାଳୟ ବଡ଼ଦାଣ୍ଡରେ ପ୍ରତିଷ୍ଠିତ

Digitized by PPRACHIN, SOA

ଜଲସୁଅପର ଅଧିବେଶନ ସମୟରେ ଏହି ସମ୍ମିଳନୀ ଅକାର ହୋଇଯାଏ ବିଶାଳ; ଲୁପ୍ତହୋଇ ରହିଥିବା ଓଡ଼ିଆ ପ୍ରାଣର ଉଦ୍‌ବେଳିତ ଭାବ ଉଚ୍ଛ୍ୱାସକୁ ପରିପ୍ରକାଶ କରି ।

ପରଶୁରାମ ୧୯୧୮ରେ ଯେତେବେଳେ ଯୋଗଦେଲେ ଅସିକା ହାଇସ୍କୁଲରେ, ସେହି ବର୍ଷଟି ଦେଶମିଶ୍ରଣ ଆନ୍ଦୋଳନ ଲାଗି ଥିଲା ଆଶା ଓ ନିରାଶାର ବର୍ଷ । ୧୯୧୭ରେ ଭାରତର ଶାସନ ବ୍ୟବସ୍ଥାରେ ସଂସ୍କାର ଆଣିବାପାଇଁ ମଣ୍ଟେଗୁ ଚେମସ୍‌ଫୋର୍ଡ଼ କମିଟି ଗଠିତ ହେଲା । ଏହି କମିଟିକୁ ଓଡ଼ିଆମାନଙ୍କ ପକ୍ଷରୁ ମଧୁବାବୁ କଲିକତା ଯାଇ ୧୯୧୭ ଡିସେମ୍ବର ମାସରେ କମିଟି ସମକ୍ଷରେ ସ୍ମାରକ ପତ୍ର ପ୍ରଦାନ କରିଥିଲେ ।

ଏହି କମିଟିର ସୁପାରିଶରେ ଓଡ଼ିଶା ପାଇଁ ଏକ ସବ୍ ପ୍ରଭିନ୍‌ସ ଗଠନ ଲାଗି ସୂଚନା ଦିଆଯାଇଥିଲା ; ମାତ୍ର ଏହାର କାର୍ଯ୍ୟାନୁଷ୍ଠାନରେ ବିଳମ୍ବ ଦେଖି ୧୯୨୦ ମସିହାରେ ଇମ୍ପିରିୟାଲ ଲେଜିସଲେଟିଭ କାଉନସିଲରେ କନିକା ରାଜା ଏକ ପ୍ରସ୍ତାବ ଆଣିଲେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଲାଗି । ମଧୁବାବୁଙ୍କ ପରାମର୍ଶକ୍ରମେ ସୁରେନ୍ଦ୍ରନାଥ ବାନାର୍ଜୀ ଏବଂ ବିହାରର ସଚ୍ଚିଦାନନ୍ଦ ସିଂହ ଏହାକୁ ମଧ୍ୟ ସମର୍ଥନ ଜଣାଇଲେ ।

**ଗାନ୍ଧିଜୀ—**

୧୯୨୧ରେ ଗାନ୍ଧିଜୀ ଗଞ୍ଜାମ ଜିଲ୍ଲା ପରିଦର୍ଶନରେ ପ୍ରଥମ ଥର ଆସିଥିଲେ । ଗାନ୍ଧିଜୀ ପୁନର୍ବାର ୧୯୨୭ରେ ଗଞ୍ଜାମ ପରିଦର୍ଶନରେ ଆସିଲେ । ଏହି ଅବସରରେ ଗାନ୍ଧିଜୀଙ୍କୁ ବିପୁଳ ସମ୍ବର୍ଦ୍ଧନା ଜଣାଇବାପାଇଁ ଯେଉଁ ଆୟୋଜନ ହୋଇଥିଲା, ଏଥିରେ ପରଶୁରାମ ସାମିଲ ହୋଇଥିଲେ । ଏହା ଥିଲା ପରଶୁରାମଙ୍କର ଗାନ୍ଧିଜୀଙ୍କୁ ଭେଟିବାପାଇଁ ଏକ ପରମ ସୁଯୋଗ । ଗାନ୍ଧିଜୀଙ୍କର ଦର୍ଶନ ଲାଭକରି ପରଶୁରାମ ଅତ୍ୟନ୍ତ ପ୍ରଭାବିତ ହୋଇଥିଲେ । ଗାନ୍ଧିଜୀଙ୍କର ସାନ୍ନିଧ୍ୟ, ପରଶୁରାମଙ୍କର ମାନସ ପଟରେ ଗଭୀର ରେଖାପାତ କରିଥିଲା । ସ୍ୱାଧୀନତା ସଂଗ୍ରାମର ଚିନ୍ତାଧାରା ଛଡ଼ା ଗାନ୍ଧିଜୀଙ୍କର ଆଧ୍ୟାତ୍ମିକ ସାଧନାର ଧାର୍ ଓ ବଗ୍ଭର ପରଶୁରାମଙ୍କୁ ବିଶେଷଭାବେ ଅନୁପ୍ରାଣିତ କରିଥିଲା । ତେଣୁ ଗାନ୍ଧିଜୀଙ୍କର ଏକ ସୁଦୃଶ୍ୟ ଫଟୋ ପରଶୁରାମଙ୍କ ବାସଭବନରେ ସ୍ଥାନ ପାଇଥିଲା ।

୧୯୨୧ରେ ଗାନ୍ଧିଜୀଙ୍କର ବ୍ରହ୍ମପୁର ଅବସ୍ଥାନ କାଳରେ ବ୍ରହ୍ମପୁରଠାରେ ଉତ୍କଳ ଓ ଆନ୍ଧ୍ର କଂଗ୍ରେସ କମିଟିର ସଭ୍ୟମାନେ ଓଡ଼ିଶା ପ୍ରଦେଶ ସୀମାନିର୍ଦ୍ଧାରଣ ସମ୍ପର୍କରେ ସମସ୍ୟାମାନ ଉପସ୍ଥାପିତ କରିଥିଲେ । ତେଣୁ ସେଦିନ ସାଧାରଣ ସଭାରେ ଗାନ୍ଧିଜୀଙ୍କ ଅଭିଭାଷଣରେ ଏହି ବକ୍ତବ୍ୟଟି ସ୍ଥାନ ପାଇଥିଲା ।

"କାଲି ସୂର୍ଯ୍ୟୋଦୟ ପୂର୍ବରୁ ଓଡ଼ିଆ ଓ ତେଲୁଗୁ ଗଣ୍ଡଗୋଳର ସମାଧାନ ହେବା ଉଚିତ । ସବଳ ଆନ୍ଧ୍ରମାନେ ଦୁର୍ବଳ ଓଡ଼ିଆମାନଙ୍କର ଦାବୀ ମାନି

Digitized by PPRACHIN, SOA

ନଥିଲା । ମାତ୍ର ଏହି ଆବେଦନ ପ୍ରତି ଆନ୍ଧ୍ର ନେତାମାନେ କର୍ଣ୍ଣପାତ କରି ନ ଥିଲେ ।

**ଚଳନ୍ତି ଲାଇବ୍ରେରୀ—**

୧୯୧୮ଠାରୁ ପରଶୁରାମ ଓଡ଼ିଆମାନଙ୍କ ଭିତରେ ଜାଗରଣ ଲାଗି ପ୍ରଚେଷ୍ଟା ଜାରି ରଖିଥିଲେ । ଏଥିରେ ପରଶୁରାମଙ୍କ ଦ୍ୱାରା ସଙ୍ଗଠିତ ବହୁ ଅନୁଷ୍ଠାନ ସକ୍ରିୟ ଭାଗ ନେଉଥିଲେ । ହରିହର ପଣ୍ଡାଙ୍କ ଛଡ଼ା ଆଠିକାର ନିରଞ୍ଜନ ପଟ୍ଟନାୟକ ଥିଲେ ଜଣେ ପ୍ରମୁଖ ନେତା ଦେଶମିଶ୍ରଣ ଆନ୍ଦୋଳନର । ସେ ବହୁ ପତ୍ରିକାର ଗ୍ରାହକ ଥିଲେ ଏବଂ ସବୁ ପତ୍ରିକାର ମୁଖ୍ୟ ତଥ୍ୟଗୁଡ଼ିକୁ ସେ ଅଲଗା ଫାଇଲମାନଙ୍କରେ ଅଠାରେ ଚପାଇ ରଖୁଥିଲେ । ଏହା ଥିଲା ଗୋଟିଏ ମୁଖ୍ୟ ତଥ୍ୟମାନଙ୍କର ଏକ ଗନ୍ତାଘର ।

ତେଣୁ ଏହି ଫାଇଲର ସାହାଯ୍ୟ ନେଇ ନିରଞ୍ଜନ ପଟ୍ଟନାୟକ ତାଙ୍କର ଘନିଷ୍ଠବନ୍ଧୁ ଓ ସହପାଠୀ ଚକ୍ରପାଣି ପ୍ରଧାନଙ୍କ ସହଯୋଗରେ ମାନ୍ଦ୍ରାଜଠାରେ ଅଧ୍ୟୟନ କରିବା ସମୟରେ ୧୯୧୮ ସାଲରେ ତଥ୍ୟ ଭିତ୍ତିକ 'The Oriya Movement' ବହି ପ୍ରଣୟନ କରିଥିଲେ । ୧୯୧୯ ସାଲରେ ଏହି ପୁସ୍ତକର ପ୍ରକାଶନ ପାଇଁ ଅର୍ଥ ପ୍ରଦାନ କରିଥିଲେ ମଧୁବାବୁ । ଓଡ଼ିଆମାନଙ୍କର ଦାବୀ ଉପସ୍ଥାପନ ଲାଗି ଏହା ଗୋଟିଏ ମୁଖ୍ୟ ପ୍ରାମାଣିକ ଗ୍ରନ୍ଥ ରୂପେ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ଲାଗି ଗଠିତ ବହୁ କମିଟି ସମକ୍ଷରେ ଉପସ୍ଥାପିତ ହୋଇଥିଲା । The Oriya Movement ବହି ଲଣ୍ଡନର ଗୋଲଟେବୁଲ ବୈଠକର ବିଭିନ୍ନ ଅଧିବେଶନରେ, ଓଡ଼ିଶା ପ୍ରଦେଶର ଗଠନ ଲାଗି ପ୍ରାମାଣିକ ଗ୍ରନ୍ଥ ରୂପେ ଦାଖଲ କରା ଯାଇଥିଲା ।

ଏଠାରେ ସୂଚାଇ ଦିଆ ଯାଉଅଛି ଯେ ନିରଞ୍ଜନ ପଟ୍ଟନାୟକଙ୍କର ଏହି ଫାଇଲରେ ବିଶିଷ୍ଟ ସମ୍ବାଦ ସଂରକ୍ଷିତ କରିବା ପ୍ରୟାସ ଥିଲା ଅତ୍ୟନ୍ତ ଅଭିନବ ଧରଣର । ତାଙ୍କର କେତେକ ବନ୍ଧୁ ଏହି ଖବର କାଗଜରୁ ସମ୍ବାଦକୁ କାଟି ଓ ଅନ୍ୟ ତଥ୍ୟ ସବୁ ବିଭିନ୍ନ ଫାଇଲରେ ଅଠା ମାରି ସଂରକ୍ଷିତ ରଖିବା ପ୍ରଣାଳୀକୁ ନାମକରଣ କରିଥିଲେ "କର୍ତ୍ତନ ଓ ଅଠାର କୌଶଳ" ବା "Scissor and Paste technique" ବୋଲି । ସମସ୍ତ ଓଡ଼ିଆ ଜାତି ଏଥିଲାଗି ନିରଞ୍ଜନ ପଟ୍ଟନାୟକଙ୍କର ପାଖରେ କୃତଜ୍ଞ ରହିବ । ଏହି ନିରଞ୍ଜନ ବାବୁଙ୍କର ସହ ପରଶୁରାମଙ୍କର ସମ୍ପର୍କ କେବଳ ଅତ୍ୟନ୍ତ ଘନିଷ୍ଠ ନ ଥିଲା, ଉଭୟଙ୍କର ସଙ୍ଘବଦ୍ଧ ପ୍ରଚେଷ୍ଟା, ଓଡ଼ିଆ ଜାଗରଣ ପାଇଁ ଏକ ନୂତନ ବାତାବରଣ ସୃଷ୍ଟି କରିଥିଲା ।

Digitized by PPRACHIN, SOA

## ଫିଲପ୍-ଡଫ୍-କମିଶନ

୧୯୨୪ ମସିହା ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ଭାରତର ଗଭର୍ଣ୍ଣର ଜେନେରାଲ, ଓଡ଼ିଶାର ରାଜ୍ୟଗୁଡ଼ିକର ପଲିଟିକାଲ ଏଜେଣ୍ଟ ଶ୍ରୀ ସି. ଏଲ୍. ଫିଲପ୍, ଆଇ. ସି. ଏସ. ଏବଂ ବେଲାରୀ ଜିଲ୍ଲାର କଲେକ୍ଟର ଶ୍ରୀ ଏସ୍. ଡି. ଡଫ୍ ଆଇ. ସି. ଏସ୍.ଙ୍କୁ ନେଇ ଦକ୍ଷିଣ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ଗୋଟିଏ କମିଶନ ଗଠନ କଲେ ୧ । ୧୦ । ୧୯ '୪ରେ । ସେହିବର୍ଷ ଡିସେମ୍ବର ମାସରେ କମିଶନ ଗଞ୍ଜାମ ଓ ଜୟପୁର ଅଞ୍ଚଳରେ ବୁଲି ସାକ୍ଷ୍ୟ ଗ୍ରହଣ କଲେ ।

ଏହା ଥିଲା ଏକ ଐତିହାସିକ ମୁହୂର୍ତ୍ତ । ସମସ୍ତ ଆସିକା ହାଇସ୍କୁଲର ଛାତ୍ର ଓ ଶିକ୍ଷକମାନେ ପରଶୁରାମଙ୍କର ପ୍ରେରଣାରେ ପୁରପଲ୍ଲୀରେ ଜନତାଙ୍କର ମଧ୍ୟରେ ଜାଗରୁକତା ସୃଷ୍ଟି କରିବାପାଇଁ ଲାଗିପଡ଼ିଲେ । ସେମାନେ ସାଇକେଲ କିମ୍ବା ପଦବ୍ରଜରେ ଛତ୍ରପୁର ଆଉ ଘୁମୁସର ଡିଭିଜନର ବହୁ ଅଞ୍ଚଳରେ ତାଙ୍କର କାର୍ଯ୍ୟ ଚାଲୁ ରଖିଲେ, ଯହିଁରେ ମୁଖ୍ୟ ଦାୟିତ୍ୱ ନେଇଥିଲେ ପରଶୁରାମ ।

ଏହି ଦେଶମିଶ୍ରଣ ଆଉ ସାକ୍ଷ୍ୟ ପ୍ରଦାନ କ୍ଷେତ୍ରରେ ପାରଳା, ଖଲ୍ଲିକୋଟ, ସୁରଙ୍ଗୀର ରାଜନ୍ୟବର୍ଗଙ୍କ ଛଡ଼ା ହରିହର ପଣ୍ଡା, ନିରଞ୍ଜନ ପଟ୍ଟନାୟକ, ମଧୁସୂଦନ ପାଣିଗ୍ରାହୀ, ଶରତ ଚନ୍ଦ୍ର ମହାପାତ୍ର ପ୍ରମୁଖ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

ଆସିକା ହାଇସ୍କୁଲଠାରେ ଫିଲପ୍ ଡଫ୍ କମିଶନଙ୍କୁ ଯେଉଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା, ତାର ପୁରୋଭାଗରେ ଥିଲେ ପରଶୁରାମ । ତାହାଙ୍କୁ ଯେଉଁ ଶିକ୍ଷକମାନେ ସହଯୋଗ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଦିବ୍ୟସିଂହ ପଟ୍ଟନାୟକ ଆଉ ସାଧୁଚରଣ ଦାସ । ଏହି ସମୟରେ ସାରା ସହର ଓ ଗ୍ରାମାଞ୍ଚଳରେ କାନ୍ଥବାଡ଼ ସବୁ ବିଭିନ୍ନ ପୋଷ୍ଟର ଓ ପ୍ରାଚୀର ପତ୍ରଦ୍ୱାରା ଆବୃତ୍ତ ରହିଥିଲା, ଯହିଁରେ ଦେଶମିଶ୍ରଣ ଲାଗି ଦାବୀ ଉପସ୍ଥାପିତ କରାଯାଇଥିଲା ।

ଏ ସମସ୍ତ ଅଳ୍ପ କିଛି ଦିନ ପ୍ରସ୍ତୁତିର ଫଳ ନୁହେଁ । ଏଥିଲାଗି ପରଶୁରାମଙ୍କୁ ବହୁ ଆଗରୁ ଜନଜାଗରଣ ଲାଗି କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିଥିଲା । ଏ ସମ୍ପର୍କରେ ଡାକ୍ତର ପଣ୍ଡାଙ୍କର ସଂକଳିତ ପରଶୁରାମଙ୍କ ଜୀବନ ଚରିତ 'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକରେ ଏଇ ଭଳି ଉଲ୍ଲେଖ ରହିଛି ।

### ଦେଶମିଶ୍ରଣ

"ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ନ ଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀ ଓ ପରବର୍ତ୍ତୀ କାଳରେ ପୁରୀ, କଟକ, ବାଲେଶ୍ୱର, ବଙ୍ଗଳାଶାସନରେ ରହିଥିଲା ବେଳେ ଦକ୍ଷିଣର ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ମାନ୍ଦ୍ରାଜ ପ୍ରଦେଶ ଅଧୀନରେ ଥିଲା ।

Digitized by PPRACHIN, SOA

ଏସବୁ ବିଚ୍ଛିନ୍ନ ଅଂଶଗୁଡ଼ିକୁ ଏକତ୍ର କରିବାପାଇଁ ୧୯୦୩ ସାଲରୁ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀର ଆରମ୍ଭ କରିଥିଲେ । ଏହି ଆନ୍ଦୋଳନକୁ ପରଶୁରାମ ସଜୀବ କରିଥିଲେ ।

ପରଶୁରାମଙ୍କର ନିର୍ଦ୍ଦେଶରେ ହାଇସ୍କୁଲର ଛାତ୍ରମାନେ ଦଳଦଳ ହୋଇ ଗାଁକୁ ଗାଁ ବୁଲି ପ୍ରଚାର କରିଥିଲେ । ଏହି ପ୍ରଚାରର ଦୁଆ ଥିଲା—

୧ । ଗଙ୍ଗାଠାରୁ ଗୋଦାବରୀ ଯାଏ
ଓଡ଼ିଆ ମୂଲକ ଥିଲା
ବଙ୍ଗାଳୀ, ବିହାରୀ, ହିନ୍ଦୀ, ମାନ୍ଦରାଜୀ
ଲାଗି ଏ ରାଇଜ ଗଲା ।

୨ । ଓଡ଼ିଆ ପୁଅ ଉଠରେ
ମାନ୍ଦ୍ରାଜୀ, ଆନ୍ଧ୍ର, ବଙ୍ଗାଳୀ, ବିହାରୀ
ସବୁ ବାଣ୍ଟି ନେଲେ ଆମ ଦେଶରେ
ଓଡ଼ିଆ ପୁଅ ଉଠରେ ।

୩ । ଆମେ ସମସ୍ତେ ଓଡ଼ିଆ,
ଓଡ଼ିଶା ସଙ୍ଗେ ମିଶିବାକୁ ଚାହୁଁ
ଦେଶମିଶ୍ରଣ ଆମର ଦାବୀ ।

୪ । ସବୁ ବିଚ୍ଛିନ୍ନ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ଗୁଡ଼ିକୁ
ଏକତ୍ର କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଢ଼ାଯାଉ ।

ଏଭଳି ପ୍ରଚାର ଦ୍ୱାରା ଗାଁ ଲୋକମାନେ ବହୁତ ନୂଆକଥା ଶିଖିଲେ । ଦେଶମିଶ୍ରଣ ସମ୍ପର୍କରେ ଯେତେ କମିଟି ଆସିବା ଆସିଲା ସବୁଥିରେ ଏଠା ଛାତ୍ରମାନେ ପ୍ରଚାର କରି ଲୋକମାନଙ୍କୁ ଉତ୍ସାହିତ କରିଥିଲେ । ଏଥିରେ ପରଶୁରାମଙ୍କର ପୂରା ସହଯୋଗ ରହିଥିଲା ।”

**ଉଦୟସିଂହ ପଟ୍ଟନାୟକ**—ଦେଶମିଶ୍ରଣ, ସମାଜ ସଂସ୍କାର, ପଶୁବଳି ନିରୋଧ ଆଦି କାର୍ଯ୍ୟକ୍ରମରେ ପରଶୁରାମଙ୍କର ମୁଖ୍ୟ ସହଯୋଗୀ ଥିଲେ, ତାଙ୍କର ପ୍ରାକ୍ତନ ଛାତ୍ର ଉଦୟସିଂହ ପଟ୍ଟନାୟକ (ଖୋର୍ଦ୍ଧା ହାଇସ୍କୁଲର ଛାତ୍ର) । ଉଦୟସିଂହ ବାବୁ ବି. ଏ. ୧୯୨୧ରେ ପାଶ କରି, ପାରଳାଖେମୁଣ୍ଡି ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ଦେଶମିଶ୍ରଣ ଆନ୍ଦୋଳନ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥାନ୍ତି । ସେ ସମୟରେ ପାରଳାଖେମୁଣ୍ଡି ହାଇସ୍କୁଲରେ ଛାତ୍ର ଥିବା ଅନନ୍ତ ରଥ (ପରବର୍ତ୍ତୀ କାଳରେ ବହୁ ହାଇସ୍କୁଲର ପ୍ରଧାନ ଶିକ୍ଷକ) ଉଦୟସିଂହ ବାବୁ ତଥା ପୂଜ୍ୟ ପରଶୁରାମ ବର୍ମାଙ୍କ ସମ୍ପର୍କରେ ଏପରି ଲେଖିଛନ୍ତି ।

“ଏହିପରି ପରିସ୍ଥିତିରେ ଓଡ଼ିଆ ସ୍ୱାଭିମାନୀ ଯୁବକ ରାଜା (ପରେ ମହାରାଜା) କୃଷ୍ଣଚନ୍ଦ୍ର ଗଜପତି ରେଭେନ୍ସା କଲେଜରୁ ଉତ୍ତୀର୍ଣ୍ଣ ଓଡ଼ିଆ ଗ୍ରାଜୁଏଟ

Digitized by PPRACHIN, SOA

ଶ୍ରୀ ହରୀସିଂହ ପଟ୍ଟନାୟକ, ଶ୍ରୀ ହୃଦାନନ୍ଦ ଦର୍ଶନଙ୍କୁ ଆଣିଲେ । ସ୍କୁଲରେ ଏମାନଙ୍କର ସହ ଓଡ଼ିଆ ଭାଷାରେ କଥୋପକଥନକୁ ଲକ୍ଷ୍ୟରେ 'ହରି' ଶବ୍ଦ ପରି ଆମେମାନେ ମନେକଲୁ ; କାରଣ ସେ ଯାଏଁ ଅନ୍ୟ ଶିକ୍ଷକଙ୍କଠାରୁ ଇଂରାଜୀ ଆଉ ତେଲୁଗୁ ଭାଷାରେ କଥାବାର୍ତ୍ତା ଶୁଣୁଥିଲୁ × ×

× × ହରୀସିଂହ ବାବୁ ଦେଶମିଶ୍ରଣ ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରୁଥିଲେ, ଆଉ ଆମେମାନେ ସ୍ୱେଚ୍ଛାସେବକ ରୂପେ କାମ କରୁଥିଲୁ । ବହୁ ଦିନ ଆଉ କିଛି ଗତ ହୋଇଯାଇଛୁ, ହରୀସିଂହ ବାବୁଙ୍କର ସହ ଏହି କାର୍ଯ୍ୟରେ ସମ୍ମିଳିତ ହୋଇ ।

ପାରଳାଖେମଣ୍ଡି ହାଇସ୍କୁଲରେ ମାତ୍ର ଦୁଇ କି ତିନି ବର୍ଷ ରହି ସେଠାରୁ ସେ ଚାଲିଗଲେ ଗଞ୍ଜାମ ଜିଲ୍ଲାର ଆଉ ଗୋଟିଏ ଦ୍ୱିଭାଷୀ ଅଞ୍ଚଳର ଜିଲ୍ଲା ବୋର୍ଡ଼ ପରିଚାଳିତ ଆସିକା ହାଇସ୍କୁଲକୁ । ଏହି ସ୍କୁଲରେ ମଧ୍ୟ ତେଲୁଗୁ ଶିକ୍ଷକଙ୍କର ଥିଲା ସଂଖ୍ୟା ଗରିଷ୍ଠତା । ୧୯୧୮ ମସିହାରେ ଆସିକା ହାଇସ୍କୁଲକୁ ଅଣାଗଲେ ସ୍ୱାଭିମାନୀ ହେଡ଼ମାଷ୍ଟର ପରଶୁରାମ ବର୍ମା । × ×

ଶ୍ରୀ ପରଶୁରାମ ବର୍ମା ଥିଲେ ଜଣେ ସଂସ୍କୃତଜ୍ଞ, ଶାସ୍ତ୍ରଜ୍ଞ, ଧର୍ମପରାୟଣ ତଥା ନିଃସ୍ୱାର୍ଥପର ବ୍ୟକ୍ତି । ଓଡ଼ିଆମାନେ ତେଲେଙ୍ଗାମାନଙ୍କ ଦ୍ୱାରା ଉପେକ୍ଷିତ ହେବା, ଓଡ଼ିଆ ଛାତ୍ରମାନେ ତେଲେଙ୍ଗା ଶିକ୍ଷକଙ୍କ ଦ୍ୱାରା ଅବହେଳିତ ହେବା, ଏବଂ ଓଡ଼ିଆ ଶିକ୍ଷକମାନଙ୍କ ସଂଖ୍ୟା ଲଘୁତା ବିଷୟ ତାଙ୍କର ହୃଦୟ ଓ ମନକୁ ଆଲୋଡ଼ିତ କରିଥିଲା × × ତେଣୁ ବର୍ମା ମହାଶୟ ପ୍ରସ୍ତୁତ କଲେ ଯୋଜନା ଯଦ୍ୱାରା ସର୍ବପ୍ରଥମେ ସ୍କୁଲଟି ହୋଇପାରେ ଗୋଟିଏ ଉନ୍ନୟନ କେନ୍ଦ୍ର । ଏହି ଯୋଜନା ଅନୁସାରେ ସ୍ଥାନ ପାଇଲେ, ଆମ୍ଭମାନଙ୍କ ଗୁରୁଦେବ ହରୀସିଂହ ବାବୁ, ଯେ ଥିଲେ ଜଣେ ପଣ୍ଡିତଶିକ୍ଷକ । ଅନ୍ୟ ଜଣେ ଥିଲେ ଶ୍ରୀ ସାଧୁଚରଣ ଦାସ । ଶ୍ରୀ ଦାସ ଥିଲେ ଓଡ଼ିଆ ଜାତିର ସ୍ରଷ୍ଟା ଶ୍ରୀ ଭଗୀରଥ ଦାସ (ପ୍ରଜାମିତ୍ର ପତ୍ରିକାର ସମ୍ପାଦକ)ଙ୍କର ଜ୍ୟେଷ୍ଠ ପୁତ୍ର । ଶ୍ରୀ ପଟ୍ଟନାୟକ ଓ ଶ୍ରୀ ଦାସ ହେଲେ, ଶ୍ରୀ ବର୍ମାଙ୍କର ଦକ୍ଷିଣ ଆଉ ବାମ ହସ୍ତ । ଏମାନେ ମିଶି ଆସିକା ହାଇସ୍କୁଲରେ ପ୍ରବେଶ କରାଇଲେ ଓଡ଼ିଆ ବାତାବରଣ । ଓଡ଼ିଆ ଶିକ୍ଷକ, ଓଡ଼ିଆ ଛାତ୍ର, ଓଡ଼ିଆ ଭାଷାର ଉନ୍ନତି, ଓଡ଼ିଆ ଜାତୀୟତାର ଭାବ ପ୍ରଭୃତି ଭର୍ତ୍ତି କଲେ ଏହି ସ୍କୁଲରେ । ଏହି ଜାତୀୟ ସଙ୍ଗଠନରେ ଆମ ଗୁରୁଦେବ ଶ୍ରୀ ପଟ୍ଟନାୟକଙ୍କର ଅବଦାନ ଚିରସ୍ମରଣୀୟ ।"

ପ୍ରକୃତରେ ସତ୍ୟବାଦୀ ବନ ବିଦ୍ୟାଳୟ ପରେ ବୋଧହୁଏ ଆସିକା ହାଇସ୍କୁଲ ଥିଲା ଦ୍ୱିତୀୟ ବିଦ୍ୟାଳୟ, ଯେଉଁଠାରେ ଶିକ୍ଷକ ଓ ଛାତ୍ର ଜାତୀୟ ଭାବରେ ପ୍ରେରିତ ଥିଲେ, ତେଣୁ ଦେଶମିଶ୍ରଣ ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ ସମୟରେ ସେମାନଙ୍କର ଯୋଗଦାନ ଥିଲା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

Digitized by PPRACHIN, SOA

ଏ ସମ୍ପର୍କରେ ଅଧିକ ତଥ୍ୟ ପ୍ରଦାନ କରିଛନ୍ତି ପୂର୍ବତନ ପ୍ରଧାନ ଶିକ୍ଷକ ସାଧୁଚରଣ ଦାସ ଏହିପରି—"ଓଡ଼ିଶା ପ୍ରଦେଶ ଗଠନରେ ଶ୍ରୀ ବିଦ୍ୟାସିଂହ ପଟ୍ଟନାୟକଙ୍କର ଅବଦାନ କମ୍ ନ ଥିଲା । ଆନ୍ଦୋଳନର ସନ୍ଧିସନ୍ଧ ମୂହୂର୍ତ୍ତରେ ଆମେ ଦୁହେଁ ଥିଲୁ ଆସ୍କା ହାଇସ୍କୁଲର ଶିକ୍ଷକ । ପ୍ରଧାନ ଶିକ୍ଷକ ପ୍ରାତଃ ସ୍ମରଣୀୟ ଶ୍ରୀ ପରଶୁରାମ ବର୍ମା ଥିଲେ ପଣ୍ଡିତ ଗୋପବନ୍ଧୁଙ୍କର ସହକର୍ମୀ । ପରଶୁରାମ ବର୍ମା, ଉତ୍କଳ ଗୌରବ ମଧୁସୂଦନଙ୍କୁ ଜୀବନର ଆଦର୍ଶ ଓ ଗୁରୁ ରୂପେ ଗ୍ରହଣ କରିଥିଲେ । ସେ ଓଡ଼ିଆମାନଙ୍କର ସ୍ୱାଭିମାନ ଓ ସ୍ୱାର୍ଥ ରକ୍ଷା କରିବାପାଇଁ ଅବିରତ ପରଶୁ ଚଳାଇ ପ୍ରତିପକ୍ଷକୁ ପରାଜିତ କରୁଥିଲେ । ୧୯୨୪ ମସିହାରେ ଭାରତ ସରକାରଙ୍କ ପକ୍ଷରୁ ଗଠିତ ଫିଲିପ୍-ଡଫ କମିଶନଙ୍କର ଗଞ୍ଜାମ ପରିଦର୍ଶନ । ଓଡ଼ିଶା ଗଠନ ଲାଗି ବିପୁଳ ଜନ ଉଦ୍ଦୀପନା ଜାଗ୍ରତ କରାଇବା ଲାଗି ଶ୍ରୀ ପରଶୁରାମଙ୍କର ନିର୍ଦ୍ଦେଶରେ ବିଦ୍ୟାସିଂହ ବାବୁ ସମସ୍ତ ସ୍କୁଲ ଶିକ୍ଷକ ଓ ଗ୍ରାମ୍ୟ ସମାଜ ସହ ପଦ-ବ୍ରଜରେ ଗଞ୍ଜାମର ପୁରପଲ୍ଲୀରେ ବୁଲି ଜନଜାଗରଣ ସୃଷ୍ଟି କରିଥିଲେ । ତାହା ଫଳରେ ଫିଲିପ୍-ଡଫ କମିଶନ ପ୍ରଦେଶ ଗଠନ ଲାଗି ଅନୁକୂଳ ମତ ପୋଷଣ କରିଥିଲେ । ତାହା ପ୍ରଦେଶ ଗଠନ ପାଇଁ ବଳିଷ୍ଠ ଭିତ୍ତିଭୂମି ଯୋଗାଇ ଥିଲା । ୧୯୩୧-୩୨ ମସିହାରେ ଓଡନେଲ କମିଟିର ପରିଦର୍ଶନ ବେଳେ ଅନୁରୂପ ବ୍ୟବସ୍ଥାମାନ ଗ୍ରହଣ କରାଯାଇଥିଲା ।

ଅନ୍ଧ୍ର କେଶରୀ ଶ୍ରୀ ପ୍ରକାଶମ୍‌ଙ୍କ ସହଯୋଗରେ ଆନ୍ଧ୍ରମାନଙ୍କର ବ୍ରହ୍ମପୁରକୁ ମାନ୍ଦ୍ରାଜ ପ୍ରଦେଶରେ ଅନ୍ତର୍ଭୁକ୍ତ କରିବା ପ୍ରଚେଷ୍ଟା ବିରୁଦ୍ଧରେ ପ୍ରକାଶମ୍‌ଙ୍କର ବ୍ରହ୍ମପୁର ଆଗମନ ବେଳେ ବିକ୍ଷୋଭ ପ୍ରଦର୍ଶନ ପାଇଁ ଆସିକାରୁ ବିକ୍ଷୋଭକାରୀଙ୍କୁ ମଟର ଓ ସାଇକେଲରେ, ବ୍ରହ୍ମପୁର ପଠାଇବାରେ ଶ୍ରୀ ପଟ୍ଟନାୟକ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରିଥିଲେ । ଏହା ଓଡ଼ିଶା ପ୍ରଦେଶ ଗଠନରେ ସହାୟକ ହୋଇଥିଲା ।"

ଏହି ଦୁଇଗୋଟି ଉଦ୍ଧୃତି (ଶ୍ରୀ ଅନନ୍ତ ରଥ ଓ ଶ୍ରୀ ଦାସଙ୍କର) ଖୋର୍ଦ୍ଧା ମହାବିଦ୍ୟାଳୟ ଦ୍ୱାରା ପ୍ରକାଶିତ 'ବିଦ୍ୟାସିଂହ ସ୍ମରଣିକା' ଗ୍ରନ୍ଥରୁ ଉଦ୍ଧାର କରା-ଯାଇଛି ।

ପ୍ରକୃତରେ ପରଶୁରାମଙ୍କର ସମସ୍ତ କାର୍ଯ୍ୟକ୍ରମରେ ବିଦ୍ୟାସିଂହ ବାବୁ ଜଣେ ଅନୁରାଗୀ ସହଯୋଗୀ ହିସାବରେ ଅକୁଣ୍ଠ ସହାୟତା ପ୍ରଦାନ କରୁଥିଲେ । ଏପରିକି ସମାଜ ସଂସ୍କାର ଆଉ ପଶୁବଳି ନିରୋଧରେ ତାଙ୍କର ଯୋଗଦାନ ସ୍ୱତଃସ୍ଫୂର୍ତ୍ତି ଥିଲା ।

### ଭଜ ଗୋବିନ୍ଦଂ

ଆସିକାର ଜନମାନସରେ ଆଉ ଗୋଟିଏ ସ୍ମରଣୀୟ ଚିତ୍ରପଟ । ଅତି ପ୍ରତ୍ୟୁଷରୁ ଆସିକାର ରାଜପଥରେ ବାହାରେ ଗୋଟିଏ ଅଭିନବ ଶୋଭାଯାତ୍ରା ।

Digitized by PPRACHIN, SOA

ପ୍ରଭାତର ପ୍ରଶାନ୍ତ ବାତାବରଣରେ ସଂଚରି ଥାଏ ମନ୍ଦ୍ର ଧ୍ୱନି । ଏହି ଶୋଭା-ଯାତ୍ରାରେ ସ୍ଲଲଥାଆନ୍ତି କିଛି ଛାତ୍ର, ଶିକ୍ଷକ ଆଉ ଧର୍ମପ୍ରାଣ ସହରବାସୀ । ସେମାନଙ୍କର ସୁଲଳିତ କଣ୍ଠସ୍ୱରରେ ଉଚ୍ଚାରିତ ହୁଏ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ଶାଶ୍ୱତ ସ୍ତୋତ୍ର—

ଭଜ ଗୋବିନ୍ଦଂ, ସ୍ମର ଗୋବିନ୍ଦଂ
ଗୋବିନ୍ଦଂ ଭଜ ମୂଢ଼ମତେ ।

ଏହା ସହିତ ଆବୃତ୍ତି ହୁଏ ବିଭିନ୍ନ ଶାସ୍ତ୍ର ଆଉ ଗ୍ରନ୍ଥର ସ୍ତୋତ୍ର, ପଦ୍ୟାବଳୀ । ଏହି କଣ୍ଠଧ୍ୱନି ମଧ୍ୟରେ ସାରା ପରିବେଶ ହୋଇଯାଏ ଯେପରି ଅଭିମନ୍ତ୍ରିତ ।

ମନ୍ଦିରେ ମନ୍ଦିରେ ବସେ ମାସିକ ବୈଠକ ଧର୍ମାଲୋଚନା ପାଇଁ । ସେଥିରେ ନିମନ୍ତ୍ରିତ ସାଧକମାନେ ଅଭିଭାଷଣ, ପ୍ରବଚନ ପ୍ରଦାନ କରନ୍ତି । ଏହା ଛଡ଼ା ସାମୟିକ ଭାବେ ହୁଏ ଅଷ୍ଟପ୍ରହରୀ ଭଜ ଗୋବିନ୍ଦଂ ଆବୃତ୍ତି ଓ ପାରାୟଣ । ପୁଣି ଅନୁଷ୍ଠିତ ହୁଏ ବାର୍ଷିକ ଅଧିବେଶନ । ଏହା ଆସିକାରେ ଏକ ନୂତନ ଧାର୍ମିକ ବାତାବରଣ ସୃଷ୍ଟି କରେ ।

ଏହା ଥିଲା ଗୌଡ଼ୀୟ ସଂକୀର୍ତ୍ତନ ପରମ୍ପରା ଅପେକ୍ଷା ଅଧିକ ଉଦାର ଓ ସର୍ବଜନ ଗ୍ରାହ୍ୟ । ଏଥିରେ ନ ଥିଲା କୌଣସି ମତବାଦର ସଂକୀର୍ଣ୍ଣତା କିମ୍ବା କିଛି ନିର୍ଦ୍ଦିଷ୍ଟ ପନ୍ଥା ଆଚରିବାର ବିଧିବିଧାନ । ତେଣୁ ଏହାର ପରିସର ଥିଲା ସର୍ବବ୍ୟାପୀ । ସେଥିପାଇଁ ଏହା ସହରବାସୀଙ୍କର ମନରେ ସୃଷ୍ଟି କରିଥିଲା ଏକ ଉଦ୍ଦୀପନା । ପ୍ରଭାତର ବାତାବରଣରେ ଭଜ ଗୋବିନ୍ଦଂ ସଂକୀର୍ତ୍ତନ ମାଧ୍ୟମରେ ଏକ ଆଧ୍ୟାତ୍ମିକ ଚେତନା ସୃଷ୍ଟି ହୋଇଥିଲା ସମସ୍ତ ସହରରେ ।

ଭଜ ଗୋବିନ୍ଦଂ କେବଳ ଜନଗଣ ମଧ୍ୟରେ ଆଦୃତ ହେଲା ନାହିଁ, ସୁଦୂର ପୁରପଲ୍ଲୀରେ ସ୍ୱତଃ ଏହି ପରମ୍ପରାର ଧାରା ପ୍ରସାରିତ ହେଲା । କ୍ରମେ ଆସିକାର ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଗଢ଼ିଉଠିଲା ଭଜ ଗୋବିନ୍ଦଂ ଦଳ । ଏହାର ଧାରା କ୍ଷିପ୍ର ଗତିରେ ବିସ୍ତାରିତ ହେଲା । ଏହି ଆଧ୍ୟାତ୍ମିକ ଚିନ୍ତାଧାରାରେ ବହୁ ଲୋକ ଅନୁପ୍ରାଣିତ ହେଲେ ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଏହି ଭଜ ଗୋବିନ୍ଦଂର ବାର୍ତ୍ତା ପ୍ରଥମେ ଆସିକା ନିକଟବର୍ତ୍ତୀ ଓଡ଼ିଆ ଗ୍ରାମର ଅଧିବାସୀମାନେ ଗ୍ରହଣ କରିଥିଲେ । ଏହାର ଜରିଆରେ ପରଶୁରାମ ଦେଶ ମିଶ୍ରଣର ବାର୍ତ୍ତା ମଧ୍ୟ ପ୍ରଚାର କରିଥିଲେ । ତେଣୁ ବିଭିନ୍ନ କମିଟି, କମିଶନ, ଆସିଲ୍‌ହେଲେ (ଯେପରିକି ଫିଲିପ୍‌-ଡଫ ଓ ଓଡନେଲ୍ କମିଟି) ଏହି ଭଜ ଗୋବିନ୍ଦଂ ଦଳ ସବୁ ସାକ୍ଷ୍ୟ ପ୍ରଦାନ ଓ ସଭା ଆୟୋଜନରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

Digitized by PPRACHIN, SOA

ବର୍ତ୍ତମାନ ଏହି 'ଭଜ ଗୋବିନ୍ଦଂ' ଭଜନ ମଣ୍ଡଳୀ, ଏପରି ଜନପ୍ରିୟ ହୋଇ ପଡ଼ିଛି ଯେ ଗଞ୍ଜାମରେ ପ୍ରତିଷ୍ଠିତ ଥିବା ସବୁ ସମ୍ପ୍ରଦାୟର ଭଜନ ମଣ୍ଡଳୀ 'ଭଜ ଗୋବିନ୍ଦଂ' ଭଜନ ମଣ୍ଡଳୀ ନାମରେ ନାମିତ ହୋଇଛି । ବର୍ତ୍ତମାନ ଗଞ୍ଜାମର ବହୁ ସ୍ଥାନରେ ଅଛି 'ଭଜ ଗୋବିନ୍ଦଂ' ମଣ୍ଡପ ।

ଏହି ସମ୍ପର୍କରେ ଡାକ୍ତର ରାଧାଚରଣ ପଣ୍ଡାଙ୍କର ଲିଖିତ ପରଶୁରାମଙ୍କର ଜୀବନ ଚରିତରେ ଏହିଭଳି ଉଲ୍ଲେଖ ଅଛି ।

'ଧର୍ମ ପ୍ରତି ପରଶୁରାମଙ୍କର ଅଟଳ ବିଶ୍ୱାସ ଥିଲା । ଏହି କାରଣରୁ ଲୋକମାନଙ୍କର ମଧ୍ୟରେ ଧର୍ମଭାବ ସଜାଗ ରଖିବା ପାଇଁ ସେ ପ୍ରଚେଷ୍ଟା କରିଥିଲେ । ସ୍କୁଲ ଛାତ୍ର ଓ ଶିକ୍ଷକଙ୍କୁ ନେଇ ପ୍ରତିଦିନ ସକାଳେ ଭଜ ଗୋବିନ୍ଦଂ ପଂକ୍ତି ସହିତ ଅନ୍ୟ ଧର୍ମର ବାଣୀ ପ୍ରଚାର କରୁଥିଲେ । ସେହି ପ୍ରଚାର ସମୟରେ ଛାତ୍ରମାନଙ୍କ କଣ୍ଠରୁ ଉଚାରିତ ଏହି ଭଜନାବଳୀ ଲୋକମାନଙ୍କୁ ଧର୍ମ ରସରେ ଉଦ୍ଦୀପିତ କରିଥିଲା ।'

## ପଶୁବଳୀ

ଗଞ୍ଜାମର ଦେବୀ ପୀଠମାନଙ୍କରେ ପଶୁବଳୀ ବ୍ୟାପକ ଆକାରରେ ପ୍ରଚଳିତ ଥିଲା । ବିଶେଷତଃ ଚୈତ୍ରମାସ ମଙ୍ଗଳବାର, ଦଶହରା, ଆଉ ସ୍ୱତନ୍ତ୍ର ପର୍ବ ପର୍ବାଣୀମାନଙ୍କରେ ଶହ ଶହ ସଂଖ୍ୟାରେ ଯେଉଁ ପଶୁମାନଙ୍କୁ ବଳୀ ଦିଆଯାଉଥିଲା, ସେହି ଦୃଶ୍ୟ ଥିଲା ଅତି ମର୍ମନ୍ତୁଦ । ପରଶୁରାମ ଏହି ହୃଦୟ ବିଦାରକ ଦୃଶ୍ୟ ଦେଖି ମର୍ମାହତ ହେଲେ । ତେଣୁ ଏହାର ମୂଳ ଉତ୍ସ ଖୋଜିବା ପାଇଁ ପ୍ରୟାସ କଲେ । ମାତ୍ର ଆଶ୍ଚର୍ଯ୍ୟର କଥା ବହୁ ଶାସ୍ତ୍ର ଓ ଗ୍ରନ୍ଥମାନଙ୍କରେ ପଶୁବଳୀ ବିରୁଦ୍ଧରେ ମତ ପ୍ରକାଶ କରାଯାଇଥିଲା ଓ ଏହି ମର୍ମରେ ନୀତିବାକ୍ୟ ଉଲ୍ଲେଖ କରାଯାଇଥିଲା । ଜୀବପ୍ରତି ଦୟା ଆଚରଣ କରିବାପାଇଁ ଅଗ୍ରାଧିକାର ଦିଆଯାଇଥିଲା ।

ସେହିସବୁ ଉକ୍ତିଗୁଡ଼ିକୁ ପରଶୁରାମ ସଙ୍କଳିତ କରି ଗୋଟିଏ କ୍ଷୁଦ୍ର ପୁସ୍ତିକା ଛପାଇଲେ ଏବଂ ଲୋକମାନଙ୍କ ମଧ୍ୟରେ ବାଣ୍ଟିଲେ । କ୍ରମେ ପଶୁବଳୀ ବିରୁଦ୍ଧରେ ଜନମତ ସୃଷ୍ଟି ହେଲା ।

ଆସିକା ସହରରେ ପ୍ରସିଦ୍ଧ ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଖମ୍ବେଶ୍ୱରୀ ଠାକୁରାଣୀ । ତାଙ୍କଠାରେ ଚୈତ୍ରମାସ ମଙ୍ଗଳବାର ଦିନ ବହୁ ସଂଖ୍ୟାରେ ବଳୀ ପଡ଼ୁଥାଏ ।

Digitized by PPRACHIN, SOA

କ୍ରମେ ପରଶୁରାମ କାଳୁ ଶିକ୍ଷକ, ଗୁରୁ ଓ ଜନସାଧାରଣଙ୍କ ସମର୍ଥନ ହାସଲ କରି ଆସିବାରେ ପଶୁବଳି ବିରୁଦ୍ଧରେ ଜନମତ ସୃଷ୍ଟି କରିପାରିଲେ । କ୍ରମେ ଏହା ବ୍ୟାପକ ଜନସମର୍ଥନ ଲାଭ କଲା । ତେଣୁ ପଶୁବଳି ପ୍ରାୟ ସ୍ୱତଃସ୍ଫୂର୍ତ୍ତି ଭାବରେ ବନ୍ଦ ହୋଇଗଲା । ଅସିବାରେ ପଶୁବଳିର ସପକ୍ଷବାଦୀ ନେତା ହେଲେ ସେଠାକାର ପ୍ରତିପତ୍ତିଶାଳୀ ଜମିଦାର କୋଣ୍ଡଲ ରାଓ । ପ୍ରତିବର୍ଷର ପରମ୍ପରା ପରି ଏଥର ମଧ୍ୟ କୋଣ୍ଡଲ ରାଓ ସମସ୍ତ ପ୍ରତିବାଦ ସତ୍ତ୍ୱେ ଦୃଢ଼ପ୍ରତିଜ୍ଞ ହେଲେ ନିର୍ଦ୍ଧାରିତ ମଙ୍ଗଳବାର ଦିନ ମାନସିକ କରିଥିବା ବୋଦାଟିକୁ ନେଇ ଠାକୁରାଣୀଙ୍କର ପାଖେ ବଳି ପକାଇବେ । ଏହା ସହରରେ ସୃଷ୍ଟି କରିଥିଲା ଉତ୍ତେଜନା । କାରଣ ଏ ମଧ୍ୟରେ ପ୍ରବଳ ଜନମତ ସୃଷ୍ଟି ହୋଇ ପଶୁବଳି ପୁରାପୁରି ବନ୍ଦ ହୋଇ ଯାଇଥିଲା । ପ୍ରତି ଚୈତ୍ର ମଙ୍ଗଳବାର ଦିନ ପରଶୁରାମ ସଂସ୍କାରବାଦୀ ଜନତାଙ୍କ ସହ ମନ୍ଦିର ସମ୍ମୁଖରେ ପହଞ୍ଚି ପଶୁବଳି ଦେବାକୁ ଆଣିଥିବା ଲୋକଙ୍କୁ ବୁଝାଇ ବାହୁଡ଼ାଇ ଦେଉଥିଲେ ।

ମାତ୍ର କୋଣ୍ଡଲ ରାଓଙ୍କର ଜିଦ୍ ଥିଲା ବଳି ପକାଇବାକୁ । ତାଙ୍କର ମଧ୍ୟ ଥିଲା ଧନ ଓ ଜନବଳ । ତେଣୁ ସେ ନିର୍ଦ୍ଧାରିତ ଦିନ ସମର୍ଥକଙ୍କର ଗହଳି ମଧ୍ୟରେ ଗୋଟିଏ ବିରାଟ ପଟୁଆରରେ ବୋଦାଟିକୁ ଧରି ଆସି ପହଞ୍ଚିଲେ । ବୋଦାର ଗଳାରେ ଶୋଭାପାଉଥାଏ ମନ୍ଦାରମାଳ । ମନ୍ଦିରରେ ପଟୁଆର ପହଞ୍ଚିବା ପରେ ପରଶୁରାମ ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତିମାନେ ସବିନୟ ନିବେଦନ ଜଣାଇଲେ ବୋଦାଟିକୁ ବଳିରେ ନ ଚଢ଼ାଇବାକୁ ।

ମାତ୍ର କୋଣ୍ଡଲ ରାଓଙ୍କର ଉତ୍ତର ଥିଲା, "ବହୁବର୍ଷ ଧରି ମୁଁ ମାନସିକ କରି ଏଠାରେ ବଳି ପକାଇ ଆସୁଛି । ସେଥିରେ ଠାକୁରାଣୀ ତୃପ୍ତି ଲାଭ କରୁଛନ୍ତି । ଏ ବର୍ଷ ମଧ୍ୟ ବଳି ପକାଇବାକୁ ମାନସିକ କରିଛି । ବଳି ନ ପକାଇଲେ ଠାକୁରାଣୀ ଅସନ୍ତୁଷ୍ଟ ହେବେ, ଏବଂ ମୋର ଅଶେଷ କ୍ଷତି ଘଟିବ ।"

ଏହାର ଉତ୍ତରରେ ପରଶୁରାମ କହିଲେ, "ଠାକୁରାଣୀ ମା'ଙ୍କର ସମାନ ଦୟା ଆଉ କରୁଣାର ପ୍ରତିମୂର୍ତ୍ତି । ସେ କ'ଣ କେବେ ନିଜେ ସୃଷ୍ଟି କରିଥିବା ପ୍ରାଣୀର ରକ୍ତଦାନ ଚାହାନ୍ତି ? ଆପଣ ଏଥିରୁ ନିବୃତ୍ତ ହୁଅନ୍ତୁ ।"

ବହୁ ବାଦାନୁବାଦ ପରେ ପରଶୁରାମ କହିଲେ, "ହେ ମହାଶୟ ! ଯଦି ଠାକୁରାଣୀଙ୍କର ପ୍ରକୃତ ରକ୍ତ ପାନ କରିବାକୁ ତୃଷ୍ଣା ରହିଛି, ତା'ହେଲେ ବୋଦାଟିକୁ ଠାକୁରାଣୀଙ୍କର ଗର୍ଭଗୃହରେ ଛାଡ଼ି ଦେବା । ଯଦି ଠାକୁରାଣୀଙ୍କର ଇଚ୍ଛା ଥିବ, ସେ ରକ୍ତ ପାନ କରିବେ ଆଉ ତାଙ୍କର ଅଭିଳାଷ ପୂର୍ଣ୍ଣ ହେବ ।"

Digitized by PPRACHIN, SOA

ଅବଶେଷରେ କୋଣ୍ଡ୍ରଲ ରାଓ ରାଜି ହେଲେ । ସିନ୍ଦୁର ବୋଳି ଆଉ ମନ୍ଦାରମାଳାରେ ସୁଶୋଭିତ ବୋଦାକୁ ପୂଜା ଅର୍ଚ୍ଚନାସହ ଠାକୁରାଣୀଙ୍କର ଗମ୍ଭୀରାରେ ଛାଡ଼ିଦିଆଗଲା ଆଉ ଦ୍ୱାର ରୁଦ୍ଧ ହେଲା ।

ପ୍ରାୟ ଘଣ୍ଟାଏ ବିତିଗଲା । ସେହି ଘଣ୍ଟାକ ଥିଲା ଅଶେଷ ପ୍ରତୀକ୍ଷାର ମୁହୂର୍ତ୍ତ । ଜନତା ଉଦ୍‌ବିଗ୍ନ । ସମସ୍ତ ପରିବେଶକୁ ଆକ୍ରାନ୍ତ କରି ରଖିଥିଲା ଏକ ସଂଶୟ ଓ ଆତଙ୍କର ଭାବ । ସଭିଙ୍କର ଆଖିରେ ଥିଲା ପ୍ରଶ୍ନବାଚୀର ଚିହ୍ନ । ଘଣ୍ଟାକ ବିତିଗଲା । ସମସ୍ତଙ୍କର ସମ୍ମତି ଆଉ ଉପସ୍ଥିତିରେ ଖୋଲାଗଲା ଗମ୍ଭୀରାର ଦ୍ୱାର । ଦୀର୍ଘକାଳ ଧରି ଆବଦ୍ଧ ରହି ଅଣନିଃଶ୍ୱାସୀ ହୋଇଯାଇଥିବା ବୋଦାଟି ହର୍ଷ ଧ୍ୱନି କରି ଗମ୍ଭୀରାରୁ ବାହାରକୁ ଆସିଥିଲା ସମ୍ପୂର୍ଣ୍ଣ ଅକ୍ଷତ ଅବସ୍ଥାରେ ।

କୋଣ୍ଡ୍ରଲ ରାଓଙ୍କର ମନରେ ପରିବର୍ତ୍ତନ ହେଲା । ଦ୍ୱିଧା ଭାବ କଟିଗଲା । ସେ ବୋଦାଟିକୁ ବଳି ନ ପକାଇବାକୁ ରାଜି ହେଲେ । ଏହା ଥିଲା ଉଭୟ ପକ୍ଷର ବିଜୟ । ପରାଜିତ ମନୋବୃତ୍ତିର ସ୍ଥାନ କାହିଁ ?

ତା'ପରେ ଏକ ବିରାଟ ପଟୁଆରରେ ଢୋଲ ସହ କୋଣ୍ଡ୍ରଲ ରାଓଙ୍କୁ ନିଆଯାଇ ସମ୍ବର୍ଦ୍ଧନା ପ୍ରଦାନ କରାଗଲା । ସମ୍ମିଳିତ ଜନତାଙ୍କର କଣ୍ଠରେ ପ୍ରତିଧ୍ୱନିତ ହେଲା—

"କୋଣ୍ଡ୍ରଲ ରାଓ ଦୟା କଲେ
ବୋଦା ନ ମାରି ଛାଡ଼ିଦେଲେ ।"

ଏହାର ପ୍ରଭାବ ଥିଲା ଅତି ସୁଦୂର ପ୍ରସାରୀ । ସେହିଦିନଠାରୁ ଆସିକାର ଶମ୍ଭେଶ୍ୱରୀ ଠାକୁରାଣୀଙ୍କର ପୀଠରେ ବଳିପ୍ରଥା କେବଳ ବନ୍ଦ ହେଲା ନାହିଁ, ଏହାର ପ୍ରଭାବ ସମସ୍ତ ନିକଟବର୍ତ୍ତୀ ଅଞ୍ଚଳକୁ ଗଲା । ତେଣୁ ପରଶୁରାମ, ସଂସ୍କାର-ବାଦୀ ବର୍ଗଙ୍କ ସହ ଯାଇ ନିକଟବର୍ତ୍ତୀ ଦେବୀପୀଠମାନଙ୍କରେ ବଳିପ୍ରଥା ବନ୍ଦ କରାଇଲେ । ଏହା ଥିଲା ୧୯୨୫-୨୬ ମସିହାର ଘଟଣା । ପରଶୁରାମ ଆସିକାରୁ ୧୯୨୮ ସାଲରେ ରସଲକୁଣ୍ଡାକୁ ବଦଳି ହେଲେ ।

ସେତେବେଳେ ଗଞ୍ଜାମର ପ୍ରସିଦ୍ଧ ଜନନାୟକ ଶଶୀଭୂଷଣ ରଥ ପରଶୁରାମଙ୍କର ସଂସ୍ପର୍ଶରେ ଆସି ଏହି ଭାବରେ ପ୍ରଭାବିତ ହେଲେ । ସେ ଗଞ୍ଜାମର ପ୍ରସିଦ୍ଧ ଦେବୀପୀଠ ତାରାତାରିଣୀ ଆଉ ସୋରଡ଼ାର କନ୍ଧୁଣୀ ଦେବୀଙ୍କର ଆସ୍ଥାନରୁ ପଶୁବଳିପ୍ରଥା ଉଠାଇବାପାଇଁ ୧୯୩୨ ମସିହାରେ ପ୍ରୟାସ କଲେ ।

ପରଶୁରାମ ଏଥିରେ ସହଯୋଗ କରିଥିଲେ । ଶଶୀଭୂଷଣ ରଥଙ୍କର ଏହି ଉଦ୍ୟମରେ ସମସ୍ତ ଗଞ୍ଜାମରୁ ପଶୁବଳି ପ୍ରଥା ଲୋପ ପାଇଲା । ୧୯୩୨ ସାଲରେ ସମଗ୍ର ଭାରତରେ ଏହା ଥିଲା ଅଭିନବ ସଂସ୍କାରବାଦୀ ପ୍ରୟାସ ।

Digitized by PPRACHIN, SOA

ବହୁ କାଳ ପରେ ପ୍ରାୟ ଅଶୀ ଦଶକରେ ଓଡ଼ିଶାର ମହତ୍ତାବ ଉତ୍ତର ଓଡ଼ିଶାର ଅନେକ ଦେବୀ ପୀଠରୁ ପଶୁବଳି ଉଠାଇବା ପାଇଁ ପ୍ରଚେଷ୍ଟା କରିଥିଲେ ।

ଶ୍ରୀଯୁକ୍ତ ରାଧାଚରଣ ପଣ୍ଡାଙ୍କର ରଚିତ ପରଶୁରାମଙ୍କ ଜୀବନ ଚରିତ 'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକରେ ପଶୁବଳି ସମ୍ପର୍କରେ ଏଭଳି ଉଲ୍ଲେଖ ଅଛି —

"ଖମ୍ବେଶ୍ୱରୀଙ୍କର ପଶୁବଳି ଉଠିଗଲା :

ଅସ୍କାରେ ଖମ୍ବେଶ୍ୱରୀଙ୍କର ଦେଉଳ ନିକଟରେ ପ୍ରତିବର୍ଷ ପଶୁବଳି ଦେବା ଏକ ବାଧ୍ୟ ଥିଲା । ପରଶୁରାମ ଏହି ପଶୁବଳି ବିରୁଦ୍ଧରେ ଏକ ପତ୍ରିକା ପ୍ରକାଶିତ କରି ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ପଶୁବଳି ବିରୁଦ୍ଧରେ ମନୋଭାବ ସୃଷ୍ଟି କରିଥିଲେ । ମାତ୍ର କିଛି ଲୋକ ଏହାର ବିରୋଧ କରୁଥିଲେ । ଏମାନଙ୍କ ମଧ୍ୟରେ ଥିଲେ କୋଣ୍ଡଲ ରାଓ ନାମରେ ଜଣେ ତେଲୁଗୁ ଭଦ୍ରବ୍ୟକ୍ତି ।

ସେ କୋଣ୍ଡଲ ରାଓ ବୋଦାଟିଏ ଆଣିଲେ ବଳିପକାଇବା ପାଇଁ । ଏହାର ପ୍ରତିରୋଧରେ ଗ୍ରାମ ଶିକ୍ଷିତ ଜନସମାଜ ସହ ପରଶୁରାମ ଦେଉଳ ନିକଟରେ ପହଞ୍ଚି ଏହାର ପ୍ରତିବାଦ କଲେ । ଆଲୋଚନା ପରେ ବୋଦାଟିକୁ ଠାକୁରାଣୀଙ୍କର ଗମ୍ଭୀରାରେ ରଖି ଦିଆଗଲା । ଉଦ୍ଦେଶ୍ୟ ଥିଲା ଠାକୁରାଣୀ ଯଦି ଚାହିଁବେ ରକ୍ତ ପାନ କରିବେ । ଏକ ଘଣ୍ଟା ପରେ ଦେଉଳ ଦୁଆର ଖୋଲିଦିଆଗଲା ଓ ବୋଦାଟି ଅକ୍ଷତ ଅବସ୍ଥାରେ ଫେରି ଆସିଲା । ଏହା ପରେ କୋଣ୍ଡଲ ରାଓଙ୍କର ମନରେ ପରିବର୍ତ୍ତନ ଆସିଲା ।

ଏହା ପରେ କୋଣ୍ଡଲ ରାଓଙ୍କୁ ନେଇ ଗୋଟିଏ ଶୋଭାଯାତ୍ରା ବାହାରିଲା । ଏହି ଶୋଭାଯାତ୍ରାରେ ପିଲାମାନେ ଏପରି ଗୀତ ଗାଉଥିଲେ ।

'କୋଣ୍ଡଲ ରାଓ ଦୟା କଲେ,
ବୋଦା ନ ମାରି ଛାଡ଼ିଦେଲେ ।'

ଏହାର ପ୍ରଭାବରେ ଅସ୍କା ଅଞ୍ଚଳର ଠାକୁରାଣୀ ଦେଉଳମାନଙ୍କରୁ ବଳିପ୍ରଥା ଉଠିଗଲା । ସୋରଡ଼ାରେ ମଧ୍ୟ ବନ୍ଦ ହେଲା । ଅବଶେଷରେ ଜନଜାଗରଣ ହୋଇ ତାରତାରିଣୀ ଦେଉଳରେ ଚୈତ୍ର ମଙ୍ଗଳବାରରେ ପଡ଼ୁଥିବା ବଳି ପ୍ରଥା ମଧ୍ୟ ବନ୍ଦ ହୋଇଗଲା । ଏହା ଦ୍ୱାରା ପରଶୁରାମଙ୍କର ଯଶ ଦିନକୁ ଦିନ ବୃଦ୍ଧି ହେଲା ।"

## ଥିଓସଫିକାଲ ସୋସାଇଟି

ଉକ୍ତଗୋବିନ୍ଦଂ ଅନୁଷ୍ଠାନ ଛଡ଼ା ସେ ଆଧୁନିକ ଯୁକ୍ତିସମ୍ପନ୍ନ ଧର୍ମଭାବଦ୍ୱାରା ଉଚ୍ଚଶିକ୍ଷିତ ସମାଜକୁ ଅନୁପ୍ରାଣିତ କରିବାକୁ ଚେଷ୍ଟା କରିଥିଲେ । ଏହି ସମୟରେ ଭାରତରେ ଏକ ବିଜ୍ଞାନସମ୍ମତ ଆଧ୍ୟାତ୍ମିକ ଭାବ ସୃଷ୍ଟି କରିବା ଲାଗି ପ୍ରତିଷ୍ଠିତ

Digitized by PPRACHIN, SOA

ଥିଓସଫିକାଲ ସୋସାଇଟି ବା ବ୍ରହ୍ମବିଦ୍ୟା ସମିତି ଅତ୍ୟନ୍ତ ଜନପ୍ରିୟତା ହାସଲ କରିଥିଲା । ଏହି ବିଶ୍ୱ ସଙ୍ଗଠନର ପ୍ରତିଷ୍ଠାତ୍ରୀ ଥିଲେ ରୁଷୀୟ ବିଦୁଷୀ ମାଡାମ୍ ବ୍ଲାଭସ୍କି । ଭାରତରେ ଏହାର ପୂର୍ଣ୍ଣ ଉଦ୍ଯୋକ୍ତ୍ରୀ ଥିଲେ ଶ୍ରୀମତୀ ଆନି ବେଶାନ୍ତ । ଶ୍ରୀମତୀ ବେଶାନ୍ତ ଧର୍ମଭାବ ଛଡ଼ା ଭାରତରେ ଜାତୀୟତାବାଦ ପ୍ରଚାରଣର ମୁଖ୍ୟ ସମର୍ଥକ ଥିଲେ । ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠାରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଅଂଶ ଥିଲା । ପରଶୁରାମ ବ୍ରହ୍ମବିଦ୍ୟା ସମିତିର ଏକ ଶାଖା ଆସିକାରେ ପ୍ରତିଷ୍ଠିତ କରାଇ ସାପ୍ତାହିକ ବୈଠକମାନ ଅନୁଷ୍ଠିତ କରିଥିଲେ । ଏହି ବୈଠକରେ ଉଚ୍ଚ ଶିକ୍ଷାପ୍ରାପ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଆଧ୍ୟାତ୍ମିକ ଭାବର ପ୍ରସାର କରାଇବାରେ ପରଶୁରାମ ସମର୍ଥ ହୋଇଥିଲେ ।

ଏହି ସମସ୍ତ କାର୍ଯ୍ୟାବଳୀ ସମ୍ପର୍କରେ 'ଲକ୍ଷେ ଗୁରୁଙ୍କର ଗୁରୁ' ପୁସ୍ତକରେ ଡାକ୍ତର ରାଧାଚରଣ ପଣ୍ଡା ନିମ୍ନଲିଖିତ ଭାବେ ଉଲ୍ଲେଖ କରିଛନ୍ତି ।

**ଥିଓସଫି ସଙ୍ଘ—**

"ପରଶୁରାମ ବହୁ ଗ୍ରନ୍ଥ ପଢ଼ନ୍ତି । ମୁଁ ଦେଖିଥିବା ତାଙ୍କ ଆଲମିରାରେ ଇଂରାଜୀ ପୁସ୍ତକଗୁଡ଼ିକର ପ୍ରତ୍ୟେକ ପୃଷ୍ଠାକୁ ସେ ତନ୍ନ ତନ୍ନ ପାଠକରି ତହିଁର କହୁ ଅଂଶରେ ନାଲି ନେଳୀ ପେନସିଲରେ ଗାର କାଟି ରଖନ୍ତି । ଦର୍ଶନ ଓ ଧର୍ମ ଗ୍ରନ୍ଥ ପୁସ୍ତକ ପାଠକରି ଏଠାରେ ସେ ଥିଓସଫି ସଙ୍ଘ ଗଢ଼ିଥିଲେ । ଏଠାରେ ବଶିଷ୍ଟ ବ୍ୟକ୍ତିମାନଙ୍କୁ ଏହି ସଙ୍ଘର ସଭ୍ୟ କରିନେଲେ ।

**ସାକ୍ଷରତା ପ୍ରଚାର—**

'Each one teach one' ପ୍ରତ୍ୟେକ ଲୋକ "ଉଚ୍ଚ ପାଠ" ପଢ଼ିବା ଦରକାର ନାହିଁ । କିନ୍ତୁ ଆଖି ଥାଇ ଅନ୍ଧ ହେବା ମଧ୍ୟ ଉଚିତ ନୁହେଁ । ସେଥିପାଇଁ ପ୍ରତ୍ୟେକ ଲୋକ ଲେଖିପଢ଼ି ଜାଣନ୍ତୁ; ଖଣ୍ଡିଏ ଖବରକାଗଜ ପଢ଼ିବା ଭଳି ଜ୍ଞାନ ଲାଭ କଲେ ହେଲା । ଏଇଥିପାଇଁ ପରଶୁରାମ ଆସିକା ସହର ତଥା ନିକଟସ୍ଥ ପୂରପଲ୍ଲୀରେ ସାକ୍ଷରତା ପ୍ରଚ୍ଛନ୍ନ ଓ ପ୍ରସାର ଆରମ୍ଭ କରିଥିଲେ । ଏଥିରେ ଶିକ୍ଷକ ଓ ଛାତ୍ରମାନେ ସହଯୋଗ କରିଥିଲେ ।

ପଲ୍ଲୀର ସ୍ତ୍ରୀ, ପୁରୁଷ, ପୁଅ ଓ ଝିଅମାନେ ଏହି ଲେଖି ପଢ଼ି ଜ୍ଞାନ ଲାଭ ପାଇଁ ଲକ୍ଷ୍ନୌଠାରେ ଜଣେ ଆମେରିକୀୟ ମହିଳା ଓ୍ୱେଲଥି ଫିସର (Wealthy Fisher) ଏକାନବେ ବର୍ଷରେ ମଧ୍ୟ ଘରେ ଘରେ ବୁଲି ଶିକ୍ଷା ପ୍ରସାର କରନ୍ତି । ସେଥିପାଇଁ ସେ ବିଶ୍ୱ ଦରବାରରେ ପୂଜା ପାଇଛନ୍ତି ।

Digitized by PPRACHIN, SOA

**ସଙ୍ଗଠନ ଓ ସଦ୍‌ଭାବ—**

ସଙ୍ଗଠନ ଓ ସଦ୍‌ଭାବ ପ୍ରଚାର କରି ସ୍ଥାନୀୟ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟ ମମତା ସୃଷ୍ଟି କରିବା ଦିଗରେ ପରଶୁରାମ ବହୁତ କାର୍ଯ୍ୟ କରିଥିଲେ । ଦୀର୍ଘ ଦଶବର୍ଷର ଆସିକା ଅବସ୍ଥାନ କାଳରେ ସେ ଅତି ଲୋକପ୍ରିୟ ହୋଇଥିଲେ । ପରଶୁରାମ ଆସିକାରେ ଏହିଭଳି ସଙ୍ଘ ଓ ସଙ୍ଗଠନ ସ୍ଥାପନ କରି ଏହି ଅଞ୍ଚଳରେ ଲୋକଙ୍କ ପାଇଁ ବହୁ ଉପକାର ସାଧନ କରିଛନ୍ତି । ଏହି କ୍ଷେତ୍ରର ଅଧିବାସୀମାନେ ନୂତନ ଜୀବନ ଯେ ପାଇଛନ୍ତି ଏଥିରେ ସନ୍ଦେହ ନାହିଁ ।”

ଏ ଥିଲା ଉତ୍କଳର ପଣ୍ଡାଙ୍କର ବକ୍ତବ୍ୟ ପରଶୁରାମଙ୍କର ଆସିକା ଅବସ୍ଥାନ ସମ୍ପର୍କରେ ।

ଏ ସମସ୍ତ ଛଡ଼ା ପରଶୁରାମ ଅସ୍ପୃଶ୍ୟତା ନିବାରଣ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସେ ସ୍କୁଲର ଶିକ୍ଷକ ଓ ଗ୍ରୁତଙ୍କର ସହାୟତାରେ ହରିଜନ ବସ୍ତିମାନଙ୍କରେ ନୈଶ ସ୍କୁଲମାନ ଖୋଲି ଶିକ୍ଷାଦାନର ବ୍ୟବସ୍ଥା ଗ୍ରହଣ କରିଥିଲେ । ଏଥିରେ ସ୍କୁଲ ଶିକ୍ଷକ ଦିବ୍ୟସିଂହ ପଟ୍ଟନାୟକ ଓ ଅନ୍ତର୍ଯ୍ୟାମୀ ମହାପାତ୍ର ସହାୟତା କରିଥିଲେ ।

ଅସ୍ପୃଶ୍ୟତା ନିବାରଣ ଲାଗି ଦିବ୍ୟସିଂହ ପଟ୍ଟନାୟକ ‘ହରିଜନ ନନ୍ଦ’ ନାମରେ ଏକ ପୁସ୍ତକ ପ୍ରଣୟନ କରିଥିଲେ, ଯାହା ସ୍କୁଲମାନଙ୍କରେ ପାଠ୍ୟ ପୁସ୍ତକ ରୂପେ ଗୃହୀତ ହୋଇଥିଲା । ଏ ସମସ୍ତ କାର୍ଯ୍ୟରେ ପରଶୁରାମଙ୍କର ମାର୍ଗଦର୍ଶକର ଭୂମିକା ଥିଲା ।

ପ୍ରକୃତରେ ପରଶୁରାମଙ୍କର ଆସିକାଠାରେ ଦଶବର୍ଷର ଅବସ୍ଥାନ ଥିଲା, ତାଙ୍କ ଜୀବନର ଉଜ୍ଜ୍ୱଳତମ ଦଶନ୍ଧି । ଏହି ସମୟରେ ତାଙ୍କୁ ମିଳିଥିଲା ଅପୂର୍ବ ସୁଯୋଗ ଦେଶମାତୃକାର ସେବାରେ ନିଜକୁ ନିୟୋଜିତ କରିବା ପାଇଁ ।

Digitized by PPRACHIN, SOA

# ଭଞ୍ଜନଗର (ରସଲକୁଣ୍ଡା)ରେ ଅବସ୍ଥାନ
## (୧୯୨୮ରୁ ୧୯୩୮)

### ଭଞ୍ଜନଗର

ଭଞ୍ଜନଗର ସେ ଯୁଗରେ ରସଲକୁଣ୍ଡା ନାମରେ ପରିଚିତ ଥିଲା । ଏହି ସହରଟିର ଉଦ୍ଭବ ହୋଇଥିଲା ଗୋଟିଏ ସାମରିକ ଛାଉଣିରୁ, ଯାହା ନାମିତ ହୋଇଥିଲା ସାମରିକ ବାହିନୀର ମୁଖ୍ୟ ରସେଲ ସାହେବଙ୍କ ନାମରେ । ଏହି ସହରଟି ଗଢ଼ି ଉଠିଥିଲା ଗୋଟିଏ ପାହାଡ଼ର ଚତୁର୍ଦ୍ଦିଗରେ ଆଉ ତେଲୁଗୁ ଭାଷାରେ ପାହାଡ଼କୁ କୁହାଯାଏ କୋଣ୍ଡା ବୋଲି । ଏହି ରସଲକୁଣ୍ଡା ଥିଲା ଐତିହାସିକ ଭଞ୍ଜ ରାଜ୍ୟର ରାଜଧାନୀ ମଧୁରମାଳିନୀ କୁଳାଡ଼ର ସମୀପବର୍ତ୍ତୀ ସହର । ଏହି ରସଲକୁଣ୍ଡାରୁ ସଞ୍ଚାଳିତ ହୋଇଥିଲା ଦୁର୍ଦ୍ଧର୍ଷ ଭଞ୍ଜ ସୈନ୍ୟ ବାହିନୀ ବିରୁଦ୍ଧରେ ବ୍ରିଟିଶମାନଙ୍କର ସଂଗ୍ରାମ ।

ଏହି ରସଲକୁଣ୍ଡା ଥିଲା ଫୁଲବାଣୀ, କନ୍ଧମାଳ, ମାଳଅଞ୍ଚଳର ଦ୍ୱାର ଦେଶରେ । ତେଣୁ ଏହାର ଅବସ୍ଥିତି ଥିଲା ତାତ୍ପର୍ଯ୍ୟପୂର୍ଣ୍ଣ । ଘୁମୁସର ଭଞ୍ଜନଗର ମୁଖ୍ୟ କାର୍ଯ୍ୟାଳୟ ଏଠାରେ ସ୍ଥାପିତ ହୋଇଥିଲା । ଏହା ଥିଲା ଖ୍ରୀଷ୍ଟିୟାନ ମିସନାରୀ-ମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ, ଯେଉଁଠାରୁ ମାଳ ଅଞ୍ଚଳର ମିସନାରୀମାନଙ୍କର କାର୍ଯ୍ୟ ପରିଚାଳିତ ହେଉଥିଲା । ଖ୍ରୀଷ୍ଟିୟାନମାନଙ୍କର ସୁନିର୍ଦ୍ଦିଷ୍ଟ ବସ୍ତି ଥିଲା ଏହି ସହରରେ । ମୁସଲମାନ ସଂପ୍ରଦାୟର କୀର୍ତ୍ତି ସହିତ ଥିଲା ଏଠାରେ ମସ୍‌ଜିଦ । ଆସିକା ତୁଳନାରେ ରସଲକୁଣ୍ଡା ଅଧିବାସୀ ମୁଖ୍ୟତଃ ଓଡ଼ିଆ ଥିଲେ ମଧ୍ୟ ସରକାରୀ କର୍ମଚାରୀ ଓ ଓକିଲମାନେ ଅଧିକାଂଶ ଥିଲେ ତେଲୁଗୁ ଭାଷୀ । ସଂସ୍କୃତି ସମ୍ପନ୍ନ ଭଞ୍ଜସାହିତ୍ୟ ସହିତ ପ୍ରାଚୀନ ସାଂସ୍କୃତିକ ପରମ୍ପରାର ପ୍ରଭାବ ଏଠାରେ ଅନୁଭୂତ ହେଉଥିଲା ।

ଆସିକା ଅପେକ୍ଷା ରସଲକୁଣ୍ଡା ଥିଲା ଅଧିକ ମିଶ୍ରିତ ସଂସ୍କୃତିର ପରିସର ଯହିଁରେ ବାତାବରଣ ଥିଲା ଅଧିକ ଉଦାର ଆଉ ଯେଉଁଠାରେ ସାଂପ୍ରଦାୟିକ ସଦ୍‌ଭାବ ଓ ସୌହାର୍ଦ୍ଦ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା ।

ଏଠାରେ ସ୍କୁଲଟି ମାଧ୍ୟମିକ ସ୍ତରରେ ପ୍ରଥମେ ୧୮୮୫ରେ ସ୍ଥାପିତ ହୋଇ କାଳକ୍ରମେ ଶତାବ୍ଦୀର ଶେଷବେଳକୁ ହାଇସ୍କୁଲରେ ପରିଣତ ହୋଇଥିଲା । ଏହାର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ରାମ ବ୍ରହ୍ମା । ତାଙ୍କ ପରେ ଜଣେ ତେଲୁଗୁ ଭଦ୍ରବ୍ୟକ୍ତିଙ୍କର ପ୍ରଧାନ ଶିକ୍ଷକ ଭାବେ ସ୍ୱଳ୍ପକାଳ ଅବସ୍ଥାନ ପରେ ପରଶୁରାମ ପ୍ରକୃତରେ ଥିଲେ ଏହି ସ୍କୁଲର ଦ୍ୱିତୀୟ ପ୍ରଧାନ ଶିକ୍ଷକ । ଏହାଙ୍କର କାର୍ଯ୍ୟକାଳ ୧୯୨୮ରୁ ୧୯୩୮ ପର୍ଯ୍ୟନ୍ତ ଥିଲା ।

Digitized by PPRACHIN, SOA

**ବିଚ୍ଛିନ୍ନାଞ୍ଚଳ ମିଶ୍ରଣ—**

ଅବଶ୍ୟ ପରଶୁରାମଙ୍କର ଭଞ୍ଜନଗରରେ ଯୋଗଦାନ ବେଳକୁ ପରିସ୍ଥିତିର ଯଥେଷ୍ଟ ଉନ୍ନତି ଘଟିଥିଲେ ମଧ୍ୟ ତାଙ୍କର ଭଞ୍ଜନଗର ଅବସ୍ଥାନ ସମୟଟି ଥିଲା ଓଡ଼ିଶା ପ୍ରଦେଶ ଗଠନର ମୁଖ୍ୟ ସଂଗ୍ରାମ ବେଳ । ୧୯୨୮ରେ ସାଇମନ କମିସନକୁ ମଧୁବାବୁଙ୍କର ପରାମର୍ଶରେ ପାଟନାଠାରେ ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା ସ୍ୱାଗତ ଜଣାଇବା ପରେ ସ୍ୱତନ୍ତ୍ର ପ୍ରଦେଶ ଗଠନରର ପ୍ରଚେଷ୍ଟାଟି ତ୍ୱରାନ୍ୱିତ ହୋଇଥିଲା । ପାରଳା ମହାରାଜାଙ୍କର ବିଳାତରେ ଗୋଲଟେବୁଲ ବୈଠକରେ ଯୋଗଦାନ ପରେ ୧୯୩୧ ସାଲରେ ଗଠିତ ହେଲା, ଓଡନେଲ କମିଟି, ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ । ଏହି କମିଟିର ସାକ୍ଷ୍ୟ ଗ୍ରହଣ ସମୟଟି ଥିଲା ଓଡ଼ିଆ ଜାତିର ସନ୍ଧିସନ୍ଧ ମୁହୂର୍ତ୍ତର ସମୟ । ତେଣୁ ପରଶୁରାମ ରଘୁନାଥଙ୍କୁ ଶିକ୍ଷକ ଓ ଛାତ୍ର-ମାନଙ୍କ ସହ ବ୍ରହ୍ମପୁର ଓ ନବପୁର ଅଞ୍ଚଳକୁ ଯାଇ ଓଡ଼ିଆମାନଙ୍କ ସପକ୍ଷରେ ଜନମତ ସୃଷ୍ଟି କରିବା ପାଇଁ ସଭା ସମିତିର ଆୟୋଜନ କରିଥିଲେ । ସ୍ଥାନେ ସ୍ଥାନେ ପ୍ରଚାର କାର୍ଯ୍ୟ ଜାରି ରଖିଥିଲେ । ଏଥିପାଇଁ ତାଙ୍କର ପାରଳାଖେମଣ୍ଡି ଓ ଖଲ୍ଲିକୋଟ ମହାରାଜାମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲା । ଏହି ସମୟରେ କଟକ ଓ ପୁରୀ ଅଞ୍ଚଳରୁ ଯେଉଁ ନେତୃବର୍ଗ ଦେଶ ମିଶ୍ରଣ କିମ୍ବା କଂଗ୍ରେସ ଆନ୍ଦୋଳନ କାର୍ଯ୍ୟରେ ଗଞ୍ଜାମ ଆସୁଥିଲେ, ସେମାନେ ପ୍ରାୟ ପରଶୁରାମଙ୍କର ଘରେ ହିଁ ଆତିଥ୍ୟ ଗ୍ରହଣ କରୁଥିଲେ । ସେମାନଙ୍କ ମଧ୍ୟରେ ତାଙ୍କର ସହପାଠୀ ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଛଡ଼ା ସରଳା ଦେବୀ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଲକ୍ଷ୍ମୀନାରାୟଣ ସାହୁ ପ୍ରମୁଖ ବହୁ ଦେଶସେବୀ, ନେତା, ଆସି ତାଙ୍କ ଘରେ ରହୁଥିଲେ । ପରଶୁରାମଙ୍କର ଅତିଥି ଚର୍ଚ୍ଚାର ଉଦାରତା ବିଷୟରେ ସୁନାମ ବା ଖ୍ୟାତି ରହିଥିଲା । ଓଡ଼ିଶା ବାହାରୁ କୌଣସି ଜନନାୟକ ଗଞ୍ଜାମ ଆସିଲେ ପରଶୁରାମଙ୍କର ଆତିଥେୟତା ଗ୍ରହଣ କରୁଥିଲେ । ସେମାନଙ୍କ ମଧ୍ୟରେ ଠକ୍କର ବାପା ଥିଲେ ଅନ୍ୟତମ ।

**ଦେଶ ମିଶ୍ରଣର ଅନ୍ତିମ ପର୍ଯ୍ୟାୟ**

୧୯୩୧ ସାଲ ନଭେମ୍ବର ଓ ଡିସେମ୍ବର ମାସରେ ଓଡନେଲ କମିଟିର ସାକ୍ଷ୍ୟ ଗ୍ରହଣ ସରିଲା ଆଉ ରିପୋର୍ଟଟି ପ୍ରକାଶ ପାଇଲା ୧୯୩୨ ସାଲ ଏପ୍ରିଲ ୧୯ ତାରିଖରେ । ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳକୁ ପ୍ରସ୍ତାବିତ ଓଡ଼ିଶାର ସୀମା ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଥିଲେ ମଧ୍ୟ ପାରଳା ଓ ଜୟପୁର ଜମିଦାରୀକୁ ବାଦ ଦିଆ ଯାଇଥିଲା । ଅବଶେଷରେ ୧୯୩୩ ସାଲ ମଇମାସରେ ମଧୁସୂଦନଙ୍କର ପ୍ରେରଣା ଓ ପଥ ପ୍ରଦର୍ଶନରେ ପାରଳା ମହାରାଜା ପୁନର୍ବାର ଲଣ୍ଡନ ଯାଇ ଦାବୀ ଉପସ୍ଥାପିତ କଲେ । ଆଉ ଯୁଗ୍ମ ନିର୍ଦ୍ଧାରଣ କମିଟି ଗଠନ କରାଯାଇ ପୁନର୍ବାର ସୀମା ନିର୍ଦ୍ଧାରଣ

Digitized by PPRACHIN, SOA

କରିଯାଇ ପାରଳାଖେମଣ୍ଡିର ଏକବିଂଶାଂଶ ଓ ଜୟପୁର ଜମିଦାରୀର ମିଶ୍ରଣକୁ ଗ୍ରହଣ କରିଗଲି ।

ଏହାର ପୂର୍ବର ଘଟଣା, ଯେଉଁ ଦିନ (୧୯୩୬ ସାଲ) ଓଡ଼ିଶା ପ୍ରଦେଶ ଗଠନର ଘୋଷଣାନାମା ପ୍ରକାଶ ପାଇଲା, ମଧୁସୂଦନ ସେତେବେଳେ ଉଦର ବ୍ୟାଧିର ଦାରୁଣ ବେଗରେ ପୀଡ଼ିତ ହୋଇ କଲିକତାର ଏକ ନର୍ସିଂ ହୋମରେ ଚିକିତ୍ସିତ ହେଉଥାନ୍ତି । ସେହି ସମୟର ଘଟଣାକୁ ମଧୁସୂଦନ ସ୍ମୃତିଚାରଣ କରି କହିଥିଲେ, "ମୋର ପେଟରେ ଅସହ୍ୟ ଯନ୍ତ୍ରଣା, ଯେପରି ପେଟର ଅନ୍ତବୁଜୁଳିକୁ ଦାଢ଼ୁଆ ଛୁରୀରେ କିଏ କାଟି ପକାଉଛି । ଦୁର୍ବିଷହ ବ୍ୟଥା, ଆଉ ସହି ହେବାର ନୁହେଁ । ମୁଁ ଯେପରି ଭୂଇଁ କାମୁଡ଼ି ପଡ଼ି ରହିଥାଏ । ଏ ସମୟରେ ଓଡ଼ିଶା ପ୍ରଦେଶ ଗଠନର ଚୂଡ଼ାନ୍ତ ବାର୍ତ୍ତାଟି ଅସି ପହଞ୍ଚିଲା ।

ଏ କଣ ! ଏ ଆନନ୍ଦର ଆତିଶଯ୍ୟତା ମୁଁ ବର୍ଣ୍ଣନା କରି ପାରୁନାହିଁ । ଯେପରି ଉଲ୍ଲାସର ମଦିରାରେ ମୁଁ ସମ୍ମୋହିତ ହୋଇଗଲି । କି ଆନନ୍ଦର ପ୍ଲାବନ । କ୍ଷଣକ ପାଇଁ ପେଟର ସମସ୍ତ ଯନ୍ତ୍ରଣା ଭୁଲିଗଲି ।"

ମଧୁସୂଦନ ୧୯୩୩ ସାଲରେ ଓଡ଼ିଶା ପ୍ରଦେଶର ଶାସନ କମିଟିରେ ସଭ୍ୟ ରହି, ଶାସକୀୟ ରୂପରେଖର ଚୂଡ଼ାନ୍ତ କରିଥାନ୍ତି । କ୍ରମେ ତାଙ୍କର ଅସୁସ୍ଥତା ବଢ଼ିଲା ।

୧୯୩୪, ଫେବୃଆରୀ ୪ ତାରିଖ ଦିନ ଓଡ଼ିଆ ଜାତିର କର୍ଣ୍ଣଧାର, ସ୍ୱର୍ଗ୍ୟବିଧାତା ଜାତୀୟ ଗୌରବ ମଧୁସୂଦନଙ୍କର ଜୀବନ ଦୀପ ଲିଭିଗଲା । ସମସ୍ତ ଜାତି ଦୁଃଖ ଅବସାଦରେ ଯେପରି ଭାଙ୍ଗି ପଡ଼ିଲା । ସେଦିନ ଅପରାହ୍ଣରେ ଏକ ସ୍ୱତନ୍ତ୍ର ଶୋକସଭା ଆହୂତ ହୋଇଥିଲା, ରସଲକୁଣ୍ଡାରେ ପରଶୁରାମଙ୍କ ସମର୍ଥ ସହଯୋଗରେ ।

ଅବଶେଷରେ ମଧୁସୂଦନ ଅଉ ପାରଳା ମହାରାଜାଙ୍କର ପ୍ରାଣାନ୍ତ ଚେଷ୍ଟା ଓ ଅଧ୍ୟବସାୟରେ ନୂତନ ଓଡ଼ିଶା ଗଠିତ ହେଲା ୧୯୩୬ ଏପ୍ରିଲ ପହିଲାରେ ।

## ସର୍ବଧର୍ମ ସମନ୍ୱୟ

ରସଲକୁଣ୍ଡା (ଭଞ୍ଜନଗରରେ) ହିନ୍ଦୁମାନଙ୍କ ଛଡ଼ା ମୁସଲମାନ, ଖ୍ରୀଷ୍ଟିଆନ ସମ୍ପ୍ରଦାୟର ବହୁ ପ୍ରତିଷ୍ଠିତ ବ୍ୟକ୍ତିମାନେ ରହୁଥିଲେ । ଏଠାରେ ବିଭିନ୍ନ ଧର୍ମ, ସଂସ୍କୃତିର ଅଦାନ ପ୍ରଦାନ ପାଇଁ ପରଶୁରାମଙ୍କୁ ଅପୂର୍ବ ସୁଯୋଗ ମିଳିଥିଲା ।

ରୋମାନ୍ କ୍ୟାଥଲିକ୍ ଖ୍ରୀଷ୍ଟିୟାନମାନଙ୍କର ସହ ତାଙ୍କର ସହୃଦୟତା ବଢ଼ି ଯାଇଥିଲା । ଏମାନଙ୍କ ମଧ୍ୟରୁ ସ୍ପେନରୁ ଆସିଥିବା ଫାଦର କୁଣ୍ଡି ତାଙ୍କର ଜୀବନ-ବ୍ୟାପୀ ଅନ୍ତରଙ୍ଗ ବନ୍ଧୁ ଥିଲେ । ଫାଦର କୁଣ୍ଡି ରସଲକୁଣ୍ଡାର ଗରମ ସହି

Digitized by PPRACHIN, SOA

ନ. ପାଉ ରୋଗଗ୍ରସ୍ତ ହୋଇପଡ଼ିଥିଲେ ଓ ତାଙ୍କର ଦେହସାରା ଉଠିଥିଲା ପ୍ରବଳ ଗରମ ଜନିତ ଘାଆସବୁ । ମାତ୍ର ପରଶୁରାମ ତାହାଙ୍କୁ ସମସ୍ତ ସେବା ଓ ଶୁଶ୍ରୂଷା ଯୋଗାଇ ରୋଗମୁକ୍ତ କରାଇଥିଲେ ।

ଏହାଛଡ଼ା ବହୁ ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟିଆନମାନଙ୍କର ସହିତ ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଥିଲା । ଏମାନଙ୍କ ମଧ୍ୟରେ ଥିଲେ ରସଲକୁଣ୍ଡା କେଲର୍ ମିଃ ଉଇନ ପାଉ ଯାହାଙ୍କର ସହଧର୍ମିଣୀ ଅଙ୍ଗ୍ଲୋ ଇଣ୍ଡିଆନ ପରିବାରରୁ ଆସିଥିଲେ ।

ରସଲକୁଣ୍ଡାରେ ଅବସ୍ଥାପିତ ରୋମାନ୍ କ୍ୟାଥଲିକ୍‌ମାନଙ୍କ ମଧ୍ୟରେ ବହୁ ଇଟାଲୀୟ, ସ୍ପେନୀୟ, ପର୍ତ୍ତୁଗାଲ ଆଦି ଦେଶର ଧର୍ମଯାଜକମାନେ ଥିଲେ । ସେହିମାନଙ୍କର ସଂସ୍ପର୍ଶରେ ଆସି ପରଶୁରାମ ୟୁରୋପୀୟ ସଂସ୍କୃତି ସଙ୍ଗେ ଘନିଷ୍ଠ ଭାବେ ପରିଚିତ ହୋଇଥିଲେ ।

## ଉପଯୁକ୍ତ ଦିଗ୍‌ଦର୍ଶକ :

ପରଶୁରାମ ଦେଶମିଶ୍ରଣ ଆନ୍ଦୋଳନ ସହିତ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନର ଜଣେ ଦୃଢ଼ ସମର୍ଥକ ଥିଲେ; ଯଦିଓ ସେ ଉଗ୍ରପନ୍ଥା ଗ୍ରହଣର ବିରୋଧି ଥିଲେ । ଗାନ୍ଧିଜୀଙ୍କର ଦର୍ଶନ ଓ ଅଧ୍ୟାତ୍ମିକ ସାଧନା, ତାଙ୍କର ମନରେ ଗଭୀର ରେଖାପାତ କରିଥିଲା । ସ୍ୱଚ୍ଛଳ ଅବସ୍ଥାସମ୍ପନ୍ନ ଯୁବକମାନେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବାପାଇଁ ତାଙ୍କର ଆପତ୍ତି ନ ଥିଲା । ମାତ୍ର ପ୍ରଥମେ ଉଚ୍ଚଶିକ୍ଷିତ ହୋଇ ସାରିବା ପରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ପାଇଁ ସେ ସପକ୍ଷରେ ସମର୍ଥନ ଜଣାଉଥିଲେ । ମାତ୍ର ଗରିବ ମେଧାବୀ ଯୁବକମାନେ, ଯେଉଁମାନଙ୍କ ଉପରେ ପରିବାରର ଗୁରୁ ଦାୟିତ୍ୱ ନ୍ୟସ୍ତ ରହିଥିଲା ସେମାନଙ୍କୁ ପରଶୁରାମ ନିଜ ତତ୍ତ୍ୱାବଧାନରେ ରଖୁଥିଲେ; ଯେପରି ସେମାନେ ରାଜନୈତିକ ଆନ୍ଦୋଳନରେ ଯୋଗଦେଇ ନିଜର ପରିବାରର ଆଶା ଭରସାକୁ ଧୂଳିସାତ୍ ନ କରନ୍ତି ।

ଏହି ପର୍ଯ୍ୟାୟରେ କୃଷ୍ଣଚନ୍ଦ୍ର ନାୟକ ନାମକ ଜଣେ ଖ୍ୟାତିସମ୍ପନ୍ନ ସାହିତ୍ୟିକ ଓ ପ୍ରତିଷ୍ଠିତ ଅବସରପ୍ରାପ୍ତ ପ୍ରଥମ ଶ୍ରେଣୀର ରେଭେନ୍ୟୁ ଅଫିସରଙ୍କର ସ୍ମୃତିଚାରଣ ଏହିପରି ଥିଲା—

"୧୯୩୦ ମସିହାରେ ସନ୍ତ୍ରାସବାଦ ଆଉ ହତ୍ୟାକାଣ୍ଡର ଅଭିଯୋଗରେ ଶହୀଦ ଭଗତ ସିଂହଙ୍କୁ ଫାଶି ଦେବା ଘଟଣା ମୋର ବାଳକମନକୁ ଉତ୍ତେଜିତ କରି ଦେଇଥିଲା । ଅତଏବ ଏହି ଶହୀଦଙ୍କ ଉଦ୍ଦେଶ୍ୟରେ ଆମେ କେତେ ଜଣ ଆମ ଘରେ ଶୋକ ପ୍ରକାଶ ପାଇଁ ସଭା ଆୟୋଜିତ କରିଥିଲୁ । ତା ପରଦିନ ପୋଲିସ ଏ

Digitized by PPRACHIN, SOA

ଖବର ଜାଣିଲ, ଆଉ ଆମ ଘରେ ପଡରୁ ଉଦୃଷ କରିଥିଲ । ଏ ଖବର ପ୍ରଧାନ ଶିକ୍ଷକ ଶ୍ରୀ ପରଶୁରାମ ବର୍ମାଙ୍କର ପାଖେ ପହଞ୍ଚି ଥିଲ ।

ବୋଧହୁଏ ସେ ପୋଲିସ ପାଖରୁ ଏ ଖବର ପାଇଥିଲେ । ତେଣୁ ମୋତେ ଓ ମୋର ଅଉ ଦୁଇ ସହପାଠୀଙ୍କୁ ପ୍ରଧାନ ଶିକ୍ଷକ ସ୍କୁଲରୁ ବିଦାୟ ଦେବେ ବୋଲି ଧମକ ଦେଇଥିଲେ । ମାତ୍ର ତାଙ୍କର ଦୟାରୁ ଆମେ ସେହି ଦଣ୍ଡରୁ କ୍ଷମା ପାଇଗଲୁଁ ।

ମୋର ଜ୍ୟେଷ୍ଠ ଭ୍ରାତା ବୈକୁଣ୍ଠ ନାୟକ ଷ୍ଟାଫ୍‌ଏଟ୍ ଥିଲେ । ଶିକ୍ଷକତା ପରେ ୧୯୨୧ରୁ ୧୯୨୩ ପର୍ଯ୍ୟନ୍ତ ସେ ଗଞ୍ଜାମ କଂଗ୍ରେସ କମିଟିର ପ୍ରଥମ ସମ୍ପାଦକ ଥିଲେ । ଦିନେ ଦେଖିଲି ଶ୍ରୀଯୁକ୍ତ ଦିବାକର ପଟ୍ଟନାୟକ ଚାଲି ଆସି ଆମ ଘରେ ପନ୍ଦର ଦିନ ରହିଲେ ସଭିଙ୍କ ଅଜାଣତରେ । ଆମ ପ୍ରଧାନ ଶିକ୍ଷକ ଶ୍ରୀ ପରଶୁରାମ ବର୍ମା ତାଙ୍କ ସହିତ ଦୁଇ ତିନିଥର କଥାବାର୍ତ୍ତା କରି ଚାଲିଗଲେ । ପରେ ଜାଣିପାରିଲି ଦିବାକର ବାବୁ ଓ ମୋର ଭାଇନା ସତ୍ୟବାଦୀ ସ୍କୁଲର ଛାତ୍ର ଥିଲେ । ଆଉ ପରଶୁରାମ ବର୍ମା ସତ୍ୟବାଦୀ ହାଇସ୍କୁଲର ଜଣେ ସହାନୁଭୂତିଶୀଳ ସମର୍ଥକ ଭାବରେ ତାଙ୍କର ସେହି ହାଇସ୍କୁଲ ସହିତ ରହିଥିଲ ନିବିଡ଼ ଓ ଅନ୍ତରଙ୍ଗ ସମ୍ପର୍କ । ତେଣୁ ମୁଁ ବୁଝି ପାରିଲି ସେଦିନ ଆମକୁ ସତର୍କ ବାଣୀ ଶୁଣାଇ ସେ ଯେଉଁ ତାଗିଦ କରିଥିଲେ ତାହା ଥିଲ ମାତ୍ର ଛଳନା ।”

**ଶିକ୍ଷାଦାନ :**

ପରଶୁରାମଙ୍କର ଅଧ୍ୟାପନା ଥିଲ ଅତି ଉଚ୍ଚ କୋଟୀର । ସେ ଇଂରାଜୀ ସାହିତ୍ୟ ପଢ଼ାଉଥିଲେ । ସେ ପ୍ରାୟ ପାଞ୍ଚ କୋଡ଼ିଏ ବର୍ଷର ପ୍ରଶ୍ନପତ୍ର ପାଖରେ ରଖି ଆଗାମୀ ମାଟ୍ରିକୁଲେସନ ପରୀକ୍ଷାରେ ସମ୍ଭାବ୍ୟ ପ୍ରଶ୍ନ ସମ୍ପର୍କରେ ସଠିକ୍ ଧାରଣା କରି ପାରୁଥିଲେ । ସେ ଗୋଟିଏ ପଦ୍ୟ କିମ୍ବା ଗଦ୍ୟାଂଶକୁ ବାରମ୍ବାର ବୁଝାଉଥିଲେ ବିଭିନ୍ନ ଶୈଳୀରେ, ଯେପରି ଉଭୟ ମେଧାବୀ ଓ ଅଧମ ଛାତ୍ର ମଧ୍ୟ ବୁଝି ପାରିବେ । ତେଣୁ କିଛି ବାକ୍ୟ ମେଧାବୀ ଛାତ୍ରଙ୍କ ହିତାର୍ଥେ ଉନ୍ନତ ସାହିତ୍ୟିକ ଶୈଳୀରେ ବୁଝାଇ ସାରିବା ପରେ ମଧ୍ୟମ ଧରଣର ଅଉ ଅଧମ ଧରଣର ଛାତ୍ର ବୁଝି ପାରିଲ ଭଳି କ୍ରମଶଃ ମଧ୍ୟମ ଶୈଳୀରେ ଓ ସବୁଠାରୁ ସହଜ ଓ ସରଳ ଶୈଳୀରେ ପଢ଼ାଉଥିଲେ ଯେପରିକି କ୍ଲାସର ଦୁର୍ବଳ ଛାତ୍ରଟି ମଧ୍ୟ ବୁଝି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବ । ତେଣୁ କ୍ଲାସ ନେବା ପୂର୍ବରୁ ପାଠ୍ୟ ପ୍ରସ୍ତୁତି ପାଇଁ ଯେଉଁ ଅଧ୍ୟବସାୟ କରୁଥିଲେ ତାହା ଥିଲ ଅସାଧାରଣ ଓ ଅନନ୍ୟ । ଇଂରାଜୀ ସାହିତ୍ୟରେ ସେ ବିଦ୍ୱାନ୍ ଓ ପାରଦର୍ଶୀ ଥିଲେ ଆଉ ଇଉରୋପୀୟ ଶୈଳୀରେ ଇଂରାଜୀ ଭାଷାକୁ ପ୍ରକାଶ କରିବା ପାଇଁ ତାଙ୍କର ଯେଉଁ ଦକ୍ଷତା ଥିଲ ତାହାର କୌଣସି ତୁଳନା ନାହିଁ । ତେଣୁ ବହୁ ସମୟରେ ତାଙ୍କର ସହପାଠୀ ପଣ୍ଡିତ ଗୋଦାବରୀଶଙ୍କ ସହ

Digitized by PPRACHIN, SOA

ତାଙ୍କର ଇଂରାଜୀ ଆଲୋଚନା ଅତ୍ୟନ୍ତ ରସବନ୍ତ ଓ ହୃଦୟସ୍ପର୍ଶୀ ହେଉଥିଲା । ତାହା ଯେପରି ଥିଲା ଏକ ପ୍ରକାର କସରତ । ତାଙ୍କର ବହୁ କୃତୀ ଛାତ୍ରଙ୍କ ମଧ୍ୟରେ ରସଲକୁଣ୍ଡା ହାଇସ୍କୁଲ ଛାତ୍ର ଶ୍ରୀ ପଞ୍ଚାନନ ତ୍ରିପାଠୀ, ଆଇ. ଏ. ଏସ୍. (ଅବସର ପ୍ରାପ୍ତ) ଶ୍ରୀ ବର୍ମାଙ୍କର ଇଂରେଜୀ ଭାଷାରେ ଆନନ୍ୟ ଦକ୍ଷତା ବିଷୟରେ କହନ୍ତି—

"ରସଲକୁଣ୍ଡା ହାଇସ୍କୁଲରେ ମୁଁ ଅଧ୍ୟୟନ ସମୟରେ ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ ପରଶୁରାମ ବର୍ମା ଆମ୍ଭମାନଙ୍କୁ ଯେଉଁ ଚମତ୍କାର ଶୈଳୀରେ ଇଂରାଜୀ ସାହିତ୍ୟର ଅଧ୍ୟାପନା କରୁଥିଲେ ତାହାର ସ୍ମୃତି ମୋର ମନରେ ଅଲିଭା ଛାପ ଆଙ୍କି ଦେଇଛି । ରସଲକୁଣ୍ଡା ସ୍କୁଲ ଛାଡ଼ି ଅନ୍ୟତ୍ର ଅଧ୍ୟୟନ କରିବା ସମୟରେ ମୋର ଗୋଟିଏ ଚରିତ୍ର ସାର୍ଟିଫିକେଟ ଦରକାର ପଡ଼ିଥିଲା । ମୁଁ ପ୍ରଧାନ ଶିକ୍ଷକଙ୍କ ପାଖରେ ଅନୁରୋଧ ଜଣାଇ-ଥିଲି । ଆଉ ସେ ପରଦିନ ଆସି ଠିକଣା ସମୟରେ ନେଇଯିବାକୁ କହିଲେ ।

ମୁଁ ପରବର୍ତ୍ତୀ ଦିନ ନିର୍ଦ୍ଦିଷ୍ଟ ସମୟରେ ସାର୍ଟିଫିକେଟ ପାଇଥିଲି । ସେଥିରେ ଚରିତ୍ର ପତ୍ରରେ ଲିଖିତ ଇଂରାଜୀ ଶୈଳୀ ଏପରି ପ୍ରଭାବଶାଳୀ ଓ ହୃଦୟସ୍ପର୍ଶୀ ଥିଲା ଯେ ତାହାକୁ ପଢ଼ି ମୁଁ କେବଳ ଆଶ୍ଚର୍ଯ୍ୟାନ୍ୱିତ ନୁହେଁ କିଛି ପରିମାଣରେ ହତଚକିତ ହୋଇ ଯାଇଥିଲି, ତାହାର ଶବ୍ଦ ବିନ୍ୟାସ ଓ ଭାବର ରସଗ୍ରାହୀ ଉପସ୍ଥାପନାରେ ।

ହଁ, ମୁଁ ସାରା ଜୀବନରେ ଏହିପରି ପରିମାର୍ଜିତ ମର୍ମସ୍ପର୍ଶୀ ଇଂରାଜୀ ଶୈଳୀର ସମ୍ପର୍କରେ ଖୁବ୍ କମ୍ ଥର ଆସିପାରିଛି ।"

ପରଶୁରାମଙ୍କର ଇଂରାଜୀ ସାହିତ୍ୟ ଅଧ୍ୟାପନା ସମ୍ପର୍କରେ କୁଞ୍ଜବିହାରୀ ନାୟକଙ୍କର ସ୍ମୃତିଚାରଣଟି ଏହିପରି ଥିଲା—"ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ପରଶୁରାମ ବର୍ମା ଇଂରାଜୀରେ ଆମର ଶ୍ରେଣୀ ଶିକ୍ଷକ ଥିଲେ । ତାଙ୍କର ଶିକ୍ଷଣ ଶୈଳୀ ଥିଲା ଅତ୍ୟନ୍ତ ଉଚ୍ଚ କୋଟୀର । ତାଙ୍କଠାରେ ଥିଲା ଏକ ଅସାଧାରଣ ବ୍ୟକ୍ତିତ୍ୱ । ତେଣୁ ସେ ହିଁ ଥିଲେ ମୋର ଇଂରାଜୀ ସାହିତ୍ୟ ଚେତନା ପରିପ୍ରକାଶର ଫଲ୍‌ଗୁଧାରା । ମିତାକ୍ଷରରେ ଖଣ୍ଡିଏ ଇଂରାଜୀ କବିତା ଲେଖି ଶ୍ରୀଯୁକ୍ତ ବର୍ମାଙ୍କୁ ଦେଖାଇଥିଲି । ସେ ମୋର କବିତାର ମାନ ନିର୍ଦ୍ଧାରଣ କରିଥିବାରୁ ମୁଁ ଦିନକୁ ଦିନ ଇଂରାଜୀ ଓ ଓଡ଼ିଆ କବିତା ଲେଖିବାରେ ବ୍ରତୀ ହେଲି ।"

କୁଞ୍ଜବିହାରୀ ନାୟକ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଭାବେ ପରିଚିତ ଥିଲେ ଓ ସେ କବିବର ରାଧାନାଥ ରାୟଙ୍କ 'ଚିଲିକା' କାବ୍ୟ ଓ ଉତ୍କଳମଣି ଗୋପବନ୍ଧୁଙ୍କର 'ବନ୍ଦୀର ଆତ୍ମକଥା'କୁ ଇଂରାଜୀରେ ଅତ୍ୟନ୍ତ ସଫଳତାର ସହ ଅନୁବାଦ କରି ଅଜସ୍ର ପ୍ରଶଂସାର ପାତ୍ର ହୋଇଥିଲେ । ଏଥିରେ ସଙ୍କଳିତ ତାଙ୍କର ସ୍ମୃତିଚାରଣଟି ଭଞ୍ଜନଗର ହାଇସ୍କୁଲ ଶତବାର୍ଷିକୀ ସ୍ମାରକୀ ଗ୍ରନ୍ଥରୁ ଆହରିତ । ସେ ମହାଶୟ ତାଙ୍କର ଗୁରୁଦେବଙ୍କ ସ୍ମୃତିରେ ଗୋଟିଏ ବିଶେଷ ନିବନ୍ଧ ରଚନା କରିବାକୁ

Digitized by PPRACHIN, SOA

ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ଗତବର୍ଷ ତାଙ୍କର ଆକସ୍ମିକ ବିୟୋଗ ଯୋଗୁଁ ତାହା ସମ୍ଭବପର ହୋଇ ପାରିନି ନାହିଁ ।

ପ୍ରତିମାସରେ ପାର୍ସଲରେ ବିଭିନ୍ନ ପ୍ରକାର ପୁସ୍ତକ ସହିତ ମୁଖ୍ୟତଃ ଧର୍ମ ସମ୍ବନ୍ଧୀୟ ଗ୍ରନ୍ଥମାନ ମଗାଉଥିଲେ । ବିଭିନ୍ନ ଧର୍ମ ମତରେ ପ୍ରସ୍ଫୁରିତ ସତ୍ୟକୁ ସେ ଗଭୀର ଅନୁସନ୍ଧିତ୍ସାର ସହ ଗବେଷଣା କରୁଥିଲେ । ତାଙ୍କର ଉପରି ରୁମଟି ବିଭିନ୍ନ ଧର୍ମସମ୍ପ୍ରଦାୟର ଦାର୍ଶନିକମାନଙ୍କର ରୁଚିପୂର୍ଣ୍ଣ ଫଟୋଚିତ୍ର ଅଥବା ଚିତ୍ର-ପଟରେ ଶୋଭିତ ଥିଲା । ଏମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ, ରାମକୃଷ୍ଣ ପରମହଂସ ଆଦିଙ୍କର ସହିତ ଯୀଶୁଖ୍ରୀଷ୍ଟ, ମୋସେସ୍, କନ୍‌ଫ୍ୟୁସିଅସ୍, ସକ୍ରେଟିସ, ମହମ୍ମଦ, ବୁଦ୍ଧ, ମହାବୀରଙ୍କର ତଥା ଗ୍ରୀକ୍, ରୋମାନ୍, ଚୀନ, ଆଦି ଦେଶର ଆଧ୍ୟାତ୍ମିକ ଦାର୍ଶନିକମାନଙ୍କର ଚିତ୍ର ମଧ୍ୟ ଥିଲା । ଏଥିରୁ ଅଧିକାଂଶ ଚିତ୍ର ସଂଗ୍ରହ କରିବା ଅତ୍ୟନ୍ତ ଦୁଃସାଧ୍ୟ ଥିଲେ ମଧ୍ୟ ସେସବୁକୁ ସେ ପାଇ ପାରିଥିଲେ ବହୁ ଦୁର୍ଲ୍ଲଭ ଗ୍ରନ୍ଥରୁ । ଏହି ସମସ୍ତ ଚିତ୍ରାବଳୀ ମଧ୍ୟରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଥିଲା ମହାତ୍ମା ଗାନ୍ଧିଙ୍କର ଛବି । ସେ ଗାନ୍ଧିଜୀଙ୍କର ଆଧ୍ୟାତ୍ମିକ ତଥା ସତ୍ୟ ଅନୁସନ୍ଧାନ ସମ୍ପର୍କୀୟ କେତେ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ ପଢ଼ି ପ୍ରଭାବିତ ହୋଇଥିଲେ । ତାଙ୍କ ପାଖରେ ସୁରକ୍ଷିତ ଥିଲା ଆଧ୍ୟାତ୍ମିକ ଦର୍ଶନର ଚିନ୍ତାଧାରା ସମ୍ବଳିତ ଗାନ୍ଧିଙ୍କ ନିଜସ୍ୱ କଣ୍ଠସ୍ୱରରେ ଗ୍ରଥିତ କେତେ ଦୁର୍ଲ୍ଲଭ ଗ୍ରାମୋଫୋନ ରେକର୍ଡ । ହଁ, ସତ୍ୟାନୁସନ୍ଧାନର ଜଣେ ପୂଜାରୀ ଭାବରେ ବିଶ୍ୱର ବହୁ ମନୀଷୀ-ମାନଙ୍କ ମଧ୍ୟରେ ଗାନ୍ଧିଜୀଙ୍କର ଦୁର୍ଲ୍ଲଭ ଫଟୋଚିତ୍ରଟିଏ, ତାଙ୍କର ଢାଣ୍ଡିଘରେ ସୁସଜ୍ଜିତ ହୋଇ ରହିଥିଲା ।

ଏହା ସାମାନ୍ୟ ଇଂରେଜ ଅଫିସରଙ୍କର ଦୃଷ୍ଟିରୁ ବାଦ ଯାଇ ନ ଥିଲା । ତେଣୁ ଗାନ୍ଧିଜୀଙ୍କ ଫଟୋଚିତ୍ର ରଖିଥିବା ଅପରାଧରେ ତାଙ୍କୁ ଗିରଫ କରିବା ପାଇଁ ପରଓ୍ୱାନା ଜାରି ହୋଇଥିଲା । ଯେଉଁ ଅଫିସର ପରଓ୍ୱାନା ନେଇ ତାଙ୍କୁ ଗିରଫ କରିବାକୁ ଆସିଥିଲେ ତାହାଙ୍କୁ ପରଶୁରାମ ଅତ୍ୟନ୍ତ ନିର୍ଭୀକ ଭାବେ ଗାନ୍ଧିଜୀଙ୍କ ସମ୍ପର୍କରେ ନିଜର ଦୃଷ୍ଟିକୋଣ ବୁଝାଇ ଥିଲେ । ସେ କହିଥିଲେ ଯେ ସେ ଗାନ୍ଧିଜୀଙ୍କର ଦର୍ଶନ ଓ ଆଧ୍ୟାତ୍ମିକ ଚିନ୍ତାଧାରାଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଛନ୍ତି, ତେଣୁ ସେ ଗାନ୍ଧିଜୀଙ୍କର ଫଟୋ ନିଜର ଗୃହରେ ରଖିଛନ୍ତି "I have kept Gandhiji in Prayer and not in Politics" । ଏଥିରେ ସନ୍ତୁଷ୍ଟ ହୋଇ ଉଚ୍ଚପଦସ୍ଥ ଅଫିସର ଜଣକ ଫେରିଯାଇ ନିଜର ରିପୋର୍ଟ ସରକାରଙ୍କର ନିକଟରେ ପେସ୍ କରିଥିଲେ ।

**ସମାଜ ସଂସ୍କାର—**

ପରଶୁରାମ ଜଣେ ପ୍ରତିଶ୍ରୁତିବାନ ସମାଜ ସଂସ୍କାରକ ଥିଲେ, ଯେ କି ବ୍ୟକ୍ତିଗତ ସ୍ତରରେ ତଥା ଚିନ୍ତାଧାରାରେ ଅନ୍ୟ ଦୁଇଜଣ ଓଡ଼ିଶାର ସଂସ୍କାରକ ବୈରାଗୀ

Digitized by PPRACHIN, SOA

ମିଶ୍ର ଓ ଶ୍ରୀବତ୍ସ ପଣ୍ଡାଙ୍କ ସହିତ ଘନିଷ୍ଠ ଭାବେ ସମ୍ପର୍କିତ ଥିଲେ । ଅସ୍ପୃଶ୍ୟତା ନିବାରଣ କ୍ଷେତ୍ରରେ ତାଙ୍କର ସମ୍ବନ୍ଧ ଥିଲା ଜମ୍ବୁମଙ୍ଗଳ ରଥଙ୍କ ସହିତ ।

ଏହା ଛଡ଼ା ବାଲ୍ୟ ବିବାହ ନିରୋଧ ଓ ବିଧବା ଏବଂ ବିବର୍ଣ୍ଣ ବିବାହ ପ୍ରଚଳନ ଲାଗି ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏଥିପାଇଁ ସେ ଯୁଗର ଉତ୍ସର୍ଗୀକୃତ ସଂସ୍କାରିକା ଶ୍ରୀମତୀ ଚମ୍ପା ନାମୀଙ୍କୁ ନୈତିକ, ମୌଖିକ ଓ ଆର୍ଥିକ ସହାୟତା ଯୋଗାଇଥିଲେ । ସେ ଯୁଗରେ ଚମ୍ପାନାମୀ ରାଜଗୁରୁ ଉପରକୁ ଓହ୍ଲାଇ ଯେଉଁଭଳି ସଂସ୍କାର ପ୍ରକ୍ରିୟା ଜାରି ରଖିଥିଲେ ତାହା ସେ ଯୁଗର ରକ୍ଷଣଶୀଳ ପରିସ୍ଥିତିରେ ଅବିସ୍ମରଣୀୟ ଥିଲା । ସେ ସମୟରେ ବିବର୍ଣ୍ଣ ବିବାହ କରିଥିବା ସ୍କୁଲର ଶିକ୍ଷକ ସୀମାଦ୍ରୀ ସାହୁଙ୍କୁ ପରଶୁରାମ ବହୁତ ମାନ୍ୟତା ଦେଉଥିଲେ ।

ଯେଉଁଠାରେ ପୁରୋହିତଙ୍କଠାରୁ ସର୍ବସାଧାରଣ ସଂସ୍କୃତରେ ଅନଭିଜ୍ଞ ସେଠାରେ, ସଂସ୍କୃତ ଶ୍ଳୋକ ସବୁକୁ ଅନୁବାଦ କରି ପ୍ରଚଳନ କରିବା ସକାଶେ ଗୁରୁତ୍ୱ ଆରୋପ କରିଥିଲେ । ସେ କଥା ପ୍ରସଙ୍ଗରେ କହନ୍ତି ଯେ, ଥରେ ପ୍ରାତଃ ଭ୍ରମଣ ଅବକାଶରେ ତାଙ୍କର ଜଣେ ଛାତ୍ରଙ୍କୁ ମଠାବସ୍ତ୍ର ପିନ୍ଧି, କମଣ୍ଡଳୁ ଓ ପାଞ୍ଜି ଧରି ଫେରୁଥିବାର ଦେଖିଲେ । ପ୍ରଶ୍ନ ପଚାରିବାରୁ ଛାତ୍ର ଜଣକ କହିଲେ 'ସାର୍ ! ମୁଁ ଯଜମାନଙ୍କ ଘରକୁ ଶ୍ରାଦ୍ଧ କର୍ମ ସମ୍ପାଦନ କରିବାକୁ ଯାଇଥିଲି । ମନ୍ତ୍ର ଜାଣି ନ ଥିବାରୁ ଆପଣ କ୍ଲାସରେ ପଢ଼ାଇଥିବା Wordsworthଙ୍କର poemଟି ସେଠାରେ ଆବୃତ୍ତି କରି କର୍ମ ସମ୍ପାଦନ କରି ଚାଲି ଆସିଲି ।'

ତେଣୁ ପରଶୁରାମ ପୁରୋହିତମାନଙ୍କୁ ଅଧିକ ସଂସ୍କୃତଜ୍ଞ ହେବା ପାଇଁ ଜୋର ଦେଉଥିଲେ । ପରଶୁରାମଙ୍କର ପାଣ୍ଡିତ୍ୟ ସଂସ୍କୃତ ଶାସ୍ତ୍ରରେ ଅସାଧାରଣ ଥିଲା । କିନ୍ତୁ ଭଗବାନ ଏବଂ ତାହାଙ୍କ ନିକଟରେ ମଣିଷର ଆତ୍ମିକ ନିବେଦନ କ୍ଷେତ୍ରରେ କୌଣସି ଅନ୍ତଃବର୍ତ୍ତୀ ମାଧ୍ୟମର ଆବଶ୍ୟକତା ଅଛି ବୋଲି ସେ ସ୍ୱୀକାର କରୁ ନ ଥିଲେ ।

ବିବାହ ପ୍ରଥାକୁ ସେ ସରଳୀକରଣ କରିଥିଲେ । ବୈଦିକ ମନ୍ତ୍ରକୁ ଓଡ଼ିଆରେ ଅନୁବାଦ କରି ଚଳାଇଥିଲେ । ଏହି ପ୍ରଥାରେ ନିଜର ପୁତ୍ର ତଥା ବହୁ ସମ୍ପର୍କୀୟଙ୍କର ବିବାହ କର୍ମ ସେ ସମ୍ପାଦନ କରାଇଥିଲେ ।

ଭଞ୍ଜନଗର, ମାଳ ଅଞ୍ଚଳର ଦ୍ୱାରଦେଶରେ ଥିଲା । ଅଫିସରମାନେ ମାଳ ଅଞ୍ଚଳକୁ ହାତୀ ପିଠିରେ ବସି ଗସ୍ତ କରୁଥିଲେ । ଏଥିପାଇଁ ବିଶାଳ ହାତୀଶାଳ ତିଆରି କରାଯାଇ ହାତୀମାନଙ୍କୁ ରସଲକୁଣ୍ଡାଠାରେ ରଖାଯାଇଥିଲା । ସେହି ହାତୀଶାଳ ସମ୍ମୁଖରେ ହାତୀମାନଙ୍କର ସନ୍ତରଣ ଆଉ ଗାଧୋଇବା ପାଇଁ ଥିଲା ସୁବିଶାଳ ପୁଷ୍କରିଣୀ, ଯାହା ହାତୀବନ୍ଧ ନାମରେ ଏବେ ବି ପରିଚିତ ।

Digitized by PPRACHIN, SOA

**ହାତୀକଣା—**

ଥରେ ଗୋଟିଏ ହାତୀ ବୃଦ୍ଧ ଓ ରୁଗ୍ଣ ହୋଇଯିବାରୁ ତାକୁ ଗୁଳିକରି ମାରି ଦେବାପାଇଁ ସ୍ଥିର କରାଯାଇଥିଲା । ରସଲକୁଣ୍ଡା ଜଳଭଣ୍ଡାର ନିକଟରେ ନିର୍ଜନ ପ୍ରାନ୍ତରରେ ଗୋଟିଏ ବଡ଼ ଖାତ ଖୋଳାଯାଇ ତାହାର ସମ୍ମୁଖରେ ହାତୀଟିକୁ ଅବସ୍ଥାପିତ କରାଯାଇ ଗୁଳି କରିବା ପାଇଁ ପ୍ରସ୍ତୁତ ପର୍ବ ସମ୍ପୂର୍ଣ୍ଣ ହୋଇଥିଲା । ଦର୍ଶକମାନଙ୍କ ମଧ୍ୟରେ ପରଶୁରାମ ଉପସ୍ଥିତ ଥିଲେ । ଆକୁଳିତ ହାତୀର ଆଖିରୁ ଧାର ଧାର ଲୁହ ବୋହିବାକୁ ଲାଗିଲା । ପରଶୁରାମ ଏହା ଦେଖିବା ମାତ୍ରେ ହାତୀପ୍ରତି ତାଙ୍କର ଅସୀମ କରୁଣା ଜାଗରିତ ହେଲା । ସେ ହାତୀଟିକୁ କିଣିନେବାପାଇଁ ପ୍ରସ୍ତାବ ଦେଲେ । ସଙ୍ଗେ ସଙ୍ଗେ ଉପସ୍ଥିତ ସରକାରୀ ଅଧିକାରୀ ଜଣଙ୍କ ହାତୀର ମୂଲ୍ୟ ଛଅଶ ଟଙ୍କା ବୋଲି ନିର୍ଦ୍ଧାରଣ କଲେ । ପରଶୁରାମ ତତ୍‌କ୍ଷଣାତ୍ ହାତୀଟିକୁ କିଣିନେଇ ତାର ଜୀବନରକ୍ଷା କରିଥିଲେ । ସେହି ହାତୀଟିକୁ ପୋଷିବା ପାଇଁ ମାହୁନ୍ତର ଦରମା ସହିତ ତାଙ୍କୁ ପ୍ରତି ମାସରେ ଛଅଶଟଙ୍କା ଖର୍ଚ୍ଚ କରିବାକୁ ପଡ଼ୁଥିଲା । ଏହା ପରେ ହାତୀଟି ବହୁ ବର୍ଷ କାଳ ଜୀବିତ ଥିଲା ।

ପରଶୁରାମଙ୍କର ରସଲକୁଣ୍ଡାରେ ଅବସ୍ଥାନ ଥିଲା ଦୀର୍ଘ ଦଶବର୍ଷ ୧୯୨୮ରୁ ୧୯୩୮ ଯାହା ତାଙ୍କ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଥିଲା । ଏହି ସମୟରେ ତାଙ୍କର ଆଧ୍ୟାତ୍ମିକ ଚେତନା ଅଧିକ ଶାଣିତ ହୋଇଥିଲା । ବିଭିନ୍ନ ଧର୍ମର ସମନ୍ୱିତ ଚିନ୍ତାଧାରାରୁ ସେ କ୍ରମଶଃ ଆଧ୍ୟାତ୍ମିକ ଦର୍ଶନର ମୂଳ ତତ୍ତ୍ୱଟିକୁ ଖୋଜି ପାଇବା ପାଇଁ ସକ୍ଷମ ହୋଇଥିଲେ ।

---

## ଖଲ୍ଲିକୋଟ ଅବସ୍ଥାନ
## (୧୯୩୮-୪୧)

ରସଲକୁଣ୍ଡା ପରେ ସେ ଅବସ୍ଥାପିତ ହୋଇଥିଲେ ଖଲ୍ଲିକୋଟରେ । ସେ ସମୟରେ ଗଞ୍ଜାମ ଜିଲ୍ଲାବୋର୍ଡ଼ର ସଭାପତି ଥିଲେ ଖଲ୍ଲିକୋଟର ରାଜା ସାହେବ ରାମଚନ୍ଦ୍ର ମର୍ଦ୍ଦରାଜ । ସେ ଚାହିଁଥିଲେ ପରଶୁରାମଙ୍କୁ ନିଜ ରାଜ୍ୟର ହାଇସ୍କୁଲରେ ଅବସ୍ଥାପିତ କରିବା ପାଇଁ । ଖଲ୍ଲିକୋଟର ରାଜାସାହେବ ସ୍ୱାଭିମାନୀ ପୁରୁଷ ଥିଲେ । ତାଙ୍କର ପିତା ହରିହର ମର୍ଦ୍ଦରାଜ ଗଞ୍ଜାମରେ ଜାତୀୟ ଜାଗରଣର ମୂଳ ଉତ୍ସ ଥିଲେ । ତାଙ୍କ ପୁତ୍ର ରାମଚନ୍ଦ୍ର ମଧ୍ୟ ପିତାଙ୍କର ପଦାଙ୍କ ଅନୁସରଣ କରି ଓଡ଼ିଶା ପ୍ରଦେଶ

Digitized by PPRACHIN, SOA

ଗଠନର ଗୁରୁତ୍ୱପୂର୍ଣ୍ଣ ଅନ୍ତିମ ପର୍ଯ୍ୟାୟରେ ମୁଖ୍ୟ ଭୂମିକା ଗ୍ରହଣ କରି ଲଣ୍ଡନରେ ଅନୁଷ୍ଠିତ ଗୋଲଟେବୁଲ ବୈଠକରେ ଓଡ଼ିଶାର ଦାବୀ ଉପସ୍ଥାପନା କରିଥିଲେ । ସେ ମଧ୍ୟ ଗଞ୍ଜାମ ଜିଲ୍ଲାବୋର୍ଡ଼ର ସଭାପତି ଥିଲେ । ନଦୀ ଉପରେ ପୋଲ ନିର୍ମାଣ ସହିତ ବହୁ ନୂତନ ସ୍କୁଲ ଅଧିକାଧିକାର ଭିତ୍ତିରେ ପ୍ରତିଷ୍ଠା କରିଥିଲେ ।

ଖଲ୍ଲିକୋଟ ଗୋଟିଏ ଜମିଦାରୀ ଥିଲା । ମାତ୍ର ଖଲ୍ଲିକୋଟ ଥିଲା ଗୋଟିଏ ସଂସ୍କୃତି ସମ୍ପନ୍ନ ମନ୍ଦିରମାଳିନୀ ନଗରୀ । ଏହାର ଜଗନ୍ନାଥ ମନ୍ଦିର ଓଡ଼ିଶାରେ ଥିବା ସମସ୍ତ ଜଗନ୍ନାଥ ମନ୍ଦିର ମଧ୍ୟରେ, ପୁରୀ ଶ୍ରୀମନ୍ଦିରକୁ ବାଦଦେଲେ, ସବୁଠାରୁ ଉଚ୍ଚ ଥିଲା । ପୁରୀ ଶ୍ରୀମନ୍ଦିରର ଧାରାରେ ଏଠାରେ ମୁଖ୍ୟ ଜାନିଯାତ୍ରାମାନ ପାଳିତ ହେଉଥିଲା ।

ପରଶୁରାମଙ୍କର ଖଲ୍ଲିକୋଟ ଅବସ୍ଥାନ କାଳରେ ଆଧ୍ୟାତ୍ମିକ ସାହିତ୍ୟ ଅଧ୍ୟୟନ ସହିତ ଗବେଷଣା ଚାଲିଥିଲା । ପରଶୁରାମଙ୍କର ଖଲ୍ଲିକୋଟରେ ଅବସ୍ଥିତିର ସୁଯୋଗ ନେଇ ପଣ୍ଡିତ ବାଇକୋଳି ମହାପାତ୍ର, ଜ୍ୟୋତିଷାଚାର୍ଯ୍ୟ, ଗୋଟିଏ ଆଧ୍ୟାତ୍ମିକ ସମିତିର ସଂଯୋଜନା କରିଥିଲେ, ଯହିଁରେ ନିୟମିତ ଭାବେ ଆଧ୍ୟାତ୍ମିକ ଚର୍ଚ୍ଚାର ଆସରମାନ ଅନୁଷ୍ଠିତ ହେଉଥିଲା । ଏହି ସଭାଗୁଡ଼ିକରେ ପରଶୁରାମ ମୁଖ୍ୟବକ୍ତା ରୂପେ ତାଙ୍କର ବକ୍ତବ୍ୟ ଉପସ୍ଥାପନ କରୁଥିଲେ । କିଛି ଦିନ ପାଇଁ କାର୍ତ୍ତିକ ମାସରେ ସଂକୀର୍ତ୍ତନ ଓ ନଗର ପରିକ୍ରମା ଆରମ୍ଭ କରିଥିଲେ । ଏହି ସ୍କୁଲରେ ଗଣେଶ ଓ ସରସ୍ୱତୀ ପୂଜା ଅବସରରେ ରୁଚିପୂର୍ଣ୍ଣ ଉତ୍ସବମାନ ଅନୁଷ୍ଠିତ ହେଉଥିଲା ।

## କର୍ମମୟ ଜୀବନ—

ପ୍ରଧାନ ଶିକ୍ଷକ ଭାବରେ ତାଙ୍କର ଦିନଚର୍ଯ୍ୟା ନିର୍ଦ୍ଧାରିତ ଥିଲା । ନିତ୍ୟକର୍ମ ଓ ସ୍ନାନ ସମାପନ ପରେ ସ୍କୁଲ ଯିବା ପୂର୍ବରୁ ତାଙ୍କର ଆହାର ଥିଲା କେଇପଟ ରୁଟି ଆଉ ତରକାରୀ । ମଧ୍ୟାହ୍ନରେ ସ୍କୁଲ ଛୁଟି ସମୟରେ ସେ ଖାଉଥିଲେ ଲିଆ ଆଉ କ୍ଷୀର । ତେଣୁ ଦିନରେ ତାଙ୍କର ଆହାର ଅତ୍ୟନ୍ତ ଲଘୁପାକ ଥିଲା । ସନ୍ଧ୍ୟାରେ ସ୍କୁଲରୁ ଫେରିବା ପରେ ସମସ୍ତ ବାହ୍ୟ କର୍ମର ସମାପ୍ତି ପରେ ସେ ଆଉ ଥରେ ସ୍ନାନ କରୁଥିଲେ ଆଉ ଦିନର ମୁଖ୍ୟ ଆହାରଟି ଗ୍ରହଣ କରୁଥିଲେ । ଦିନସାରା ସ୍ୱଳ୍ପାହାରୀ ଥିବାରୁ ସେ ସବୁ ସମୟରେ ସଜାଗ ରହି ପାରୁଥିଲେ । ଆଉ ସମସ୍ତ ପରିସ୍ଥିତିକୁ ଅତ୍ୟନ୍ତ ଦୃଢ଼ତାର ସହିତ ମୁକାବିଲା କରି ପାରୁଥିଲେ ।

## ନୈତିକତା ରକ୍ଷା —

ଏହି ସମୟରେ ଖଲ୍ଲିକୋଟ ହାଇସ୍କୁଲର ପ୍ରାଙ୍ଗଣରେ ବହୁ ଝାଉଁଗଛ ଥିଲା । ମାତ୍ର ପରଶୁରାମଙ୍କର ଅଜ୍ଞାତସାରରେ ଅବକାଶ ବଳରେ ଏହି ସମସ୍ତ ଗଛକୁ

Digitized by PPRACHIN, SOA

ବାର୍ଷିକ ହଳମ କରି ଦେଉଥିଲେ, ଖଜୁରୀ ଗଛରୁ ମଦର ପ୍ରସ୍ତୁତ ପାଇଁ । ଜଣେ ଶୁଣ୍ଢି ମହାଜନ ହଳମ ଧରି ଖଜୁରୀ ଗଛମାନଙ୍କରେ ମାଠିଆ ସବୁ ଝୁଲାଇ ଦେଇ ଥିଲେ, ରସ ଆହରଣ କରି ମଦ ପ୍ରସ୍ତୁତ କରିବା ପାଇଁ । ମାତ୍ର ପରଶୁରାମ ଏହା ଅବଗତ ହେବାମାତ୍ରେ ସେହି ଶୁଣ୍ଢି ମହାଜନକୁ ଡକାଇ ତାଗିଦ କରି ଦେଇ-ଥିଲେ, ସ୍କୁଲର ପରିସର ମଧ୍ୟକୁ ପ୍ରବେଶ ନ କରିବା ପାଇଁ । ଏହା ପରେ ଗଛ-ମାନଙ୍କର ହାଣ୍ଡିସବୁ ଉଠାଇ ଦିଆ ଯାଇଥିଲା । ଅବକାରୀ ବିଭାଗର ଆପତ୍ତି ସତ୍ତ୍ୱେ ସେ ନିଜର ନିଷ୍ପତ୍ତିରେ ଦୃଢ଼ ରହିଥିଲେ । ତାଙ୍କର ଯୁକ୍ତି ଥିଲା ସ୍କୁଲ ମଧ୍ୟରେ ମଦର ପ୍ରସ୍ତୁତ ଶିକ୍ଷା ପ୍ରତି ଅବମାନନା ଓ ଅନୈତିକତା ।

**ନାଟକ ମଞ୍ଚ—**

ଖଲ୍ଲିକୋଟ ରାଜା ସାହେବଙ୍କ ପ୍ରୋତ୍ସାହନରେ ଗୋଟିଏ ଅସ୍ଥାୟୀ ମଞ୍ଚ ପ୍ରତିଷ୍ଠା ହୋଇଥିଲା, ଯେଉଁଠାରେ ସହରର ସୌଖିନ ନାଟ୍ୟଦଳ କେବେ କେବେ ନାଟକ ପ୍ରଦର୍ଶନ କରୁଥିଲେ । ଏହି ସୌଖିନ ନାଟ୍ୟଦଳରେ ମୁଖ୍ୟଭାବେ ସଂପୃକ୍ତ ଥିଲେ ସ୍କୁଲର ଶିକ୍ଷକ ଆଉ କର୍ମଚାରୀମାନେ । ତେଣୁ ପରଶୁରାମ ସେମାନଙ୍କୁ ନାଟକ ମଞ୍ଚସ୍ଥ କରିବା ପାଇଁ ଉତ୍ସାହିତ କରୁଥିଲେ । ଏହି ସମୟରେ ସାମୟିକ ଭାବେ ନାଟକ ମଞ୍ଚସ୍ଥ କରିବା ପାଇଁ ସମସ୍ତ ସରଞ୍ଜାମ ମହଜୁଦ ଥିଲା, ଆଉ ରହିଥିଲେ ସୁରୁଚି-ସମ୍ପନ୍ନ ଦର୍ଶକ ମଣ୍ଡଳୀ । ମୁଖ୍ୟତଃ ଐତିହାସିକ ଓ ପୌରାଣିକ ନାଟକମାନଙ୍କର ପ୍ରଦର୍ଶନ କରା ଯାଉଥିଲା ।

ଏହାର ସୁଯୋଗ ନେଇ ଆସି ପହଞ୍ଚିଥିଲେ ଓଡ଼ିଶାର ପ୍ରଖ୍ୟାତ ନାଟ୍ୟକାର କାଳୀଚରଣ ପଟ୍ଟନାୟକ ତାଙ୍କର ରାସଦଳକୁ ଧରି । ଏହା ଓଡ଼ିଶା ଥିଏଟର୍ସ ସ୍ଥାପିତ ହେବାର ପୂର୍ବବର୍ତ୍ତୀ ସମୟ । କାଳୀବାବୁ ପରଶୁରାମଙ୍କର ଛାତ୍ର ଥିଲେ ଖୋରଧା ହାଇସ୍କୁଲରେ ; ତେଣୁ ପରଶୁରାମ ତାହାଙ୍କୁ ତାଙ୍କ ନାଟକ ପ୍ରଦର୍ଶନ ଲାଗି ସମୁଚିତ ସୁଯୋଗ ପ୍ରଦାନ କରିଥିଲେ ।

ଖଲ୍ଲିକୋଟ ଅବସ୍ଥାନ କାଳରେ ରାଜାସାହେବଙ୍କ ସହ ତାଙ୍କର ବ୍ୟକ୍ତିଗତ ସୁସମ୍ପର୍କ ଥିଲା । ତେଣୁ ଏହି ସ୍କୁଲରେ ସ୍ୱଳ୍ପ କେତେ ବର୍ଷର ରହଣି ତାଙ୍କ ପାଇଁ ସନ୍ତୋଷଜନକ ହୋଇଥିଲା ।

---

Digitized by PPRACHIN, SOA

## ଛତ୍ରପୁରରେ ଅବସ୍ଥାନ ଓ ଅବସର ଗ୍ରହଣ
## (୧୯୪୧-୪୩)

ଛତ୍ରପୁର ଗଞ୍ଜାମ ଜିଲ୍ଲାର ମୁଖ୍ୟ ହେଡ୍‌କ୍ୱାର୍ଟର ଅଟେ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭ କାଳରେ ୧୮୧୫ ମସିହାରେ ବନ୍ଦର ଭିତ୍ତିକ ସହର ଗଞ୍ଜାମ ପ୍ରବଳ ମହାମାରୀ ଦ୍ୱାରା ଜନଶୂନ୍ୟ ହେଲା ପରେ ଜିଲ୍ଲାର ମୁଖ୍ୟ କାର୍ଯ୍ୟାଳୟ କ୍ରମେ ନିକଟବର୍ତ୍ତୀ ସ୍ଥାନ ଛତ୍ରପୁରକୁ ସ୍ଥାନାନ୍ତରିତ ହେଲା । ତେଣୁ ଊନବିଂଶ ଶତାବ୍ଦୀର ତୃତୀୟ ଦଶକରୁ ପ୍ରତିଷ୍ଠିତ ଏହି ଜିଲ୍ଲା ହେଡ୍‌କ୍ୱାର୍ଟରରେ, ଜିଲ୍ଲାର ସମସ୍ତ ମୁଖ୍ୟ କାର୍ଯ୍ୟାଳୟ ସବୁ ସ୍ଥାପିତ ହେଲା । ଏହି ସ୍ଥାନରେ ଅବସ୍ଥାପିତ କର୍ମଚାରୀମାନଙ୍କରେ ମୁଖ୍ୟ ଭାଗ ଥିଲେ ତେଲୁଗୁଭାଷୀ । ଏକ ବିବରଣୀରୁ ଜଣାଯାଏ ୧୯୦୦ ମସିହାରେ ଗଞ୍ଜାମ କଲେକ୍ଟରେଟରେ ୧୬୦ ଜଣ ଅମଲାଙ୍କ ମଧ୍ୟରୁ ଚାରିଜଣ ମାତ୍ର ଓଡ଼ିଆ ଥିଲେ ।

ଏଠାରେ ଗଞ୍ଜାମ ଜିଲ୍ଲାର ପ୍ରଥମ ଇଂରାଜୀ ସ୍କୁଲଟି ସ୍ଥାପିତ ହୋଇଥିଲା ୧୮୫୦ ମସିହାରେ ତତ୍କାଳୀନ କଲେକ୍ଟର ଆର୍ଥର ଗୁଲ୍ଡ ଅନ୍‌ସ୍ଲୋଙ୍କ ଦ୍ୱାରା । ତେଣୁ ଏହି ହାଇସ୍କୁଲର ନାମ ଥିଲା "ଅନସ୍ଲୋ ଇନଷ୍ଟିଟ୍ୟୁସନ" । ପରଶୁରାମଙ୍କର ପୂର୍ବରୁ ଏଠାରେ ଥିଲେ ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ ମଦନ ମୋହନ ରଥ । ଏହି ସ୍କୁଲରୁ ସେ ଅବସର ଗ୍ରହଣ କରିଥିଲେ । ପରଶୁରାମ ମଧ୍ୟ ତାଙ୍କର କାର୍ଯ୍ୟକାଳର ଅନ୍ତିମ ପର୍ଯ୍ୟାୟରେ ଏଠାରେ ଅବସ୍ଥାପିତ ହୋଇଥିଲେ ।

ଏହି ସ୍କୁଲର ବହୁ ଶିକ୍ଷକ ଛାତ୍ର ଥିଲେ ତେଲୁଗୁଭାଷୀ । ତେଣୁ ପ୍ରତି ଶ୍ରେଣୀରେ ଦୁଇଟି ସେକ୍‌ସନ ଥିଲା, ଗୋଟିଏ ଓଡ଼ିଆଭାଷୀ ଛାତ୍ରଙ୍କପାଇଁ ଅନ୍ୟଟି ତେଲୁଗୁଭାଷୀ ଛାତ୍ରଙ୍କ ପାଇଁ ।

ପରଶୁରାମ ୧୯୧୮ ମସିହାରେ ପ୍ରଥମେ ଆସିକା ସ୍କୁଲରେ ଯୋଗ ଦେଲାବେଳେ ସେଠାରେ ମଧ୍ୟ ଦୁଇଟି ଭାଷୀ ଛାତ୍ରଙ୍କ ପାଇଁ ଦୁଇଟି ସେକ୍‌ସନ ଥିଲା; ମାତ୍ର ୧୯୨୮ ମସିହାରେ ପରଶୁରାମ ଆସିକା ସ୍କୁଲରୁ ବଦଳି ହେଲାବେଳକୁ ଅବସ୍ଥାର ଆମୂଳଚୂଳ ପରିବର୍ତ୍ତନ ଘଟିଥିଲା ।

ପରଶୁରାମ ଛତ୍ରପୁରରେ ଉଭୟଭାଷୀ ପ୍ରତିଷ୍ଠିତ ଲୋକଙ୍କର ସହିତ ସମ୍ପର୍କ ସ୍ଥାପନ କରିଥିଲେ । ବହୁ ତେଲୁଗୁ ବିଦ୍ୱାନଙ୍କର ସହିତ ତାଙ୍କର ବ୍ୟକ୍ତିଗତ ଓ ଆନ୍ତରିକ ସମ୍ପର୍କ ଥିଲା । ତାଙ୍କର ବିଶାଳ ବ୍ୟକ୍ତିତ୍ୱ, ଅସାଧାରଣ ପାଣ୍ଡିତ୍ୟ ଓ ବିଦ୍‌ବତ୍ତା, ତାଙ୍କୁ ଏ ଦିଗରେ ସାହାଯ୍ୟ କରିଥିଲା ।

Digitized by PPRACHIN, SOA

**ମର୍ଯ୍ୟାଦାପୂର୍ଣ୍ଣ ଅବସର :**

ତାଙ୍କର ଅବସର ଗ୍ରହଣର ସମୟ ଆସି ପହଞ୍ଚି ଯାଇଥିଲା । ତେଣୁ ଜିଲ୍ଲା-ବୋର୍ଡ଼ର ପରିଚାଳନା ପରିଷଦ ସ୍ଥିର କଲେ ଯେ ଶ୍ରୀ ବର୍ମା ନିଜର ପ୍ରତିଷ୍ଠିତ ସ୍କୁଲରୁ ଅବସର ଗ୍ରହଣ କରିବା. ତାଙ୍କପାଇଁ ମର୍ଯ୍ୟାଦାପୂର୍ଣ୍ଣ ହେବ । ଦେଶମିଶ୍ରଣ ଆନ୍ଦୋଳନ ଓ ଗଞ୍ଜାମରେ ସାଂସ୍କୃତିକ ଜାଗରଣ କ୍ଷେତ୍ରରେ ତାଙ୍କର ସୁପ୍ରତିଷ୍ଠିତ ସ୍ଥାନ ଥିଲା ।

ଏଥିପ୍ରତି ଯଥେଷ୍ଟ ସମ୍ମାନ ଜଣାଇ ଅବସର ଗ୍ରହଣର ଅନ୍ତିମ ଅବସରରେ ତାହାଙ୍କୁ ଅବସ୍ଥାପିତ କରି ଯାଇଥିଲା ପ୍ରଧାନ ଶିକ୍ଷକ ଭାବେ ନିଜର ପ୍ରତିଷ୍ଠିତ ଆସିକା ହାଇସ୍କୁଲରେ । ଏହି ଆସିକା ଥିଲା ତାଙ୍କର ପ୍ରଖର ଯୌବନଦୀପ୍ତ ସମୟର କାର୍ଯ୍ୟକ୍ଷେତ୍ର, ଯେଉଁଠାରେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଆବଶ୍ୟକ ଥିବା ସାହସିକତା ଆଉ ବିଚକ୍ଷଣ ବୁଦ୍ଧିର ପ୍ରୟୋଗ, ତାଙ୍କ ପାଖରେ ମହଜୁଦ ଥିଲା, ମୁଖ୍ୟତଃ ଓଡ଼ିଆମାନଙ୍କର ସ୍ୱାଭିମାନ ରକ୍ଷାପାଇଁ । ଏଠାରେ ଶିକ୍ଷକତା ତାଙ୍କ ପାଇଁ ଥିଲା ଗୌଣ ଆଉ ମୁଖ୍ୟ ଧ୍ୟାନ କେନ୍ଦ୍ର ହୋଇଥିଲା ଦେଶମିଶ୍ରଣ ଆନ୍ଦୋଳନ; ଆଉ ସାଂସ୍କୃତିକ ଜାଗରଣ ପାଇଁ ସହରର ବହୁ ଅନୁଷ୍ଠାନ ସହିତ ସେ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲେ ।

ତେଣୁ କାର୍ଯ୍ୟକାଳର ଅନ୍ତିମ ସମୟରେ, ଅବସର ଗ୍ରହଣର ପ୍ରାକ୍ କାଳରେ ସେ ଗ୍ରହଣ କରିଥିଲେ ଭବ୍ୟ ସମ୍ବର୍ଦ୍ଧନା ଉଭୟ ହାଇସ୍କୁଲ ଓ ସହର ବାସିଙ୍କର ପକ୍ଷରୁ । ଏହି ଉତ୍ସବରେ ତାଙ୍କର ବହୁ ପୁରାତନ ବନ୍ଧୁଙ୍କ ମଧ୍ୟରେ ଉପସ୍ଥିତ ଥିଲେ ନିରଞ୍ଜନ ପଟ୍ଟନାୟକ ଏବଂ ପ୍ରମୁଖ ଅନ୍ତରଙ୍ଗ ସୁହୃଦ ଗଣ ।

ପରଶୁରାମଙ୍କର ଅସାଧାରଣ ବ୍ୟକ୍ତିତ୍ୱ ସହିତ ତାଙ୍କର ଅତୀବ ଶୃଙ୍ଖଳା-ପରାୟଣତା କାହାଣୀର ଆଖ୍ୟାନରେ ପରିଣତ ହୋଇଛି । ଯେପରି ପ୍ରଖ୍ୟାତ ଗବେଷକ ଗୌରିକୁମାର ବ୍ରହ୍ମା, ପରଶୁରାମ ବର୍ମାଙ୍କର ସମ୍ପର୍କରେ କହୁଥିଲେ ଯେ, "ମୋର ନନାଙ୍କଠାରୁ ଶୁଣିଛି ଯେ, ସେ ସମୟରେ ଇଂରେଜୀ ସ୍କୁଲ ଇନ୍‌ସ୍ପେକ୍ଟର ତାଙ୍କର ଜଣେ ଇଂରେଜ ବନ୍ଧୁଙ୍କ ସହ ଆସିକା ହାଇସ୍କୁଲକୁ ଦିନ ସାଢ଼େଦଶଟାରେ ପରିଦର୍ଶନ କରିବେ ବୋଲି କାର୍ଯ୍ୟ ସୂଚନା ପ୍ରସ୍ତୁତ କରି ପଠାଇଥିଲେ । ପ୍ରଧାନ ଶିକ୍ଷକ ପରଶୁରାମ ବର୍ମା ପ୍ରାୟ ଦିନ ଏଗାରଟା ପର୍ଯ୍ୟନ୍ତ ଅପେକ୍ଷା କରିବା ପରେ, ହାଇସ୍କୁଲ ମୁଖ୍ୟ ଫାଟକରେ ତାଲା ଲଗାଇ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଦିନ ସାଢ଼େ ଏଗାରଟା ବେଳେ ସ୍କୁଲ ଇନ୍‌ସପେକ୍ଟର ଆସି ଗେଟରେ ପହଞ୍ଚି ଖବର ପଠାଇଲେ । ମାତ୍ର ପରଶୁରାମଙ୍କର ପାଲଟା ଜବାବ ଥିଲା, 'ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହୋଇ ଯାଇଥିବାରୁ, ସ୍କୁଲର ଗେଟ ଖୋଲିବା ସମ୍ଭବ ନୁହେଁ ।'

Digitized by PPRACHIN, SOA

ଅଗତ୍ୟା, ସ୍କୁଲ ଇନସ୍‌ପେକ୍ଟରଙ୍କୁ ଫେରି ଯିବାକୁ ପଡ଼ିଥିଲା । ଏପରି ଗୋଟିଏ ନୁହେଁ ପରଶୁରାମ ବର୍ମାଙ୍କର ଶୃଙ୍ଖଳାଜ୍ଞାନ ସମ୍ପର୍କରେ ଅନେକ କାହାଣୀ ସେ ସମୟରେ ପ୍ରଚଳିତ ଥିଲା ।"

ଏ ଥିଲା ଗୌରୀକୁମାର ବ୍ରହ୍ମାଙ୍କର ନିଜସ୍ୱ ବକ୍ତବ୍ୟ । ଗୌରୀକୁମାର ବ୍ରହ୍ମା ଆସିକା ହାଇସ୍କୁଲରେ ଯୋଗ ଦେବା ବେଳକୁ, ପରଶୁରାମ ବର୍ମା, ରସଲକୁଣ୍ଡା ହାଇସ୍କୁଲକୁ ସ୍ଥାନାନ୍ତରିତ ହୋଇ ଯାଇଥିଲେ । ଏଠାରେ ସୂଚିତ ଦିଆ ଯାଉଛି ଯେ ଗୌରୀକୁମାର ବ୍ରହ୍ମାଙ୍କର ପିତା ପଣ୍ଡିତପ୍ରବର ଚନ୍ଦ୍ରଶେଖର ବ୍ରହ୍ମା, ଆସିକା ହାଇ-ସ୍କୁଲର ସଂସ୍କୃତାଗ୍ରଣୀ ଥିଲେ ।

ଏହିଭଳି ବହୁ ଘଟଣା ବହୁଳ ଥିଲା ପରଶୁରାମଙ୍କର ଶିକ୍ଷକତାର ଜୀବନ । ବିଦ୍‌ବତ୍ତା, ଅସାଧାରଣ ପାଣ୍ଡିତ୍ୟ, ସ୍ୱାଧୀନଚେତା ମନୋଭାବ, କର୍ତ୍ତବ୍ୟ ପରାୟଣତା, ସର୍ବୋପରି ଦେଶପ୍ରତି ସମର୍ପିତ ଭାବ, ତାହାଙ୍କୁ ଉଭୟ ଓଡ଼ିଆ ଆଉ ତେଲୁଗୁ ଗୋଷ୍ଠୀଙ୍କ ପାଖରେ ସମ୍ମାନଜନକ ସ୍ଥିତିରେ ପ୍ରତିଷ୍ଠିତ କରି ପାରିଥିଲା ।

ଆସିକା ସ୍କୁଲରୁ ଅବସର ନେବା ସହିତ ତାଙ୍କର ତିରିଶ ବର୍ଷର ଶିକ୍ଷକତା ଜୀବନର ପରିସମାପ୍ତି ଘଟିଥିଲା । ତାଙ୍କର ଶିକ୍ଷାକତାର ଜୀବନ ଆରମ୍ଭ ହୋଇଥିଲା ୧୯୧୩ ସାଲରେ ଆଉ ସମାପନ ହୋଇଥିଲା ୧୯୪୩ ସାଲରେ । ମଝିରେ ଥିଲା ତିରିଶି ବର୍ଷର ସ୍ମରଣୀୟ ଘଟଣା ପ୍ରବାହ । ପ୍ରକୃତରେ ଏହି ତିରିଶି ବର୍ଷର ଶିକ୍ଷକତାର ଜୀବନ ଥିଲା ସଫଳତାର ଏକ ଅପୂର୍ବ ସ୍ମାରକୀ ।

## ଡାକ୍ତର ରାଧାଚରଣ ପଣ୍ଡା
## ଆଉ
## ପରଶୁରାମ

ଏହି ଜୀବନୀ ଲେଖିବାର ପ୍ରାରମ୍ଭିକ ଉଦ୍ୟମ କରିଥିଲେ ସ୍ୱନାମଧନ୍ୟ ପ୍ରତିଷ୍ଠିତ ଲେଖକ ଡାକ୍ତର ରାଧାଚରଣ ପଣ୍ଡା । ସେ ଗବେଷକ ହିସାବରେ ଓଡ଼ିଆ ସାହିତ୍ୟରେ ଅପୂର୍ବ ଖ୍ୟାତି ଅର୍ଜନ କରିଥିଲେ ।

ଡାକ୍ତର ପଣ୍ଡାଙ୍କର ଜନ୍ମ ହୋଇଥିଲା ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ବିଚ୍ଛିନ୍ନା-ଞ୍ଚଳରେ । ତେଣୁ ତାଙ୍କର ଶିକ୍ଷାଗ୍ରହଣର ମାଧ୍ୟମ ଥିଲା ତେଲୁଗୁ ଭାଷା, ମାତ୍ର ବୃତ୍ତି ଥିଲା ଡାକ୍ତରୀ ବିଦ୍ୟା । ତାହା ପୁଣି ଓଡ଼ିଶାର ଏକ ଅବହେଳିତ ଅଞ୍ଚଳରେ । ଗ୍ରାମବାସୀଙ୍କର ସେବା ଆଉ ଉନ୍ନତିରେ ସେ ନିଜକୁ ଉତ୍ସର୍ଗୀକୃତ କରିଥିଲେ ଚିକିତ୍ସକ ଭାବରେ ।

Digitized by PPRACHIN, SOA

ମାତ୍ର ସେ ମୁଖ୍ୟତଃ ଥିଲେ ଜଣେ ଗବେଷକ । ତାଙ୍କର ଗବେଷଣାର କ୍ଷେତ୍ର ପରିବ୍ୟାପ୍ତ ହୋଇଥିଲା, ଓଡ଼ିଶା ଭୂଖଣ୍ଡ, କଳା ପ୍ରାଚୀ ଉପତ୍ୟକାର ସମ୍ଭୂତିଠାରୁ ଚିଲିକାର ଅଭ୍ୟନ୍ତରର ଅଞ୍ଚଳ ପର୍ଯ୍ୟନ୍ତ । ଏ ସମସ୍ତ ବିଷୟ ଉପରେ ସେ ଗ୍ରନ୍ଥମାନ ରଚନା କରି ପ୍ରସିଦ୍ଧି ଅର୍ଜନ କରିଛନ୍ତି । ସେ ନିଜର ଲେଖକ ଜୀବନ ସମ୍ପର୍କରେ ଏହିଭଳି ଉଲ୍ଲେଖ କରିଛନ୍ତି, ପରଶୁରାମଙ୍କର ଜୀବନ ଗ୍ରନ୍ଥ, 'ଲକ୍ଷେ ଗୁରୁଙ୍କର ଗୁରୁ' ପାଣ୍ଡୁଲିପିରେ ।

"ମୁଁ ଓଡ଼ିଆ ପାଠ ପଢ଼ି ନ ଥିଲି । ପିଲାଦିନେ ଖଡ଼ିଛୁଆଁ ଦିନ 'ସିଦ୍ଧିରସ୍ତୁ' ଓଡ଼ିଆରେ ଲେଖିଥିଲି । କିନ୍ତୁ ଆରଦିନ ଏକ ତେଲୁଗୁ ସ୍କୁଲକୁ ଯାଇ ସେଠାରେ ଆଦ୍ୟ ଅକ୍ଷର 'ଓଁ ନମଃ ଶିବାୟ, ସି. ଧି ନମଃ' ଲେଖି ତେଲୁଗୁ ଭାଷାରେ ମାଇନର ପାସ କରିଥିଲି । କେବଳ ଘରେ ବସି ସାମୟିକ, କୋଇଲି, ଗୋପିଭାଷା, କମଳ ଲୋଚନ, ଗୁଣସାଗର ଓ ଦାଢ଼ୀ୍ୟତାଭକ୍ତି ପ୍ରଭୃତି ଓଡ଼ିଆ ପୁରାଣ ପଢ଼ିଥିଲି । କିନ୍ତୁ ପିଲାଦିନେ ସାହିତ୍ୟିକ ଜ୍ଞାନ ପାଇ ନ ଥିଲି । ପରେ ମାଟ୍ରିକ୍ ଉଚ୍ଚଶ୍ରେଣୀ, ପାରଳା କଲେଜରେ ପଢ଼ିଲି ଓ ତା'ପରେ ଡାକ୍ତରୀ ସ୍କୁଲରେ ଚାରିବର୍ଷ ପଢ଼ି 'ମଡ଼ାକାଟି' ଡାକ୍ତର ହେଲି । ଏବେସୁଦ୍ଧା କୌଣସି ଓଡ଼ିଆ ପଦ ବିଶେଷ୍ୟ କି ବିଶେଷଣ କହି ପାରିବି ନାହିଁ । ତଥାପି ଓଡ଼ିଶାକୁ ଆସି ୧୯୨୫ରେ ପାଟକୁଦ ମି: ଇ: ସ୍କୁଲର ସମ୍ପାଦକ ହେବାମାତ୍ରେ ସିଲାବସ ଅନୁସାରେ ଲେଖିଥିବା ମୋର ପ୍ରଥମ ଓଡ଼ିଆ ପୁସ୍ତକ "ସ୍ୱାସ୍ଥ୍ୟଶିକ୍ଷା" ଦୀର୍ଘ ଚାରିବର୍ଷ ପଢ଼ାଇଥିଲି । ଏହି ପୁସ୍ତକ ୧୯୨୮ରେ ଛପା ହେଲା । ସେତେବେଳକୁ ସେ ପୁସ୍ତକରେ ୭୦ ପୃଷ୍ଠା ମାତ୍ର ଥିଲା । କିନ୍ତୁ ଚତୁର୍ଥ ସଂସ୍କରଣବେଳକୁ ସିଲାବସରେ ଆଉ କେତେ ନୂଆ ବିଷୟ ସଂଯୋଗ କରିବା ପରେ, ବିହାର ଓଡ଼ିଶାର ଶିକ୍ଷା ଡିରେକ୍ଟର ଫକ୍ସ ସାହେବଙ୍କର ଅନୁମତି ଆଣି ଚତୁର୍ଥ ସଂସ୍କରଣ ବହି ୧୩୦ ପୃଷ୍ଠା ଛପିଲି । ୧୯୨୮ ଠାରୁ ୧୯୭୧ ପର୍ଯ୍ୟନ୍ତ ଏହି ପୁସ୍ତକର ୨୮ଶ ସଂସ୍କରଣ ଛପା ହେଲା ଓ ତାହା ସମଗ୍ର ଓଡ଼ିଶା, ମାନ୍ଦ୍ରାଜ ଏବଂ ଗଡ଼ଜାତ ପିଲାଙ୍କର ମି: ଇ: ପାଠ୍ୟ ପୁସ୍ତକ ଥିଲା । ପରେ ପରେ ଗତ ୪୫ ବର୍ଷ ମଧ୍ୟରେ ମୁଁ ୫୦ ଖଣ୍ଡି ପୁସ୍ତକ ଓଡ଼ିଆରେ ଲେଖି, କଟକ ଉତ୍କଳ ସାହିତ୍ୟ ସମାଜରୁ ବହୁ ପୁରସ୍କାର ପାଇଲି । ଏପରିକି ଚାକିରି ଛାଡ଼ିବା ପରେ ପ୍ରୌଢ଼ଶିକ୍ଷା ପୁସ୍ତକ ଲେଖି କେନ୍ଦ୍ର ଶିକ୍ଷା ମନ୍ତ୍ରୀଙ୍କଠାରୁ ପାଞ୍ଚଶତ ଟଙ୍କା ପୁରସ୍କାର ପାଇଥିଲି । ମୋର ଏହି ଅନୁଭୂତିରୁ କହିପାରେ, ଇଚ୍ଛା କଲେ ପ୍ରତ୍ୟେକ ଶିକ୍ଷକ କିଛି ସମୟ 'ଶାଠ' ଶିକ୍ଷା କରି ଗ୍ରନ୍ଥ ଲେଖିପାରନ୍ତେ । କିନ୍ତୁ ଉଦ୍ୟମ ନାହିଁ ।" ଏ ଥିଲା ଡାକ୍ତର ପଣ୍ଡାଙ୍କର ନିଜ ଲେଖକ ଜୀବନ ସମ୍ପର୍କରେ ଅନୁଭୂତି ।

Digitized by PPRACHIN, SOA

ଡାକ୍ତର ରାଧାଚରଣ ପଣ୍ଡା, ବାଲୁଗାଁ, ବାଣପୁର ଚିଲିକା ଅଞ୍ଚଳକୁ ନିଜର କର୍ମସ୍ଥଳୀ ରୂପେ ବାଛି ନେଇଥିଲେ । ତେଣୁ ଚିଲିକା ଅଞ୍ଚଳର ଅଧିବାସୀ ପରଶୁରାମଙ୍କର ସହ ବହୁ ଆଗରୁ ପରିଚୟ ଥିଲା । ଡାକ୍ତର ପଣ୍ଡା ତ ଥିଲେ ବହୁଦର୍ଶୀ ଲେଖକ । ଚିଲିକା ଅଞ୍ଚଳର ପ୍ରଥମ ଗ୍ରାଜୁଏଟ ଥିଲେ ପରଶୁରାମ ବର୍ମା । ସେ ଥିଲେ ଓଡ଼ିଶାର ଜଣେ ବରିଷ୍ଠ ଶିକ୍ଷାବିତ୍‌ ଦେଶମିଶ୍ରଣ ଆନ୍ଦୋଳନର ଜଣେ ସକ୍ରିୟ ସଂଗ୍ରାମୀ । ଆଉ ଆଧ୍ୟାତ୍ମିକ ଚିନ୍ତା ଓ ଚେତନାରେ ପ୍ରତିଷ୍ଠିତ ଥିବା ଜଣେ ପ୍ରଭାବଶାଳୀ ବ୍ୟକ୍ତିତ୍ୱ । ତେଣୁ ତାହାଙ୍କର ଜୀବନୀ ଲେଖିବାପାଇଁ ଡାକ୍ତର ପଣ୍ଡାଙ୍କର ବହୁ କାଳରୁ ଅଭିଳାଷ ଥିଲା । ମାତ୍ର ସୁଯୋଗଟି ଆସି ପହଞ୍ଚିଲା ୫ । ୯ । ୧୯୭୫ରେ । ସେହି ସମ୍ପର୍କରେ ଡାକ୍ତର ପଣ୍ଡାଙ୍କର ବକ୍ତବ୍ୟ ନିଜର ଲିଖିତ ପରଶୁରାମଙ୍କ ଉପରେ ଜୀବନୀ ଗ୍ରନ୍ଥରୁ—

"ତା ୫ । ୯ । ୧୯୭୫

ସେଦିନ ଗୁରୁଦିବସ ଥିଲା । ମୁଁ ପୁରୀ ଯାଇଥିଲି । ସେହି ଦିନର ସାକ୍ଷାତ୍‌ରେ ତାହାଙ୍କର ଦୀର୍ଘକାୟ ବପୁ, ଅଜାନୁଲମ୍ବିତ ବାହୁ, ପୃଥୁଳ ତରଳିଆ ଆଖି ଦଇଟା ଓ ଧଳା ପାଚିଲା ଦାଢ଼ୀ ଦେଖି ମୁଗ୍ଧ ହୋଇଥିଲି ।

ସେହି ସାକ୍ଷାତ୍‌ରେ କହିଲି, "ମୁଁ ଆପଣଙ୍କ ଛାତ୍ର ନ ଥିଲି କି ଆପଣ ମୋର ଗୁରୁ ନୁହନ୍ତି । ତଥାପି ଆଜି ଗୁରୁଦିବସରେ ଆପଣ 'ଲକ୍ଷେ ଗୁରୁଙ୍କର ଗୁରୁ' ଥିବାରୁ ମୁଁ ଆପଣଙ୍କର ଜୀବନୀ ଲେଖିବାପାଇଁ ଆସିଛି । ଦୟାକରି ଆପଣ ଯଦି ମୋ ପ୍ରଶ୍ନଗୁଡ଼ିକର ଉତ୍ତର ଦେବେ ମୁଁ ଆପଣଙ୍କୁ 'ସଜୀବ' କରି ରଖିବି । ସେ ହସି ହସି ବସିଗଲେ । ଆଉ ମୁଁ ମୋର ଖାତାରେ ପ୍ରଶ୍ନଗୁଡ଼ିକର ଉତ୍ତର ଟିପିନେଲି ।

ଓଃ, କି ଆନନ୍ଦ ଲାଗିଲା ।

ମୁଁ କପର ଚିହ୍ନିଲି ?

ଆଜକୁ ୫୫ ବର୍ଷ ତଳେ ୧୯୨୭ରେ ମୁଁ ପାରଳା କଲେଜରେ ମାଟ୍ରିକ୍ ପଢ଼ିବା ସମୟରେ ଗଞ୍ଜାମ ଜିଲ୍ଲାର ଆସିକା, ରସଲକୁଣ୍ଡା ପ୍ରଭୃତି ହାଇସ୍କୁଲରେ ଜଣେ ଭଲ ପ୍ରଧାନ ଶିକ୍ଷକ ଥିବାର ଶୁଣିଥିଲି । କିନ୍ତୁ ତାହାଙ୍କର ଘର କଟକ ବୋଲି ଶୁଣିଥିଲି ।

ପରେ ୧୯୨୫ରେ ମୁଁ ଯେତେବେଳେ ଓଡ଼ିଶାକୁ ଆସି ଚିଲିକା ମଧ୍ୟସ୍ଥ ପାରିକୁଦ, କୃଷ୍ଣପ୍ରସାଦ ଡାକ୍ତରଖାନାରେ କାର୍ଯ୍ୟ କଲି ସେତେବେଳେ ପରଶୁରାମ ବର୍ମାଙ୍କର ବନ୍ଧୁମାନଙ୍କର ପରିଚୟ ପାଇଲି । ପରେ ଦିନେ ମାଲୁଦ ଯାଇ ସେଠାରେ ତାଙ୍କର ଘରଡିହ ଦେଖିଥିଲି ।

Digitized by PPRACHIN, SOA

ଏହା ପରେ ମୋର "ପାଇକୁଦ" ଇତିହାସ ଲେଖି ସେହି ଇତିହାସର ଏକ ମନ୍ତବ୍ୟ ଲେଖିବାପାଇଁ ତାହାଙ୍କୁ ଅନୁରୋଧ କଲି । ମୋ ଅନୁରୋଧ ରକ୍ଷାକରି ନିମ୍ନଲିଖିତ ମନ୍ତବ୍ୟ ଲେଖିଥିଲେ ।

**ପାରିକୁଦ ପୁସ୍ତକରେ ମନ୍ତବ୍ୟ—**

ମୋର ଚିଲିକା ଓ ପାରିକୁଦ ସଙ୍ଗେ ଆବାଲ୍ୟ ସମ୍ପର୍କ ଥିବାରୁ ମୁଁ ଲେଖକଙ୍କୁ ଏହି କାର୍ଯ୍ୟ ଲାଗି ଧନ୍ୟବାଦ ଦେଉଅଛି । ମୋ ସଙ୍ଗେ ପାରିକୁଦବାସୀ ଏଥି ସକାଶେ ଲେଖକଙ୍କ ପାଖେ କୃତଜ୍ଞ ରହିବେ ।

ପରଶୁରାମ ବର୍ମା, ବି. ଏ., ବି. ଟି.
ହେଡମାଷ୍ଟର, ବୋର୍ଡ ହାଇସ୍କୁଲ
ଅସିକା ୧୦ । ୧ । ୧୯୨୮

**ଦିନକର ଦେଖା—**

୧୯୩୦ ମସିହାରେ ମେ' ମାସର ଗୋଟିଏ ଦିନ । ମୁଁ ବ୍ରହ୍ମପୁର ଯାଇ ସେଠା 'ଆଶା ପ୍ରେସ' ନିକଟରେ ପରଶୁରାମ ବର୍ମାଙ୍କୁ ହଠାତ୍ ଦେଖିଥିଲି । ସେତେବେଳକୁ ସେ ମୋର ଅନେକ ପ୍ରବନ୍ଧ ଓଡ଼ିଶାର ପତ୍ର ପତ୍ରିକାରେ ପାଠ କରିଥିଲେ । ହଠାତ୍ ମୋତେ ଦେଖିବା ମାତ୍ରେ ମୋର ଏହି ଲେଖାଗୁଡ଼ିକ ପାଇଁ ମୋତେ ଉତ୍ସାହିତ କରିଥିଲେ ।"

ଏ ଥିଲି ରାଧାଚରଣ ପଣ୍ଡାଙ୍କର ପରଶୁରାମଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କର ବିବରଣୀ, ଯାହା ତାଙ୍କର ଲିଖିତ ପରଶୁରାମଙ୍କର ଜୀବନ ଚରିତରୁ ସଂଗୃହୀତ ହୋଇଥିଲି ।

**ବର୍ମା ଦୀର୍ଘଜୀବୀ ହୁଅନ୍ତୁ—**

ଡାକ୍ତର ରାଧାଚରଣ ପଣ୍ଡାଙ୍କର ପୁରୀରେ ସାକ୍ଷାତ ହୋଇଥିଲି ୫ । ୯ । ୭୫ ଗୁରୁବିବସ ଦିନ । ଡାକ୍ତର ପଣ୍ଡାଙ୍କର ଅଭିଳାଷ ଥିଲି ପରଶୁରାମଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ଲେଖିବାପାଇଁ । ଏଥିପାଇଁ ସେ ପ୍ରାରମ୍ଭିକ କିଛି ତଥ୍ୟ ସେହି ଗୁରୁବିବସ ଦିନ ସଂଗ୍ରହ କରିଥିଲେ । ଏହାର ମାତ୍ର ଦଶ ଦିନ ପରେ ୧୭ । ୯ । ୭୫ରେ ଦୈନିକ ସମାଜରେ ନିମ୍ନଲିଖିତ ବାର୍ତ୍ତାଟି ବାହାରିଲି—

**ଶୋକବାର୍ତ୍ତା**

ଭୁବନେଶ୍ୱର ତା ୧୭ । ୯ । ୭୫—ଭୁବନେଶ୍ୱରର ପଣ୍ଡିତ ରଘୁନାଥ ମହାପାତ୍ରଙ୍କର ମୃତ୍ୟୁ ହୋଇଛି । ସେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ସ୍ୱର୍ଗତ ପରଶୁରାମ ବର୍ମାଙ୍କର ବନ୍ଧୁ ଥିଲେ ।

Digitized by PPRACHIN, SOA

ଏ ମିଥ୍ୟା ସମ୍ବାଦ ପଢ଼ି ଡାକ୍ତର ପଣ୍ଡା ସମାଜ ସମ୍ପାଦକଙ୍କୁ ଲେଖିଲେ—

ଶ୍ରୀ ପରଶୁରାମ ବର୍ମା ଦୀର୍ଘଜୀବୀ ହୁଅନ୍ତୁ । ସେ ବଞ୍ଚିଛନ୍ତି । ତାଙ୍କର ବୟସ ଏବେଣି ୮୭ ବର୍ଷ । ପୁଣି କୁଣ୍ଢାଇବେଣ୍ଢ ସାହିରେ ସେ ସୁସ୍ଥ ଅଛନ୍ତି ।

ଡାକ୍ତର ପଣ୍ଡାଙ୍କର ଚିଠି ପାଇ ୧୭ । ୧ । ୭୫ ତାରିଖ ସମାଜରେ ବାହାରିଲା—

## ଶ୍ରୀ ବର୍ମା ଦୀର୍ଘଜୀବୀ ହୁଅନ୍ତୁ

ଗତ ୧୭ ତାରିଖ ଡାକ ସଂସ୍କରଣ ସମାଜରେ ରଘୁନାଥ ମହାପାତ୍ରଙ୍କର ପରଲୋକ ସମ୍ବାଦରେ ଭୁଲକ୍ରମେ ପ୍ରକାଶ ପାଇଥିଲା ସେ ସ୍ୱର୍ଗୀୟ ପରଶୁରାମ ବର୍ମାଙ୍କର ସହକର୍ମୀ ଥିଲେ । ଶ୍ରୀ ବର୍ମା ଏବେ କୁଣ୍ଢାଇବେଣ୍ଢ ସାହିରେ ରହୁଛନ୍ତି । ଭୁଲକ୍ରମେ ତାଙ୍କ ନାମ ପୂର୍ବରୁ ସ୍ୱର୍ଗୀୟ ଛପା ହୋଇ ଯାଇଥିବାରୁ ଆମ୍ଭେ ଦୁଃଖିତ । ସେ ଦୀର୍ଘଜୀବୀ ହୁଅନ୍ତୁ । ଏହାହିଁ ଆମେ କାମନା କରୁଛୁ ।

—ସମ୍ପାଦକ, ସମାଜ

ଏହା ପରେ ଡାକ୍ତର ପଣ୍ଡା ଥରେ ଦୁଇଥର କିଛି ବିବରଣୀ ପରଶୁରାମଙ୍କ-ଠାରୁ ସଂଗ୍ରହ କରି ଲେଖା ଆରମ୍ଭ କରିଥିଲେ । ମାତ୍ର ଏ ମଧ୍ୟରେ ଛ' ବର୍ଷ ବିତି ଯାଇଥିଲା । ୧୯୭୧ ମସିହାରେ ପରଶୁରାମଙ୍କର ହୃଦ୍‌ଯନ୍ତ୍ରରେ କିଛି ଦୁର୍ବଳତା ଦେଖା ଦେଇଥିଲା । ସେ 'କରୋନାରି ଥ୍ରମ୍ବୋସିସ୍' ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ମାତ୍ର ତାଙ୍କର ଅଦମ୍ୟ ଇଚ୍ଛାଶକ୍ତି ଯୋଗୁଁ ସେ ଅଳ୍ପ ଦିନରେ ରୋଗମୁକ୍ତ ହେଲେ । ତା'ପରେ ତାଙ୍କର ଇଚ୍ଛା ଥିଲା ସେ ବାଲୁଗାଁ ଯାଇ ଡାକ୍ତର ରାଧାଚରଣ ପଣ୍ଡାଙ୍କର ପାଖେ ଦୁଇ ଚାରି ଦିନ ରହି ଜୀବନୀର ଅସଂପୂର୍ଣ୍ଣ ଲେଖାଟି ପଢ଼ିବେ ଓ ଆବଶ୍ୟକୀୟ ତଥ୍ୟ ଯୋଗାଇବେ । ଏଥିଲାଗି ଡାକ୍ତର ପଣ୍ଡାଙ୍କ ଘରୁ ସ୍ୱତନ୍ତ୍ର ନିମନ୍ତ୍ରଣ ପାଇଥିଲେ । ମାତ୍ର ତାହା ସମ୍ଭବ ହୋଇ ନଥିଲା ।

## ପୂର୍ଣ୍ଣାଙ୍ଗ ଜୀବନୀ—

ଏହାର କିଛି ମାସ ପରେ ୧୯୭୨ ମସିହାରେ ପରଶୁରାମ ବର୍ମାଙ୍କର ମହାପ୍ରୟାଣ ହୋଇଗଲା । ଏହାର କିଛି ବର୍ଷ ପରେ ଡାକ୍ତର ରାଧାଚରଣ ପଣ୍ଡାଙ୍କର ମଧ୍ୟ ପରଲୋକ ହୋଇଗଲା । ମାତ୍ର ଯେଉଁ ମୂଲ୍ୟବାନ ତଥ୍ୟ ଡାକ୍ତର ପଣ୍ଡା ସଂଗ୍ରହ କରି ପରଶୁରାମଙ୍କର କ୍ଷୁଦ୍ର ଜୀବନୀ ସଂକଳନ କରିଥିଲେ, ତାହା ଏହି ପୁସ୍ତକଟି ଲେଖିବା-ପାଇଁ ମୂଳ ଭିତ୍ତିଭୂମି ରୂପେ କାର୍ଯ୍ୟ କରିଛି । ଅନ୍ୟଥା ଏ ଜୀବନୀ ଲେଖିବାର ପରିକଳ୍ପନା ମଧ୍ୟ ମନକୁ ଛୁଇଁ ନ ଥାଆନ୍ତା । ଏଥିପାଇଁ ଡାକ୍ତର ରାଧାଚରଣ ପଣ୍ଡାଙ୍କର ନିକଟରେ ଆମେ ଗଭୀର ଭାବେ ଋଣୀ । ଏହି ସମସ୍ତ ବିବରଣୀ ଓ ଲେଖା,

Digitized by PPRACHIN, SOA

ଡାକ୍ତର ପଣ୍ଡାଙ୍କର ପୁତ୍ର ଶ୍ରୀଯୁକ୍ତ ସ୍ୱାଧୀନ କୁମାର ପଣ୍ଡାଙ୍କଠାରୁ ପାଇଥିବାରୁ ତାଙ୍କ-ପ୍ରତି କୃତଜ୍ଞତା ଅର୍ପଣ କରୁଛୁ ।

ସ୍ୱାଧୀନ ବାବୁଙ୍କଠାରୁ ସଂଗ୍ରହ କରିଥିବା ଲେଖା ମଧ୍ୟରେ ପରଶୁରାମଙ୍କର, ଡାକ୍ତର ରାଧାଚରଣ ପଣ୍ଡାଙ୍କୁ ଲେଖିଥିବା ଦୁଇଟି ଚିଠି ହସ୍ତଗତ ହୋଇଛି । ପ୍ରଥମ ଚିଠିଟି ୧୮-୨-୭୭ରେ ଲେଖା ହୋଇଛି, ଆଉ ଦ୍ୱିତୀୟ ଚିଠିଟି ୨୫-୧୦-୭୧ରେ ଲେଖା ହୋଇଛି । ଉଭୟ ଚିଠି ଦୁଇଟି ଜୀବନୀ ଲେଖା ସହିତ ସମ୍ପର୍କିତ ଥିବାରୁ ଚିଠି ଦୁଇଟି ଏଠାରେ ଅବିକଳ ଉଦ୍ଧାର କରାଗଲା ।

### ପ୍ରଥମ ଚିଠି

ପରଶୁରାମ ବର୍ମା                                                                                    ପୁରୀ
୧୮-୨-୭୭

ଶ୍ରୀମତ୍ ସୁହୃଦ୍‌ବରେଷୁ—

ଗ୍ରୀଷ୍ମଗଲା କୁଆଁରୀ ପାଣି । ଲୋକ ଦେଖିଲେ ପଠାଇ ଦେବ । ବଡ଼ ହୟରାଣ ହେଲି । ବୋଧହୁଏ ଏଣିକି ଆମ ଘରେ ରହିବ ନାହିଁ ।

ଗୋଟିଏ Document ପାଇଛି ମୋ ସମ୍ବନ୍ଧରେ । ପଠାଇ ଦେବି । ଅପେକ୍ଷା କରିବ ।

ପ୍ରଣତ
ପରଶୁରାମ

### ଦ୍ୱିତୀୟ ଚିଠି

ପୁରୀ, ୨୫-୧୦-୭୧

ଶ୍ରଦ୍ଧେୟ ରାଧାଚରଣ ବାବୁ,

ଏହି ଅକ୍ଷମଣୀୟ ଅପରାଧ ପାଇଁ ଆଉ କେତେ କ୍ଷମା ଭିକ୍ଷା କରିବି । ଆଉ କେତେଥର କ୍ଷମା ଭିକ୍ଷା ଦେଉଥିବେ ।

ଏବେ ମଧ୍ୟ ଶଯ୍ୟାଗତ ଅଛି । ରୋଗର ନାଁ ଥ୍ରମ୍ବୋସିସ୍ । ଅଚେତା ହୋଇ ରହିଲି ୫ ଦିନ । ଆସ୍ତେ ଆସ୍ତେ ଉଠୁଛି । କାନ୍ଥବାଡ଼ ଧରି ଚାଲୁଛି । ଭାତ ଖାଇବାର ହେଲା ୫ ଦିନ । ଏ ଘଟଣା ଘଟିଲା ୧୯ ସେପ୍‌ଟେମ୍ବରରେ ।

ତଥାପି ମୁଁ ଯିବି । ମୋର ଜୀବନୀ ମୋ’ଠୁ ନ ଶୁଣିଲେ ଜୀବନୀ ଅପୂର୍ଣ୍ଣ । ଖଣ୍ଡିତ ହେବ ।

ଆପଣଙ୍କୁ ଜଣାଇବି କେବେ ଯିବି । ଖୁବ୍ ଶୀଘ୍ର ଯିବାକୁ ଚେଷ୍ଟା କରିବି । ବାଃଦ୍ରଃ—ମୋର ଏଠା ଠିକଣା ଏଣିକି ଏହିପରି ହେବ । ପଣ୍ଡିତେଙ୍ଗାରୁ ମୁଁ ଏ ଉପାଧି ପାଇଛି—ମହର୍ଷି ପରଶୁରାମ ।

। ଇତି ।
ପରଶୁରାମ ବର୍ମା

Digitized by PPRACHIN, SOA

ଡାକ୍ତର ରାଧାଚରଣ ଯେଉଁସବୁ ବିବରଣୀ ସଂଗ୍ରହ କରି ପରଶୁରାମଙ୍କର କ୍ଷୁଦ୍ର ଜୀବନୀର ସଂକଳନ କରିଥିଲେ, ତାହାକୁ ଛପାଇଲେ ମାତ୍ର ୧୫ ରୁ ୨୦ ପୃଷ୍ଠା ହୋଇଥାଆନ୍ତା । କିନ୍ତୁ ସମସ୍ତ ବିବରଣୀ ସଂଗ୍ରହ ହୋଇପାରି ନ ଥିବାରୁ ଏହା ବହୁ ଦିଗରୁ ଅସଂପୂର୍ଣ୍ଣ ଥିଲା । ତେଣୁ ଏହାକୁ ଛପାଇବାର ପ୍ରବଳ ଆଗ୍ରହ ଥିଲେ ମଧ୍ୟ ଡାକ୍ତର ପଣ୍ଡାଙ୍କର ମୂଳ ଲକ୍ଷ୍ୟ ପରିପୂର୍ଣ୍ଣ ହୋଇପାରି ନ ଥାଆନ୍ତା, ଜାଣି ସେହି ଉଦ୍ୟମରୁ ବିରତ ହେଲୁ ।

ତେଣୁ ପରଶୁରାମ ବର୍ମାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ଅଲଗାଭାବେ ଲେଖିବାର ପ୍ରଚେଷ୍ଟା କରାଗଲା । ଡାକ୍ତର ପଣ୍ଡାଙ୍କର ଲିଖିତ ପରଶୁରାମଙ୍କର ଜୀବନ ଚରିତରେ ଥିବା ବିବରଣୀଗୁଡ଼ିକ ଏହି ଜୀବନୀର ଯଥାଯଥ ସ୍ଥାନରେ ସଂଯୋଜିତ କରାଗଲା । ଡାକ୍ତର ପଣ୍ଡାଙ୍କର ଲେଖାରୁ ଗୃହୀତ ଅଂଶ ଗୁଡ଼ିକ ସ୍ୱତନ୍ତ୍ର ଉଦ୍ଧୃତିର ଚିହ୍ନ ମଧ୍ୟରେ ଏ ପୁସ୍ତକରେ ପ୍ରକାଶିତ ହୋଇଛି । ଡାକ୍ତର ପଣ୍ଡାଙ୍କର ଅଭିଳାଷକୁ ଚରିତାର୍ଥ କରିବା ପାଇଁ ପରଶୁରାମଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ସଂକଳିତ ହୋଇଛି । ଏହି ଜୀବନୀର ପ୍ରକାଶନ ଅବକାଶରେ ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟିକ ଓ ଗବେଷକ ଡାକ୍ତର ରାଧାଚରଣ ପଣ୍ଡାଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକାଶ କରାଯାଇ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଉଛି ।

---

Digitized by PPRACHIN, SOA

# ଅବସର କାଳୀନ ଜୀବନ

( ୧୯୪୩-୭୬ )

ଥରେ ଜଣେ ପ୍ରଖ୍ୟାତ ଦାର୍ଶନିକ କହିଥିଲେ ଯେ, "ସୂର୍ଯ୍ୟୋଦୟ ଯଦି ବନ୍ଧୁରଙ୍ଗର ବିନ୍ୟାସ ମଧ୍ୟରେ ହୁଏ, ଏତେ ବର୍ଣ୍ଣିଳ ଆଉ ମହିମାଯୁକ୍ତ ପ୍ରସ୍ତରର ପହିଲି ସଂପାତରେ ହୁଏ ଏତେ ଚମକପ୍ରଦ, ସୂର୍ଯ୍ୟାସ୍ତ କାହିଁକି ହେବ ପୁଞ୍ଜିଭୂତ ନିରାଶାର ଏକ ଧୂସର ଯେଉଁ ଆସ୍ତରଣ । ତାହାକୁ ମଧ୍ୟ ବହୁ ଉଜ୍ଜ୍ୱଳ ବର୍ଣ୍ଣର ଚମତ୍କାରିତାରେ ଭରିଦେଇ କରିହେବ ପ୍ରାଣବନ୍ତ ଆଉ ସୁଷମାଯୁକ୍ତ ।

ହଁ, ସେହିପରି ଯଦି ମଣିଷର ବାଲ୍ୟକାଳ ବହୁ ପ୍ରେମାଞ୍ଚକର ଅନୁଭୂତିର ସମନ୍ୱୟ ମଧ୍ୟରେ ହୁଏ ଏତେ ଉପଭୋଗ୍ୟ ଆଉ ପ୍ରେରଣାଦାୟକ, ତାହାହେଲେ ଜରାବସ୍ଥା କାହିଁକି ହେବ ଅବସାଦ ଆଉ ନୈରାଶ୍ୟର ସ୍ତୂପିକୃତ ଅନ୍ଧକାର ! ସୂର୍ଯ୍ୟାସ୍ତ ଭଳି ତାହାକୁ ମଧ୍ୟ କରିହେବ ଅର୍ଥଯୁକ୍ତ ଅଉ ନୂତନ ଅନୁଭୂତିର ଅନ୍ୱେଷଣରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।"

ପରଶୁରାମଙ୍କର ଅବସରକାଳୀନ ସମସ୍ତିଟି ଥିଲା ପରିପୂର୍ଣ୍ଣତାର ଜୀବନ ଆଉ ତାଙ୍କର ଅନ୍ତିମ ବର୍ଷଗୁଡ଼ିକ ଥିଲା ସୂର୍ଯ୍ୟାସ୍ତର ଅପୂର୍ବ ରଙ୍ଗ ବ୍ୟଞ୍ଜନା ଯେପରି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

## ଦୀର୍ଘାୟୁ—

ତାଙ୍କର ସୁଦୀର୍ଘ ଜୀବନ ଲମ୍ବି ଯାଇଥିଲା ଚଉରାନବେ ବର୍ଷ ପର୍ଯ୍ୟନ୍ତ, ହେଲେ ସେଥିରେ ନ ଥିଲା କ୍ଲାନ୍ତିରା ଆଉ ସ୍ଥବିରତାର ସ୍ପର୍ଶ । ହଁ, ସେ ଅବସର ଗ୍ରହଣ ସମୟରେ ପାଦ ଦେଇସାରିଥିଲେ ଜରାବସ୍ଥାର ପ୍ରଥମ ପାହାଚରେ । ସେତେବେଳକୁ ତାଙ୍କର ବୟସ ହୋଇଥିଲା ପଞ୍ଚଷଠି । ସେ ବଞ୍ଚି ରହିଥିଲେ ଆହୁରି ଉଣତିରିଶ ବର୍ଷ । ଅତି ଆଶ୍ଚର୍ଯ୍ୟଭାବେ ସେ ପ୍ରତିରୋଧ କରିପାରିଥିଲେ ଜରାବସ୍ଥାର ନିର୍ଦ୍ଦିଷ୍ଟ ଆକ୍ରମଣକୁ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଥିଲେ ଅତି ଅଭୂତଭାବେ କର୍ମପ୍ରବଣ ।

ପରଶୁରାମଙ୍କର ଶିକ୍ଷକତାର ଜୀବନ ନିରବଚ୍ଛିନ୍ନ ଭାବେ ଥିଲା ଛତିଶବର୍ଷ ଦୀର୍ଘ । ମାତ୍ର ଅବସର ଗ୍ରହଣ ପରେ ସେ ଯେତେବେଳେ ଫେରି ଆସିଥିଲେ, ତାହାଙ୍କୁ ମିଳିଥିଲା ନିମନ୍ତ୍ରଣ, ପୁଣି ଅନ୍ୟ ସରକାରୀ ହାଇସ୍କୁଲମାନଙ୍କରେ ପ୍ରଧାନ ଶିକ୍ଷକର ପଦ ଗ୍ରହଣ କରିବା ପାଇଁ । ମାତ୍ର ଏଥିପାଇଁ ସେ ଅନିଚ୍ଛୁକ ଥିଲେ ମଧ୍ୟ, ବନ୍ଧୁମାନଙ୍କର ସନ୍ତ୍ରକ ଅନୁରୋଧକୁ ଏଡ଼ାଇ ଦେଇ ନ ପାରି କିଛିକାଳ କାର୍ଯ୍ୟରେ ଯୋଗ ଦେଇ-ଥିଲେ ।

Digitized by PPRACHIN, SOA

## ବିଭିନ୍ନ ହାଇସ୍କୁଲରେ ଯୋଗଦାନ ଓ ସହାୟତା—

ଏହି ପର୍ଯ୍ୟାୟରେ ସେ ୧୯୪୩ ମସିହାରେ ପ୍ରଧାନଶିକ୍ଷକ ଭାବେ ବୀରନରସିଂହପୁରର ଭାର୍ଗବୀ ହାଇସ୍କୁଲର କାର୍ଯ୍ୟଭାର ସମ୍ଭାଳିଥିଲେ । ଆଉ ୧୯୪୪ରେ ତେଲଙ୍ଗ ନିକଟସ୍ଥ ପ୍ରହରାଜପୁର ହାଇସ୍କୁଲରେ ଛଅ ମାସ ପାଇଁ ପ୍ରଧାନ-ଶିକ୍ଷକ ଭାବେ ଅବସ୍ଥାପିତ ହୋଇଥିଲେ । ଏହା ଛଡ଼ା ୧୯୭୫-୭୬ ସାଲରେ ଏକ ବର୍ଷ ପାଇଁ ଦଧିମାଛଗାଡ଼ିଆ ହାଇସ୍କୁଲର ଅବୈତନିକ ପ୍ରଧାନ ଶିକ୍ଷକ ଭାବରେ ରହିଥିଲେ । ହେଲେ ଶିକ୍ଷକତା ତାହାଙ୍କ ଗ୍ରାସାଚ୍ଛାଦନ ନ ଥିଲା । ପୁରୀର ଆଙ୍ଗ୍ଲୋ ବେଙ୍ଗଲି ସ୍କୁଲ ୧୯୧୫ ସାଲରେ ଯେତେବେଳେ ବିଶ୍ୱମ୍ଭର ବିଦ୍ୟାପୀଠ ନାମରେ ପୁନର୍ଗଠିତ ହେଲା, ସେତେବେଳେ ଦୀର୍ଘକାଳ ଧରି ଏହି ସ୍କୁଲ ପରିଚାଳନା ପରିଷଦର ସଦସ୍ୟ-ରୂପେ ମାର୍ଗଦର୍ଶନ ପ୍ରଦାନ କରି ଆସିଥିଲେ ।

## ଶ୍ରୀକ୍ଷେତ୍ରବାସୀ—

କଟକ ଆଉ ପୁରୀ ଜିଲ୍ଲାରେ ପାଞ୍ଚବର୍ଷ ଶିକ୍ଷକତା ଆଉ ଗଞ୍ଜାମ ଜିଲ୍ଲାରେ ପ୍ରାୟ ପଚିଶ ବର୍ଷ ପ୍ରଧାନ ଶିକ୍ଷକ ଭାବେ ଅଧିଷ୍ଠିତ ରହି ସେ ଫେରି ଆସିଥିଲେ ଆଦ୍ୟ ଯୌବନର ଶିକ୍ଷାକ୍ଷେତ୍ର ପୁରୀ ସହରକୁ । ପୁରୀ ସହର ପ୍ରତି ତାଙ୍କର ଆକର୍ଷଣ ଥିଲା ଅପରିସୀମ । ତାଙ୍କର ସ୍କୁଲଶିକ୍ଷା ଏହି ସହରରେ ହୋଇଥିଲା । ତାଙ୍କର ବିବାହ ମଧ୍ୟ ଏହି ସହରରେ ହୋଇଥିଲା । ଏଠାରେ ଥିଲେ ତାଙ୍କର ଘନିଷ୍ଠ ବନ୍ଧୁ, ପରିବାର ଓ ସମ୍ପର୍କୀୟ ବ୍ୟକ୍ତିଗଣ । ତେଣୁ ଚାକିରି ର ପ୍ରାରମ୍ଭ କାଳରୁ ତାଙ୍କର ଅବସର ଜୀବନଟି ପୁରୀରେ କଟାଇବା ପାଇଁ ସିଦ୍ଧାନ୍ତ ଗ୍ରହଣ କରିଥିଲେ । କିଛି ବର୍ଷ ପରେ ଏଠାରେ କୁଣ୍ଡାଇବେଣ୍ଟ ସାହି, ଲବଣୀଖିଆ ଛକ (ଜନାର୍ଦ୍ଦନ ଗଳି) ନିକଟରେ ବାସଭବନଟିଏ ଖରିଦ କରି, ତାହାକୁ ଆବଶ୍ୟକମତେ ପରିବର୍ତ୍ତିତ କରିଥିଲେ । ସମସ୍ତ ଗ୍ରୀଷ୍ମ ଅବକାଶରେ ତାଙ୍କର ସମସ୍ତଟି ଏଠାରେ ହିଁ ବିତାଉଥିଲେ । ପୁରୀରେ ତାଙ୍କର ପ୍ରଧାନ ଆକର୍ଷଣ କେନ୍ଦ୍ର ଥିଲା ସମଗ୍ର ସହରରେ ପରିବ୍ୟାପ୍ତ ହୋଇ ଗଢ଼ି-ଉଠିଥିବା ସାଧନାର କ୍ଷେତ୍ର ଓ ଆଶ୍ରମ ସବୁ । ବହୁ ସାଧୁ ମହାତ୍ମାମାନେ ଏଠାରେ ଅବସ୍ଥାନ କରୁଥିଲେ । ସେହି ମହାତ୍ମାମାନଙ୍କୁ ସେ ପରମ ଆଗ୍ରହର ସହ ସାକ୍ଷାତ୍ କରୁଥିଲେ ।

ଏହି ପର୍ଯ୍ୟାୟରେ ତାଙ୍କର ସମ୍ପର୍କ ଗଢ଼ି ଉଠିଥିଲା ପୁରୀରେ ଅବସ୍ଥାନ କରୁଥିବା ମହାନ ଗୁରୁ ସ୍ୱାମୀ ନିଗମାନନ୍ଦ ସରସ୍ୱତୀଙ୍କ ସହ ୧୯୩୪ ମସିହାରେ । ଏହାଙ୍କ ସହିତ ପରିଶୁରାମଙ୍କର ଦୀର୍ଘ ଆଲୋଚନା ହେଉଥିଲା ଯାହାର କିଛି ବିବରଣୀ ନିଗମାନନ୍ଦଙ୍କର ଗ୍ରନ୍ଥାବଳୀରେ ସଂକଳିତ ହୋଇଛି । ତାହାର କିଛି ଉଦ୍ଧୃତ ଏହି ଲେଖାର ପରିଶିଷ୍ଟରେ ପ୍ରଦାନ କରାଯାଇଛି ।

Digitized by PPRACHIN, SOA

ତାଙ୍କର ଜୀବନ ଥିଲା ଅନୁସନ୍ଧିତ୍ସାର । ଜୀବନବ୍ୟାପୀ ଅନ୍ୱେଷଣର ଲକ୍ଷ୍ୟ ଥିଲା ପରମ ସତ୍ୟର କିଛି ସ୍ପର୍ଶ ପାଇବାପାଇଁ । ଏହିଭଳି ଉଦ୍ୟମ ମଧ୍ୟରେ ସେ ଯୌଗିକ ସାଧନା ପଦ୍ଧତିକୁ ଗ୍ରହଣ କରି ସେଥିରେ କିଛି ପରୀକ୍ଷା ନିରୀକ୍ଷା କରିଥିଲେ । ସେ ଭୁବନେଶ୍ୱରଠାରେ ରାମକୃଷ୍ଣ ପରମହଂସ ମଠର ପରମ ସାଧକ ସ୍ୱାମୀ ରାମକୃଷ୍ଣଙ୍କର ମାନସ ସନ୍ତାନ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ସହ ସାକ୍ଷାତ କରି ଆଲୋଚନା କରୁଥିଲେ । ସ୍ୱାମୀଜୀ ତାଙ୍କର ସ୍ୱଚ୍ଛ ସମ୍ପନ୍ନ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଦୀକ୍ଷା ଦେବାପାଇଁ ଅଭିପ୍ରାୟ କରିଥିଲେ ମଧ୍ୟ ତାହା ସମ୍ଭବ ହୋଇ ନ ଥିଲା । ପରବର୍ତ୍ତୀ ଅବସ୍ଥାରେ ସେହି ମଠର ସ୍ୱାମୀ ତାରକ ଶିବାନନ୍ଦ ଏବଂ କିଛି କାଳ ପରେ ସ୍ୱାମୀ ବ୍ରହ୍ମାନନ୍ଦଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ ।

ରାମକୃଷ୍ଣଙ୍କର ସାହିତ୍ୟ ପ୍ରତି ପରଶୁରାମଙ୍କର ଅନୁରାଗ ଥିଲା । ଏହି ଅନୁଷ୍ଠାନର ସମସ୍ତ ସାହିତ୍ୟ ତାଙ୍କ ନିକଟରେ ଗଚ୍ଛିତ ଥିଲା । କେବଳ ରାମକୃଷ୍ଣ ସାହିତ୍ୟ ନୁହେଁ ତାଙ୍କ ସମୟରେ ପ୍ରକାଶିତ ବିଭିନ୍ନ ଧର୍ମ ଓ ପନ୍ଥାର ସମସ୍ତ ଧର୍ମଗ୍ରନ୍ଥ ତାଙ୍କ ନିକଟରେ ରହିଥିଲା ।

ତାଙ୍କର ଅଧ୍ୟୟନ ଏକ ବିଶିଷ୍ଟ ଅଂଶ ବହି କିଣାରେ ବ୍ୟୟିତ ହୋଇଥିଲା । ପ୍ରତି ମାସରେ ବିଭିନ୍ନ ପୁସ୍ତକ ପ୍ରକାଶନ କମ୍ପାନୀକୁ ବହିପାଇଁ ଅର୍ଡ଼ର ପଠାଉଥିଲେ । ସେସବୁ ବହିକୁ ତନ୍ନ ତନ୍ନ ପଢ଼ି ମୁଖ୍ୟ ଅଂଶଗୁଡ଼ିକୁ ରେଖାଙ୍କିତ କରି ରଖୁଥିଲେ ପରବର୍ତ୍ତୀ ଅବସ୍ଥାରେ ପୁନରାବୃତ୍ତି ପାଇଁ । ତାଙ୍କର ଗ୍ରନ୍ଥାଗାରରେ ବେଦ, ଉପନିଷଦ, ଗୀତା, ବେଦାନ୍ତ, ବ୍ରହ୍ମସୂତ୍ର ସହ ବିଭିନ୍ନ ଧର୍ମଶାସ୍ତ୍ରର ପୁସ୍ତକମାନ ଗଚ୍ଛିତ ଥିଲା । ଏହି ଶତାବ୍ଦୀର ପ୍ରଥମ ଭାଗରେ ପ୍ରକାଶିତ ପରମଯୋଗୀ ଅରବିନ୍ଦଙ୍କର ସମ୍ପାଦିତ ଆର୍ଯ୍ୟ ପତ୍ରିକାର କିଛି ସଂଖ୍ୟା ତାଙ୍କ ନିକଟରେ ଗଚ୍ଛିତ ଥିଲା ।

ତାଙ୍କର ପ୍ରିୟ ପୁସ୍ତକଗୁଡ଼ିକୁ ସେ ବାରମ୍ବାର ପଢ଼ୁଥିଲେ । ସେସବୁ ମଧ୍ୟରେ ପ୍ରଧାନ ପୁସ୍ତକ ସବୁ ଥିଲା ସେ ସମୟରେ ପ୍ରକାଶିତ, ରାମକୃଷ୍ଣ ସାହିତ୍ୟ, ବେଦାନ୍ତ, ଉପନିଷଦ, ଗୀତା । ପ୍ରଖ୍ୟାତ ବ୍ରହ୍ମତତ୍ତ୍ୱବିତ୍ ନଗେନ୍ଦ୍ର ନାଥ ବସୁଙ୍କର ସମସ୍ତ ଗବେଷଣାମୂଳକ ଅଧ୍ୟାତ୍ମ ସାହିତ୍ୟ ବ୍ରହ୍ମବିଦ୍ୟା (ଥିଓସଫିକାଲ) ସମିତିର ପ୍ରକାଶିତ ପୁସ୍ତକ ସମ୍ଭାର । ଦର୍ଶନ ଶାସ୍ତ୍ରରେ ସେ ଅନର୍ସ ପାଇଥିଲେ । ପ୍ରାଚ୍ୟ ଦର୍ଶନ ଛଡ଼ା ସମସ୍ତ ପାଶ୍ଚାତ୍ୟ ଦର୍ଶନ, ସୌନ୍ଦର୍ଯ୍ୟ ତତ୍ତ୍ୱବୋଧ ଉପରେ ବହୁ ପୁସ୍ତକ ତାଙ୍କ ନିକଟରେ ଥିଲା । ମାତ୍ର ପରବର୍ତ୍ତୀ ଅବସ୍ଥାରେ ଉପଯୁକ୍ତ ସୁରକ୍ଷାର ଅଭାବରୁ ବହୁ ପୁସ୍ତକ କୀଟଦଂଷ୍ଟ ହୋଇ ନଷ୍ଟ ହୋଇଯାଇଥିଲା ।

ସେ ୧୯୪୮ ମସିହାରେ ଅବସର ଗ୍ରହଣ କରି ପୁରୀ ଆସି ତାଙ୍କର ପୁରାତନ ଗୃହର ମରାମତି ସହ, ନିଜର ରୁଚି ମୁତାବକ ପରିବର୍ତ୍ତନ କରିଥିଲେ । ଏଥିରେ କିଛି ସମୟ ବିତି ଯାଇଥିଲା ।

Digitized by PPRACHIN, SOA

**ପତ୍ନୀ ବିୟୋଗ—**

ଏହି ସମୟରେ ତାଙ୍କର ପତ୍ନୀ ନୀଳମଣି ଦେବୀଙ୍କୁ ସ୍ୱାସ୍ଥ୍ୟଗତ କାରଣରୁ କିଛି ବିପର୍ଯ୍ୟୟର ଅବସ୍ଥା ମଧ୍ୟରେ ଗତି କରିବାକୁ ପଡ଼ିଥିଲା । ହଠାତ୍ ତାଙ୍କର ପତ୍ନୀ ନୀଳମଣି ଦେବୀ ଗୁରୁତର ଭାବେ ପୀଡ଼ିତା ହୋଇପଡ଼ିଲେ । ସେ ଦୀର୍ଘକାଳରୁ ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇଥିଲେ । ସେତେବେଳେ ଆଧୁନିକ ଯୁଗର ଇନ୍‌ସୁଲିନ୍, ବଟିକା ଆଦିର ପ୍ରଚଳନ ନ ଥିଲା । ତେଣୁ ସେ ଯୁଗର ବ୍ୟବସ୍ଥା ଅନୁସାରେ ସ୍ତ୍ରୀଙ୍କର ଚିକିତ୍ସା କରାଉଥିଲେ । ଏହି ରୋଗଟି ଆୟତ୍ତାଧୀନ ଥିଲା । ମାତ୍ର ପୁଷ ଆସିବା ପରେ ଏହାର ପ୍ରକୋପ ବଢ଼ିବାକୁ ଲାଗିଲା ଓ ସମସ୍ତ ଚିକିତ୍ସାର ବ୍ୟବସ୍ଥାକୁ ଅତିକ୍ରମ କରି ଚାଲିଲା ।

ପତ୍ନୀଙ୍କର ଅବସ୍ଥା ଧୀରେ ଧୀରେ ସାଂଘାତିକ ହେବାକୁ ଲାଗିଲା । ଜୀବନଟି କ୍ରମଶଃ କ୍ଷୟପ୍ରାପ୍ତ ହେଲା । ମାତ୍ର ପରଶୁରାମଙ୍କର ପ୍ରଚଣ୍ଡ ଆତ୍ମବିଶ୍ୱାସ ଥିଲା । ସେ ଚିକିତ୍ସା ଶାସ୍ତ୍ରର କିଛି ପୁସ୍ତକ ପଢ଼ି ଡାକ୍ତରଙ୍କ ସହ ପରାମର୍ଶ କରୁଥିଲେ । ରୋଗ ନିରାକରଣର ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ କରିଥିଲେ । ହେଲେ ଶ୍ରୀମତୀ ବର୍ମା ଆସନ୍ନ ମୃତ୍ୟୁକୁ ସେତେବେଳକୁ ଅପେକ୍ଷା କରି ରହିଥିଲେ ।

ହଠାତ୍ ଅଲକ୍ଷଣୀୟ କିଛି ଘଟିଗଲା । କିଛି ପୂର୍ବ ସୂଚନା ନ ଥାଇ ହଠାତ୍ ନୀଳମଣିଙ୍କର ଜୀବନ ଦୀପଟି ଲିଭିଗଲା । ବିପର୍ଯ୍ୟୟର ସେହି ଦାରୁଣ ମୁହୂର୍ତ୍ତକୁ ପରଶୁରାମ ଅତି ଧୈର୍ଯ୍ୟ ସହକାରେ ସାମନା କରିଥିଲେ । ଏହି ଦୁଃଖଦ ପରିସ୍ଥିତିରେ ସମବେଦନା ଓ ସାନ୍ତ୍ୱନା ଜଣାଇବାକୁ ଆସି ପହଞ୍ଚିଥିଲେ ଛାତ୍ର ଜୀବନର ବନ୍ଧୁଦ୍ୱୟ ପଣ୍ଡିତ ନୀଳକଣ୍ଠ ଆଉ ପଣ୍ଡିତ ଗୋଦାବରୀଶ ।

ଏହି ଘଟଣାର ଏକମାସ ପର୍ଯ୍ୟନ୍ତ ସେ ଧୈର୍ଯ୍ୟହରା ହୋଇ ନ ଥିଲେ । ସ୍ତ୍ରୀଙ୍କ ଶୁଦ୍ଧକ୍ରିୟା କୌଣସି ପୁରୋହିତଙ୍କଠାରୁ ସାହାଯ୍ୟ ନ ନେଇ ନିଜେ ହିଁ ସମ୍ପାଦନ କରିଥିଲେ । ଅବଶ୍ୟ ପରବର୍ତ୍ତୀ ବର୍ଷର ଶ୍ରାଦ୍ଧବାସର ଅନୁଷ୍ଠାନ-ମାନଙ୍କରେ ତାଙ୍କର ସହାୟତା କରିବା ପାଇଁ ସଂସ୍କୃତ ମହାବିଦ୍ୟାଳୟର ଅଭିଜ୍ଞ ଅଧ୍ୟାପକମାନଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । ପତ୍ନୀଙ୍କର ପରଲୋକର ପ୍ରାୟ ଏକମାସ ବିତିଗଲା । ହଠାତ୍ ଧୈର୍ଯ୍ୟର ସମସ୍ତ ବନ୍ଧ ଯେମିତି ଭାଙ୍ଗି ଉଜୁଡ଼ିଗଲା । ଶୋକୋଚ୍ଛ୍ୱାସର ଆବେଗ ଯେମିତି ତାଙ୍କୁ ଆଚ୍ଛନ୍ନ କରି ରଖିଥିଲା । ସେ ବହୁ ସମୟ ଧରି ନିରାଶାର ଘନ କୁଜ୍ଝଟିକା ମଧ୍ୟରେ ବୁଡ଼ି ରହୁଥିଲେ । ହେଲେ ଏହି ଅବସ୍ଥା ଦୀର୍ଘକାଳ ସ୍ଥାୟୀ ହୋଇ ନ ଥିଲା । ପରବର୍ତ୍ତୀ ଅବସ୍ଥାରେ ସେ ଅତ୍ୟନ୍ତ ସାହସିକତାର ସହ ସେହି ଦୁରବସ୍ଥାରୁ ମୁକ୍ତ ହୋଇ ନିଜକୁ ବ୍ୟବସ୍ଥିତ ଓ ପ୍ରତିଷ୍ଠିତ କରି ପାରିଥିଲେ ।

Digitized by PPRACHIN, SOA

ତାଙ୍କର ପତ୍ନୀ ନୀଳମଣି ଦେବୀ ଗୋଟିଏ ସମ୍ଭ୍ରାନ୍ତ ପରିବାରରୁ ଆସିଥିଲେ ମଧ୍ୟ ସେ ଯୁଗର ପ୍ରଚଳିତ ବ୍ୟବସ୍ଥା ମଧ୍ୟରେ ଉଚ୍ଚଶିକ୍ଷିତା ହୋଇ ପାରି ନ ଥିଲେ । କିନ୍ତୁ ସେ ସ୍ୱାମୀଙ୍କର ସେବାରେ ନିଜକୁ ଉତ୍ସର୍ଗୀକୃତ କରିଥିଲେ । ପରଶୁରାମଙ୍କ ସହିତ ତାଙ୍କର ସମ୍ପର୍କ ଯେପରି ବିଧି ନିର୍ଦ୍ଦିଷ୍ଟ ଥିଲା । ବିଧାତା ଯେପରି ଜଣକୁ ଅନ୍ୟ ଜଣଙ୍କ ପାଇଁ ଗଢ଼ିଥିଲେ । ଦୀପ୍ତ ପ୍ରଶାନ୍ତ ଚେହେରା, ଶରୀର ଗଠନର ଆକୃତି, ରୁଚି ଓ ଗୃହଚାଳନରେ ଯେପରି ଜଣେ ଅନ୍ୟ ଜଣଙ୍କର ପରିପୂରକ ଥିଲେ ।

ଉଚ୍ଚଶିକ୍ଷିତ ଏବଂ ସମାଜ ସଂସ୍କାରରେ ଅନୁପ୍ରାଣିତ ସ୍ୱାମୀଙ୍କର ଆଦର୍ଶ ଜୀବନର ମୂଲ୍ୟବୋଧ ଅନୁସାରେ ସେ ନିଜ ଜୀବନକୁ ଗଢ଼ିଥିଲେ । କ୍ରମେ ବହୁ ଆଧ୍ୟାତ୍ମିକ ଗ୍ରନ୍ଥର ସଂସ୍ପର୍ଶରେ ଆସିଥିଲେ । ଆଉ ସ୍ୱାମୀଙ୍କର ଅଭିରୁଚି ଅନୁସାରେ ତାହାଙ୍କୁ ବହୁ କୁସଂସ୍କାରଜଡ଼ିତ ବିଧିବିଧାନ ଉପାସ ବ୍ରତ ଆଦିକୁ ଛାଡ଼ିବାକୁ ପଡ଼ିଥିଲା । ଏହିସବୁ କ୍ଷେତ୍ରରେ ସେ ବିନା ପ୍ରତିକ୍ରିୟାରେ ସମସ୍ତ ଅବସ୍ଥାକୁ ଧୈର୍ଯ୍ୟ ଏବଂ ସହିଷ୍ଣୁତାର ସହ ସାମନା କରିଥିଲେ ।

ନୀଳମଣି ଦେବୀଙ୍କର ସୌନ୍ଦର୍ଯ୍ୟ ଥିଲା ଅତୁଳନୀୟ । ସେଇଥିପାଇଁ ପରଶୁରାମ ତାଙ୍କୁ ଶ୍ରଦ୍ଧାରେ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ନାମରେ ନାମିତ କରିଥିଲେ ।

**ରନ୍ଧନ ପ୍ରିୟ—**

ବହୁ ଦର୍ଶନ ଶାସ୍ତ୍ରରେ ଅଭିଜ୍ଞ ପରଶୁରାମଙ୍କର ବିଶେଷ ଅଭିରୁଚି ଥିଲା ରନ୍ଧନଶାସ୍ତ୍ର ପ୍ରତି । ଓଡ଼ିଆମାନଙ୍କ ଘରେଇ ରାନ୍ଧଣା କାଞ୍ଜି, ମହୁର, ବେସର, ଶାକର, ପତରପୋଡ଼ାଠାରୁ ଆରମ୍ଭ କରି ସମସ୍ତ ବଙ୍ଗାଳୀ, ହିନ୍ଦୁସ୍ଥାନୀ, ମୋଗଲାଇ, ମାନ୍ଦ୍ରାଜୀ, ଇଂରେଜୀ ଓ ୟୁରୋପୀୟ ରନ୍ଧନ ପରିପାଟୀ ସମ୍ପର୍କରେ ସେ ପରିଚିତ ଥିଲେ । ତାଙ୍କ ପାଖିରେ ଶ୍ରୀମତୀ ରେବା ରାୟଙ୍କର ରଚିତ ଓଡ଼ିଆ ରନ୍ଧା ବହି "ରାନ୍ଧୁଣୀ" ଠାରୁ ଆରମ୍ଭ କରି ବିଭିନ୍ନ ଭାଷାର ଓ ଅଞ୍ଚଳର ରନ୍ଧାବହି ମହଜୁଦ ଥିଲା ।

ସେ ରନ୍ଧନ ବିଦ୍ୟାରେ ଅଭିଜ୍ଞ ଥିଲେ ମଧ୍ୟ ନିଜେ ରନ୍ଧନଶାଳାରେ ପ୍ରବେଶ କରି ରନ୍ଧନ କର୍ମରେ ଭାଗ ନେଉ ନ ଥିଲେ । ମାତ୍ର ରନ୍ଧନ ପ୍ରଣାଳୀର ପରୀକ୍ଷା, ନିରୀକ୍ଷା, ତାଙ୍କର ସ୍ତ୍ରୀଙ୍କର ଦ୍ୱାରା କରାଉଥିଲେ । ସ୍ୱାମୀଙ୍କର ନିର୍ଦ୍ଦେଶନାରେ ନୀଳମଣି ଦେବୀ ରନ୍ଧନଶାଳାରେ ବିଭିନ୍ନ କିସମର ରାନ୍ଧଣା ପ୍ରସ୍ତୁତ କରୁଥିଲେ । ପରଶୁରାମ ନିଜେ ଚେୟାରେଇ ଘରର କିଛି ଦୂରରେ ରହି ରନ୍ଧନ ବିଧିର ତଦାରଖ କରୁଥିଲେ ।

କୌଣସିଠାରେ କିଛି ସୁସ୍ୱାଦୁ ବ୍ୟଞ୍ଜନ ବା ଅନ୍ୟ ଖାଦ୍ୟ ପ୍ରସ୍ତୁତ ଆସ୍ୱାଦନ କରିବାର ସୁଯୋଗ ପାଇଲେ ତାହାର ରନ୍ଧନ ପ୍ରଣାଳୀ ସମ୍ପର୍କରେ ଅନୁସନ୍ଧାନ

Digitized by PPRACHIN, SOA

କରୁଥିଲେ ଆଉ ଫେରି ଆସି ନିଜର ରନ୍ଧନଶାଳାରେ ସେହି ବିଧିର ପରୀକ୍ଷା କରୁଥିଲେ ।

ରନ୍ଧନ ଶୈଳୀ ସମ୍ପର୍କରେ ପରଶୁରାମଙ୍କର ବକ୍ତବ୍ୟ ଥିଲା "ଖାଲି ମସଲାର ସ୍ୱାଦ ସବୁ ଗ୍ରହଣ କରିବାକୁ ଚାହିଁଲେ ତାହା ହେଲେ କରତଗୁଣ୍ଡକୁ ମସଲା ଦେଇ ରାନ୍ଧିଲେ ମଧ୍ୟ ସୁସ୍ୱାଦୁ ହେବ । ମାତ୍ର ରନ୍ଧନ ଶୈଳୀର ଗୁରୁତ୍ୱ ହେଉଛି ମୂଳ ରନ୍ଧା ସାମଗ୍ରୀ ଯେପରି ପରିବା କମ୍ବା ଶସ୍ୟର ନିଜସ୍ୱ ସ୍ୱାଦୁକୁ ଅକ୍ଷୁଣ୍ଣ ରଖି ତାହା ସହିତ ସମନ୍ୱିତ ହେଉଥିବା ମସଲା ବା ଅନ୍ୟ କିଛି ଉପକରଣ ଯୁକ୍ତ କରି ରାନ୍ଧିବା । ତେଣୁ ପ୍ରତି ପରିବା ବା ଶସ୍ୟ ପାଇଁ କେତେକ ସୁନିର୍ଦ୍ଧାରିତ ପ୍ରସ୍ତୁତ ପ୍ରଣାଳୀ ଅଛି ଯହିଁରେ ତାର ସ୍ୱାଦୁ କେବଳ ଅକ୍ଷୁଣ୍ଣ ରହେ ନାହିଁ ବରଂ ଗୁଣରେ ପରିବର୍ଦ୍ଧିତ ହୁଏ ।

କୌଣସି ପରିବା ବା ଶାଗ ଆଦିକୁ ସେ ଅସ୍ୱାଦୁ ବୋଲି ଗ୍ରହଣ କରୁନ ଥିଲେ । ତେଣୁ ତାଙ୍କ ରନ୍ଧନଶାଳାରେ ସୁନସୁନିଆ, ମଦରଙ୍ଗା, କଳମ, ହିଡ଼ିମିଚୁ ଶାଗଠାରୁ ଆରମ୍ଭ କରି ବଣ ଓଲୁଅ, ପଦ୍ମଫୁଲର ନାଡ଼ ପର୍ଯ୍ୟନ୍ତ ସ୍ଥାନ ପାଉଥିଲା । ଏହିସବୁ ରନ୍ଧନ ପ୍ରଣାଳୀର ପରୀକ୍ଷା ନିରୀକ୍ଷା କରିବାର ମୂଳ ଉଦ୍ଦେଶ୍ୟ ଥିଲା ଅତିଥିଙ୍କର ସତ୍କାର । ତାଙ୍କର ଗୃହର ଅତିଥିଶାଳାରେ ଅତିଥିମାନଙ୍କର ସବୁବେଳେ ଭିଡ଼ ଜମୁଥିଲା । ପ୍ରତି ଆଗନ୍ତୁକ ବ୍ୟକ୍ତିଙ୍କର ଅଭିରୁଚି ଅନୁସାରେ ଭୋଜନ ପ୍ରସ୍ତୁତ ହେଉଥିଲା ।

ମହାତ୍ମା ଗାନ୍ଧି, ନେହେରୁ, ଠକ୍କର ବାପାଙ୍କ ଠାରୁ ଆରମ୍ଭ କରି ଅନ୍ୟ ପ୍ରଦେଶରୁ ଆଗତ ବିଶିଷ୍ଟ ଅତିଥିମାନଙ୍କର ଗ୍ରାମ ପରିଦର୍ଶନ ବେଳେ ଖାଦ୍ୟ ପ୍ରସ୍ତୁତିର ତଦାରଖ କରୁଥିଲେ ପରଶୁରାମ । ଆଉ ଖାଦ୍ୟରେ ସ୍ୱତନ୍ତ୍ର ଅଭିରୁଚି ରଖିଥିବା ପଣ୍ଡିତ ନୀଳକଣ୍ଠ (କିଛି ପରିମାଣରେ ପଣ୍ଡିତ ଗୋଦାବରୀଶ), ଅନ୍ତତଃ ବର୍ଷରେ ଥରେ ଆସି ତାହାଙ୍କର ଅତିଥି ହେଉଥିଲେ, ନିଜର ରସନାର ତୃପ୍ତି ମେଣ୍ଟାଇବା ସହିତ ପୁରାତନ ବନ୍ଧୁତ୍ୱର ସ୍ପର୍ଶକୁ ଉଜ୍ଜୀବିତ କରିବା ପାଇଁ ।

Digitized by PPRACHIN, SOA

# ଅବସରକାଳୀନ ଜୀବନର ଦୈନନ୍ଦିନ କାର୍ଯ୍ୟସୂଚୀ

ପରଶୁରାମଙ୍କର ସୁସ୍ଥାଠାରେ ସୁଦୀର୍ଘ ଅବସରକାଳୀନ ଜୀବନର କାର୍ଯ୍ୟସୂଚୀ ଏପରି ଥିଲା ।

ପ୍ରତ୍ୟହ ପ୍ରାତଃ ସାଢ଼େ ତିନିଟା ବା ଚାରିଟାରୁ ଉଠି ନିତ୍ୟକର୍ମ ସାରି ଧ୍ୟାନରେ ବସୁଥିଲେ । ସାଢ଼େ ପାଞ୍ଚଟା ବେଳେ ସେ ମୁଣ୍ଡରୁ ଗୋଡ଼ ସମସ୍ତ ଶରୀରକୁ ପରିଷ୍କାର ଭାବେ ଧୋଇ ଦେଇ ହାଲୁକା ଆଚ୍ଛାଦନ ପିନ୍ଧି ପ୍ରାତଃ ଭ୍ରମଣରେ ବାହାରୁଥିଲେ । ଯିବା ପୂର୍ବରୁ ଲେମ୍ବୁ ଓ ମହୁ ମିଶ୍ରିତ ପାନୀୟ ପିଉଥିଲେ ।

ସେ ସୂର୍ଯ୍ୟୋଦୟର ବହୁ ପୂର୍ବରୁ ସମୁଦ୍ର କୂଳରେ ପହଞ୍ଚି ଯାଉଥିଲେ । ସମୁଦ୍ର କୂଳରେ କିଛି ପଦଚାରଣ କରି ସୂର୍ଯ୍ୟୋଦୟ ଦର୍ଶନ ସାରି ନିଜର ବାସଭବନକୁ ଫେରି ଆସୁଥିଲେ । ତା'ପରେ ଜଳଯୋଗ ସାରି ପ୍ରତ୍ୟହ ସେ ପରିବା ମାର୍କେଟକୁ ଯାଉଥିଲେ ଏବଂ ସେଦିନର ପ୍ରସ୍ତୁତ ପାଇଁ ଉପଯୁକ୍ତ ତଟକା ପରିବା ସଂଗ୍ରହ କରି ଆଣୁଥିଲେ ।

ଘରେ ପହଞ୍ଚି ନିଜର ସହଧର୍ମିଣୀ, କିମ୍ବା ସଂପର୍କୀୟ ବ୍ୟକ୍ତି ଅଥବା ପରିଚାରିକାକୁ ରନ୍ଧନ ସାମଗ୍ରୀ ବଢ଼ାଇ ଦେଇ, ସେଦିନର ରନ୍ଧନ ପ୍ରସ୍ତୁତ ପାଇଁ ନିର୍ଦ୍ଦେଶ ଦେଉଥିଲେ । ତା'ପରେ ଖବର କାଗଜ ପଢ଼ା, ସାମାନ୍ୟ ଅଧ୍ୟୟନ ସହିତ ଘରେ ପହଞ୍ଚୁଥିବା ବନ୍ଧୁମାନଙ୍କ ସହିତ ଆଳାପ ଆଲୋଚନା କରୁଥିଲେ । ଦିନ ଏଗାରଟା ବେଳେ ଗାଧୋଇବାର ପ୍ରସ୍ତୁତି ସ୍ୱରୂପ ନିଜର ସମଗ୍ର ଶରୀରରେ ତେଲ ମାଲିସ କରନ୍ତି । ତାହା ଥିଲା ରୀତିମତ ଏକ କସରତ । ସେହି ତେଲ ମର୍ଦ୍ଦନ ଲାଗି ତାଙ୍କୁ ପ୍ରାୟ ପନ୍ଦର ମିନିଟ ସମୟ ଲାଗିଥାଏ । ତା'ପରେ ନିକଟସ୍ଥ ଜାଗା ଘରର ପୋଖରୀକୁ ଯାଇ ଶରୀରକୁ କିଛିକାଳ ପାଣିରେ ବୁଡ଼ାଇ ସ୍ନାନ କରନ୍ତି । ଏହି ସମୟରେ ଦେହକୁ ଭଲଭାବେ ଗାମୁଛାରେ ଜୋରରେ ଘଷି ଦେହରେ ଜରି ଯାଇଥିବା ତେଲକୁ ଛଡ଼ାଇ ଦିଅନ୍ତି । ପୋଖରୀରେ ସ୍ନାନ କରିବା ସୁବିଧା ନ ଥିଲେ, ଘରେ ଟବ୍‌ରେ ବସି ସ୍ନାନ କରୁଥିଲେ ।

ପ୍ରାୟ ବାରଟା ବେଳକୁ ସେ ମଧ୍ୟାହ୍ନ ଭୋଜନରେ ବସନ୍ତି । ପ୍ରତି ବ୍ୟଞ୍ଜନକୁ ସେ ଅଲଗା ଅଲଗା ଭାବେ ଗ୍ରହଣ କରି, ତାର ସ୍ୱାଦୁକୁ ଆସ୍ୱାଦନ କରି ଥାଆନ୍ତି । ଆଉ ତାହାର ପ୍ରସ୍ତୁତି ବିଷୟରେ ପଚାରି ବସନ୍ତି । ଗୋଟିଏ ଗୁଣ୍ଡା ଆହାରକୁ ବହୁବାର ଦାନ୍ତରେ ଚୋବାଇ ଚୋବାଇ ଉଦରସାତ୍ କରନ୍ତି । ଖାଇବା ପରେ କୁଳୁକୁଞ୍ଚା ସହିତ ଆଙ୍ଗୁଠିରେ ଦାନ୍ତର ଉଭୟ ପଟକୁ ଘଷି ପରିଷ୍କାର କରି ଦିଅନ୍ତି ।

Digitized by PPRACHIN, SOA

ଖାଇବା ପରେ ଦବା ନଦ୍ରାର ସେ ସମ୍ପୂର୍ଣ୍ଣ ବରୋଧୀ । ଭୋଜନ ପରେ ଅଳ୍ପକାଳ ଆରାମ ଚୌକରେ ବଶ୍ରାମ ପରେ ଆରମ୍ଭ ହୁଏ ସେଦନର ମୁଖ୍ୟ ଅଧ୍ୟୟନର କାର୍ଯ୍ୟକ୍ରମ । ଏହା ପ୍ରାୟ ଦନ ସୃଣ୍ଟା ପର୍ଯ୍ୟନ୍ତ ଚାଲୁଥାଏ । ସାମାନ୍ୟ ଜଳଯୋଗ ପରେ ସେ ସାନ୍ଧ୍ୟ ଭ୍ରମଣରେ ଯାଆନ୍ତାରେ ବାହାର ପ୍ରାୟ ସାଢ଼େ ଛଅଟାରେ ଫେର ଆସନ୍ତି । ଫେରବା ପରେ ଅନେକ ସମୟରେ କଲେଜ ଛାତ୍ର ବା ବନ୍ଧୁ ଆସି ପହଞ୍ଚନ୍ତି ଆଳାପ ଆଲୋଚନା ପାଇଁ । କେବେ କେବେ ଅପରାହ୍ଣରେ ଶ୍ରୀ ଅରବନ୍ଦ ପାଠଚକ୍ର, ଅନ୍ୟ ଆଲୋଚନା ଚକ୍ର ବା ବଶେଷ ଭାବେ ଆୟୋଜିତ ସଭା ସମିତରେ ଯୋଗଦାନ ପରେ ସେ ଘରକୁ ସାଢ଼େ ଆଠଟା ବା ନଅଟା ସୁଦ୍ଧା ଫେର ଆସୁଥିଲେ । ରାତି ଭୋଜନ ନଅଟାରେ । ତା'ପରେ ରାତର ବଶ୍ରାମ ।

## ଜୀବନ ଆଉ ଦର୍ଶନ

ତାଙ୍କର ପଚଶଣ ବର୍ଷର ଜୀବନ ସିଧାସଳଖ ଲମ୍ବି ଯାଇଥିବା ରାସ୍ତାପର ନ ଥିଲା ସହଜ ଆଉ ସରଳ । ସେ ରାସ୍ତା ଥିଲା ବନ୍ଧୁର । ତହିଁରେ ଥିଲା ବହୁ ଉଠାଣି, ଗଡ଼ାଣି, ଘୂରାଣୀ ଆଉ ମୋଡ଼ । ଚାକର ଜୀବନରେ ସେ ବେହସାବୀ ଥିଲେ । ସେ ସମୟରେ ତାଙ୍କର ଦରମାର ହାର ପ୍ରଥମ ଶ୍ରେଣୀ ରେଭେନ୍ୟୁ ଅଫିସରଙ୍କର ସମତୁଲ ଥିଲେ ମଧ୍ୟ ତାଙ୍କର ଖର୍ଚ୍ଚରେ କୌଣସି ନୟନ୍ତ୍ରଣ ନ ଥିଲା । ତାହାର କଛି ଭାଗ ଚାଲିଯାଉଥିଲା ବହୁ ବନ୍ଧୁ ଓ ଛାତ୍ରଙ୍କୁ ସାହାଯ୍ୟ ପ୍ରଦାନ ସହତ ନଜର ତଥା ଛାତ୍ରମାନଙ୍କର ବହି କଣାରେ । ଆଉ ଗୋଟିଏ ମୁଖ୍ୟ ଭାଗ ଚାଲିଯାଉଥିଲା ଅତଥି ପରଚର୍ଯ୍ୟାରେ । ତାଙ୍କର ସଞ୍ଚିତ ଅର୍ଥର ଗୋଟିଏ ମୋଟା ଭାଗ ଚାଲି-ଯାଇଥିଲା ସମ୍ପର୍କୀୟ ଓ ପରଚିତ ଲୋକଙ୍କୁ କରଜ ବା ସାମୟିକ ସାହାଯ୍ୟ ଦେବାରେ, ମାତ୍ର ସେ ଅର୍ଥ ଫେର ଆସି ନ ଥିଲା । ଆଉ ଏଥିପାଇଁ କଚେରୀର ଦ୍ୱାର ମାଡ଼ିବାପାଇଁ ସେ ଅଯୌକ୍ତିକ ମନେ କରୁଥିଲେ ।

ଅବସର ଗ୍ରହଣ ପରେ ତାଙ୍କର ଆୟ ସୀମିତ ହୋଇଗଲା । ଚାକରିଟି ସରକାରୀ ହୋଇ ନ ଥିବାରୁ ପେନ୍‌ସନ୍‌ର ବ୍ୟବସ୍ଥା ନ ଥିଲା । ଚାକର ଶେଷରେ ମିଳିଥିବା କଛି ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କା, ଜମିରୁ ସ୍ୱଳ୍ପ ଆୟ ଆଉ ଘରଭଡ଼ାରୁ ମିଳୁଥିବା ଅର୍ଥରେ, ନଜର ପରବାରକୁ ଚଳାଇବାକୁ ହେଉଥିଲେ ମଧ୍ୟ ନଜ ଖର୍ଚ୍ଚକୁ ସୀମିତ କରବା ତାଙ୍କ ପକ୍ଷେ ସମ୍ଭବ ହୋଇପାର ନ ଥିଲା । ବଶେଷତଃ ଅତଥିମାନେ ଆସି ପହଞ୍ଚିଲେ ତାଙ୍କର ହାତଟି ମୁକୁଳା ହୋଇଯାଉଥିଲା ସେମାନଙ୍କର ପରଚର୍ଯ୍ୟା କରବାରେ ।

ଅବସର ଜୀବନରେ ସେ ସାହାଯ୍ୟ କରୁଥିଲେ ଆଉ କଛି ପରମାଣରେ ସେବା ପ୍ରଦାନ କରୁଥିଲେ ବୃଦ୍ଧାବସ୍ଥାରେ ଅକ୍ଷମ ଓ ଅସହାୟ ହୋଇପଡ଼ିଥିବା

Digitized by PPRACHIN, SOA

ସାଧୁସନ୍ଥଙ୍କୁ । ଏ ପର୍ଯ୍ୟାୟରେ ତାଙ୍କର ଗୃହର ଆଗ ଧାଡ଼ିରେ ଅବସ୍ଥାନ କରୁଥିବା ସନ୍ନ୍ୟାସୀ ରାମକୃଷ୍ଣାନନ୍ଦଙ୍କର ବିଷୟ ଉଦାହରଣ ସ୍ୱରୂପ କୁହାଯାଇପାରେ ।

କେବଳ ଆର୍ଥିକ ଦୁର୍ଗତି ନୁହେଁ, ପତ୍ନୀଙ୍କର ମୃତ୍ୟୁ ପରେ ତାହାଙ୍କୁ ପାରିବାରିକ ଜୀବନରେ ବହୁ ଜଟିଳ ପରିସ୍ଥିତି ମଧ୍ୟରେ ଗତି କରିବାକୁ ପଡ଼ୁଥିଲେ ମଧ୍ୟ ସେ ସମସ୍ତ ଅବସ୍ଥାର ସମ୍ମୁଖୀନ ହୋଇଥିଲେ ଅବିଚଳିତ ଚିତ୍ତରେ ।

**ମଧ୍ୟରାତ୍ରିର ବିକ୍ଷିପ୍ତ ସଂଗ୍ରହ—**

ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲେ ମଧ୍ୟ, ସେ କିଛି ପୁସ୍ତକ ରଚନା କରିଯାଇନାହାନ୍ତି । ହେଲେ ଅବସର କାଳୀନ ଜୀବନରେ ଜନ୍ମାଷ୍ଟମୀ, ଦୁର୍ଗା ପୂଜା ଆଉ ଆଧ୍ୟାତ୍ମିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଉତ୍ସବଗୁଡ଼ିକରେ ସେହି ଉତ୍ସବର ମହତ୍ତ୍ୱ, ତାତ୍ପର୍ଯ୍ୟ ଓ ତା ସହିତ ଜଡ଼ିତ ଥିବା ଦାର୍ଶନିକ ତତ୍ତ୍ୱ ଉପରେ ଗୋଟିଏ ସଂକ୍ଷିପ୍ତ ଲେଖା ପ୍ରସ୍ତୁତ କରୁଥିଲେ, ଯାହାକୁ ଛପାଇ ବନ୍ଧୁ ଓ ସୁହୃଦ୍‌ମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ । ଏହି ପତ୍ରିକାର ଶିରୋନାମା ଥିଲା "Midnight Gleanings from here and there" ବା ଅନ୍ୟ ଅର୍ଥରେ "ମଧ୍ୟରାତ୍ରିର ବିକ୍ଷିପ୍ତ ସଂଗ୍ରହ ।"

ତାହାଙ୍କୁ ଗାଢ଼ନିଦ୍ରା ହେଉଥିଲା । ଜୀବନର ସମସ୍ତ ଦୁଃସହ ପରିସ୍ଥିତିରେ ସେ ଅବିଚଳିତ ରହୁଥିଲେ । ହେଲେ ସେହି ମଧ୍ୟରାତ୍ରିର ଗାଢ଼ ସୁଷୁପ୍ତି ମଧ୍ୟରେ ଯେତେବେଳେ ତାଙ୍କର ନିଦ୍ରା ଭଙ୍ଗ ହେଉଥିଲା ସେତେବେଳେ ତାଙ୍କ ସ୍ମୃତିର ଗନ୍ତାଘରେ ସଞ୍ଚିତ ଥିବା, କିଛି ତଥ୍ୟ ଆଲୋକର ଦୀପ୍ତ ଝଲକ ପରି ଉଦ୍‌ଭାସିତ ହେଉଥିଲେ ପରମ ସତ୍ୟ କିଛି ବିଭବକୁ ପ୍ରକାଶିତ କରି । ସେ ତାହାକୁ ଟିପି ରଖୁଥିଲେ ଓ ପରବର୍ତ୍ତୀ ସମୟରେ ତାହାକୁ ସମ୍ପାଦିତ କରି ପ୍ରକାଶ କରୁଥିଲେ । ଏହି ପର୍ଯ୍ୟାୟରେ ସେ ପ୍ରାୟ ତିରିଶଗୋଟି ପତ୍ରିକା ଛପାଇଥିଲେ ମଧ୍ୟ ତାହା ଦୁଷ୍ପ୍ରାପ୍ୟ ହୋଇପଡ଼ିଛି । ମାତ୍ର ଦୁଇଗୋଟି ପତ୍ରିକା ମିଳିପାରିଛି ତାଙ୍କର ପରମବନ୍ଧୁ ଉଦୟସିଂହ ପଟ୍ଟନାୟକଙ୍କର ଫାଇଲରୁ ।

ଗୀତା, ବେଦାନ୍ତ ଆଉ ଉପନିଷଦ ତାଙ୍କର ଜୀବନ ଦର୍ଶନର ମୂଳ ଭିତ୍ତିଭୂମି ଥିଲା । ଏହାହିଁ ତାହାଙ୍କୁ ଯୋଗାଇଥିଲା ପ୍ରେରଣା ନୈତିକ ଭାବରେ ଜୀବନଯାପନ କରିବା ସହିତ ସମସ୍ତ ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ସାହସିକତାର ସହ ଠିଆ ହେବାପାଇଁ ।

ତାଙ୍କର ସମ୍ପାଦିତ ମଧ୍ୟରାତ୍ରି ସଂଗ୍ରହର ଗୋଟିଏ ସଂଖ୍ୟାରୁ କିଛି ଉଦ୍ଧୃତି ଏଠାରେ ପ୍ରଦାନ କରାଯାଉଛି । ଏହା ପ୍ରକାଶିତ ହୋଇଥିଲା ଜନ୍ମାଷ୍ଟମୀର ଅବସରରେ । ଏହି ଇଂରାଜୀ ଲେଖାର ଓଡ଼ିଆ ଅନୁବାଦ ଏଠାରେ ପ୍ରଦାନ କରାଯାଉଛି ।

Digitized by PPRACHIN, SOA

## 'ପାପରେ ଜଡ଼ିତ ନ ଥିବା ହତ୍ୟା'

ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ
ହତ୍ୱାପି ସ ଇମାନ୍ ଲୋକାନ୍ ନ ହନ୍ତି ନ ନିବଧ୍ୟତେ ।

୧୮ । ୧୭ । (ଗୀତାଗ୍ରନ୍ଥ)

'ଯେ ମନ ଆଉ ଶରୀରର ଊର୍ଦ୍ଧ୍ୱକୁ ଯାଇ ନିଜ ଭିତରେ ଥିବା ପରମ ସତ୍ୟ ଓ ସ୍ଥିତିକୁ ଉପଲବ୍ଧି କରି, ସେହି ମହାନ୍ ସତ୍ତା ସହିତ ଏକୀଭୂତ ହୋଇ ଯାଇଛନ୍ତି, ସେ ଅନ୍ୟାୟର ପ୍ରତିରୋଧ ପାଇଁ, କାହାକୁ ହତ୍ୟା କଲେ ମଧ୍ୟ, ସେ ପାପ କର୍ମ କରନ୍ତି ନାହିଁ, କି ସେହି କର୍ମର ଫଳ ଦ୍ୱାରା ବନ୍ଧା ହୁଅନ୍ତି ନାହିଁ ।'

ବିଶ୍ୱର ମହାନ ଯୁଦ୍ଧରେ ଶ୍ରୀକୃଷ୍ଣ ଅର୍ଜୁନଙ୍କର ସାରଥିର କର୍ମ ସମ୍ପାଦନ କରିଥିଲେ । ସେହି ଯୁଦ୍ଧର ପ୍ରାରମ୍ଭରେ ଅର୍ଜୁନ ବିସ୍ମୟାଭିଭୂତ ତଥା ଭୟଗ୍ରସ୍ତ ହୋଇ ଯାଉଥିଲେ । ଅନ୍ୟଙ୍କୁ ହତ୍ୟା କରିବାର ଚିନ୍ତା ତାହାଙ୍କୁ ଭୟରେ କମ୍ପିତ କରିଦେଉଥିଲା । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ପ୍ରଦାନ କରିବାର ଅବକାଶରେ ତାହାଙ୍କ ମଧ୍ୟରେ ପରମସତ୍ତାଙ୍କର ଚେତନା ଜାଗ୍ରତ କରାଇ, ତାଙ୍କ ମଧ୍ୟରୁ ବିଷାଦ ଓ ଅହଙ୍କାର ଭାବ ଦୂର କରିଥିଲେ । ତା'ପରେ କହିଲେ, 'ହେ ଅର୍ଜୁନ ! କାହିଁକି ତୁମର ଶରୀର ଭୟରେ କମ୍ପିତ ଓ ଶିହରିତ ହେଉଛି ? ତୁମେ ନିର୍ଦ୍ଧାରଣ କର, ତୁମର ବର୍ତ୍ତମାନ ପାଇଁ କର୍ତ୍ତବ୍ୟ କ'ଣ ଅଟେ । ଯଦି ବର୍ତ୍ତମାନ ପାଇଁ ତୁମର କର୍ତ୍ତବ୍ୟ ହେଉଛି, ଏ ସମସ୍ତ ଲୋକଙ୍କୁ ହତ୍ୟା କରିବା, ତାହେଲେ ସେମାନଙ୍କୁ ବିନାଶ କର । ମୁଁ ଈଶ୍ୱରଙ୍କର ମଧ୍ୟରେ ପରମେଶ୍ୱର, ଆଲୋକମାନଙ୍କର ମଧ୍ୟରେ ପରମ ଆଲୋକ, ତଥାପି କ୍ଷଣକ ମଧ୍ୟରେ ଅକଳନ ପ୍ରାଣୀଙ୍କର ବିନାଶ କରୁଅଛି । ପ୍ରାକୃତିକ ଦୁର୍ବିପାକରେ ଅସଂଖ୍ୟ ପ୍ରାଣୀଙ୍କର ପ୍ରାଣହାନି ଘଟୁଛି । ଏହି ସମସ୍ତ କାର୍ଯ୍ୟର ଧାରାରେ ମୁଁ ପ୍ରକୃତି, ପୁରୁଷ, ଓ ଦୈବ ରୂପେ ଦଣ୍ଡାୟମାନ ରହୁଛି । ତାହା ସତ୍ତ୍ୱେ ମୁଁ ରହୁଛି ବିମଳ ଆଉ ଶୁଦ୍ଧ । ଭଗବାନ ମୃତ୍ୟୁର କାରଣ ହୋଇ ପାରନ୍ତି, ତାହାଙ୍କୁ କଣ ଏଥିପାଇଁ ଦୋଷ ଦିଆଯାଇ ପାରିବ ? ନା, ଭଗବାନ ସବୁ ଅବସ୍ଥାରେ ରହିଛନ୍ତି ଅତ୍ୟନ୍ତ ନିର୍ମଳ ଆଉ ପରିଶୁଦ୍ଧ ।

ତା'ପରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି, 'ଯଦି ତୁମେ ସତ୍ୟକୁ ଉପଲବ୍ଧି କର, ଯଦି ତୁମେ ଭଗବାନଙ୍କର ସହିତ ଏକୀଭୂତ ହୁଅ, ଯଦି ଅନ୍ତର ମଧ୍ୟରେ ପରମ ସତ୍ତାଙ୍କୁ ଉପଲବ୍ଧି କରୁଥାଅ, ତାହାହେଲେ ତୁମେ ପରମ ସତ୍ତାଙ୍କର ନିମିତ୍ତରେ ପରିଣତ ହୋଇଯାଅ । ସେତେବେଳେ ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା ଓ କର୍ତ୍ତବ୍ୟ କର୍ମର ସମ୍ପାଦନ ଲାଗି ତୁମର ଶରୀର ଯଦି ଅସଂଖ୍ୟ ପ୍ରାଣୀଙ୍କର ହତ୍ୟା କରେ ଅଥବା ବିନାଶର କାରଣ ହୁଏ, ତାହେଲେ ମଧ୍ୟ ତୁମେ ରହିବ ଅମଳିନ, ଶୁଦ୍ଧ ଆଉ ଅନାହତ ।

Digitized by PPRACHIN, SOA

ଯସ୍ୟ ପ୍ରେରଣାୟ୍ଯ ପାର୍ଥଃ ପ୍ରବୃତ୍ତେ ଯୁଦ୍ଧ କର୍ମଣି,
ତ୍ୟକ୍ତ୍ୱା ସକଳ ସନ୍ଦେହଂ ତମ୍ ବନ୍ଦେ ପରମେଶ୍ୱରମ୍ ॥

'ସେହି ଈଶ୍ୱରଙ୍କର ଈଶ୍ୱର ପରମେଶ୍ୱରଙ୍କୁ ନମସ୍କାର, ଯାହାଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ସକଳ ସନ୍ଦେହ ଓ ସଂଶୟ ପରିତ୍ୟାଗ ପୂର୍ବକ ଅର୍ଜୁନ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ସମ୍ମତ ହୋଇଥିଲେ ।'

## ଶ୍ରୀଅରବିନ୍ଦ ସାଧନାର ସାଧକ ପରଶୁରାମ
## (୧୯୭୨-୭୨)

ଆଧ୍ୟାତ୍ମିକ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ବିପ୍ଳବ ସଂଗଠିତ କରିଥିବା ଯୁଗପୁରୁଷ ଶ୍ରୀଅରବିନ୍ଦଙ୍କର ସମସ୍ତ ଜୀବନ ହିଁ ଏକ ବିପ୍ଳବ । ସେ ଆବିର୍ଭୂତ ହୋଇଥିଲେ କ୍ରମ ବିକାଶର ଏକ କ୍ଷିପ୍ର ପରିବର୍ତ୍ତନର ଧାରାକୁ ପୃଥିବୀ ପୃଷ୍ଠରେ ଅବତରଣ କରାଇବା ପାଇଁ । ସେ ତାଙ୍କ ଜୀବନର ପ୍ରଥମ ଭାଗରେ ଜଣେ ମହାନ୍ ବିପ୍ଳବୀ ଭାବେ ନିଜକୁ ଅର୍ପିତ କରିଥିଲେ, ଭାରତମାତାଙ୍କର ଚରଣ ପ୍ରାନ୍ତରେ ପରାଧୀନତାର ନିଗଡ଼ ବନ୍ଧନରୁ ଦେଶକୁ ମୁକ୍ତ କରିବା ପାଇଁ । ଦେଶର ମୁକ୍ତି ସଂଗ୍ରାମରୁ ସେ ଅଗ୍ରଣୀ ଲମ୍ଫ ଦେଇଥିଲେ ମଣିଷକୁ ନିଜର ଅହଂର ବନ୍ଧନରୁ ମୁକ୍ତ କରି ତାହାକୁ ଏକ ରୂପାନ୍ତରିତ ଆଧ୍ୟାତ୍ମିକ ପରିବେଶରେ ବିଚରଣ କରିବାର ପରମ ସୁଯୋଗ ପ୍ରଦାନ କରିବା ପାଇଁ । ଏହା ଥିଲା ଦେଶର ମୁକ୍ତି ଆନ୍ଦୋଳନରୁ ମାନବ ମୁକ୍ତିର ପର୍ଯ୍ୟାୟ । ଏହି ପରିବର୍ତ୍ତନର ଧାରା ସଂଗଠିତ ହୋଇଥିଲା ଶ୍ରୀଅରବିନ୍ଦଙ୍କର କାରାବାସରେ, ଯେଉଁଠାରେ ସେ ପରମସତ୍ତା ଶ୍ରୀ ବାସୁଦେବଙ୍କର ସାନ୍ନିଧ୍ୟ ଲାଭ କରିଥିଲେ, ସମଗ୍ର ଜେଲ୍‌ର ପରିସର ମଧ୍ୟରେ । ତାଙ୍କ ପାଇଁ ଜେଲ୍ ପରିଣତ ହୋଇଥିଲା ଧ୍ୟାନର ଏକ ମହିମାମୟ କେନ୍ଦ୍ର ଓ ଭଗବତ୍ ସତ୍ତାଙ୍କର ଏକ ଲୀଳାମୟ ଭୂମି ରୂପେ । ଏହି ଅଭିଜ୍ଞତାକୁ ଶ୍ରୀ ଅରବିନ୍ଦ ବର୍ଣ୍ଣନା କରିଛନ୍ତି—

ମୁଁ ଯେତେବେଳେ ଅଜ୍ଞାନତାର ମଧ୍ୟରେ ନିର୍ଭିତ ଥିଲି, ମୁଁ ସେହି ସମୟରେ ଧ୍ୟାନର ସ୍ଥଳୀକୁ ଆସିଲି, ଯେଉଁଠାରେ ପବିତ୍ର ପୁରୁଷମାନେ ସମ୍ମିଳିତ ହୋଇଥିଲେ । ମାତ୍ର ସେମାନଙ୍କର ସଙ୍ଗ ମତେ ବିରକ୍ତିକର ବୋଧ ହୋଇଥିଲା, ଆଉ ସେହି ସ୍ଥାନଟି ହୋଇ ଯାଇଥିଲା ଗୋଟିଏ କାରାଗାର । ମାତ୍ର ମୁଁ ଯେତେବେଳେ ନିଦ୍ରିତ ଅବସ୍ଥାରୁ ଜାଗରିତ ହେଲି, ପରମ ସତ୍ତା ମୋତେ ନେଇଗଲେ ଜେଲ ଭିତରକୁ

Digitized by PPRACHIN, SOA

ଆଉ ସେହି ଜେଲରୁ ପରିବର୍ତ୍ତିତ କରିଦେଲେ ଏକ ଧ୍ୟାନର କ୍ଷେତ୍ର ଆଉ ତାଙ୍କର ଅପରୂପ ଲୀଳାର ଭୂମି ରୂପେ । (46, Thoughts and Aphorisms)

ଏହାହିଁ ଥିଲା ଶ୍ରୀଅରବିନ୍ଦଙ୍କର ଅନ୍ତର୍ଦୃଷ୍ଟିର ଉନ୍ମୀଳନ ମଧ୍ୟରେ ପରମ ସତ୍ତାଙ୍କୁ ଉପଲବ୍ଧି କରିବାର ପରମ ମୁହୂର୍ତ୍ତ । ସାଧନାର କ୍ଷେତ୍ର ଜେଲରୁ ସେ ସେପରି ଛୁଟିକି ହୋଇ ପହଞ୍ଚିଗଲେ ପରମ ପୁଣ୍ୟ କ୍ଷେତ୍ର ପଣ୍ଡିଚେରୀରେ, ଯେଉଁଠାରେ ସେ ସାଧନା କରିଥିଲେ ସାରା ମାନବ ସମାଜର ମୁକ୍ତି ଲାଗି ଅତିମାନସ ଶକ୍ତିର ଅବତରଣର ପ୍ରକ୍ରିୟା ମାଧ୍ୟମରେ । ଏହି ପର୍ଯ୍ୟାୟରେ ସେ ଲାଭ କରିଥିଲେ ତାଙ୍କର ସର୍ବୋତ୍ତମା ଶିଷ୍ୟା ଶ୍ରୀମାଙ୍କର ସମର୍ଥ ସହଯୋଗ । ଉଭୟଙ୍କର ସମ୍ମିଳିତ ଜୀବନବ୍ୟାପୀ ପ୍ରଚେଷ୍ଟା ଉତ୍ସାରିତ କରିଛି ବୈପ୍ଳବିକ ପରିବର୍ତ୍ତନର ଧାରା, ଧରାପୃଷ୍ଠରେ ।

ଶ୍ରୀଅରବିନ୍ଦଙ୍କ ସାଧନାର ଅଭିନବ ସ୍ୱାଦ ଓଡ଼ିଶାର ମାଟି ପ୍ରଥମେ ପାଇଥିଲା ୧୯୫୭-୫୮ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଶ୍ରୀ ପ୍ରପତ୍ତି ସ୍ୱାମୀ ଭାବରେ ଯାଇ ପହଞ୍ଚିଲେ ପଣ୍ଡିଚେରୀରେ ଆଉ ବାବାଜୀ ଶ୍ରୀ ରାମକୃଷ୍ଣ ଦାସଙ୍କର ସହିତ ସମ୍ମିଳିତ ହୋଇ ଶ୍ରୀଅରବିନ୍ଦଙ୍କର ଗ୍ରନ୍ଥ ସବୁ ଓଡ଼ିଆ ଭାଷାରେ ପ୍ରକାଶିତ କରିବା ପାଇଁ ପ୍ରଚେଷ୍ଟା ଆରମ୍ଭ କଲେ । ଏହିଠାରେ ଓଡ଼ିଶାର ମାଟି ଲାଭ କଲା । ସର୍ବୋତ୍ତମଙ୍କର ସାରସ୍ୱତ ସ୍ପର୍ଶ, ନବ ଉନ୍ମେଷିନୀ ଚେତନାର ଶୁଭ ବାର୍ତ୍ତା ବହନ କରି । ଏହା ଥିଲା ସର୍ବୋତ୍ତମଙ୍କର ଶୁଭ ଆମନ୍ତ୍ରଣ ଓଡ଼ିଶା ପ୍ରତି । ଏହି ଆମନ୍ତ୍ରଣର ପ୍ରଭାବ ଏପରି ତାତ୍ପର୍ଯ୍ୟପୂର୍ଣ୍ଣ ଓ ସୁଦୂରପ୍ରସାରୀ ହେବ, ତାହା ଥିଲା ସେ ସମୟରେ ସମସ୍ତ କଳ୍ପନାର ବାହାରେ । ଅକଳ୍ପନୀୟ କିଛି ଘଟିଗଲା । ମାତ୍ର କେତୋଟି ବର୍ଷରେ, ଓଡ଼ିଶା ପରିଣତ ହୋଇଗଲା ଶ୍ରୀଅରବିନ୍ଦଙ୍କର ସାଧନାର ଏକ ପ୍ରମୁଖ କ୍ଷେତ୍ର ରୂପେ ।

ଶ୍ରୀ ପ୍ରପତ୍ତି ପଣ୍ଡିଚେରୀ ଆଶ୍ରମରେ ୧୯୫୭ ମସିହାରେ ଅବସ୍ଥାନ ପରେ, ସେ ହୋଇଗଲେ ପଣ୍ଡିଚେରୀର ପୁଣ୍ୟକ୍ଷେତ୍ର ଓ ଓଡ଼ିଶା ମଧ୍ୟରେ ସଂଯୋଗର ସେତୁ । ବର୍ତ୍ତମାନ ସମଗ୍ର ଭାରତରେ ଓଡ଼ିଶା ପ୍ରଦେଶ ଏକ ମହାନ୍ ଗୌରବର ଅଧିକାରୀ, ଯେଉଁଠାରେ ସର୍ବାଧିକ ସଂଖ୍ୟାରେ ଶ୍ରୀଅରବିନ୍ଦଙ୍କର ସାଧନା ଆଧାରିତ ପାଠଚକ୍ର ଓ ବିଦ୍ୟାଳୟମାନ ଗଢ଼ି ଉଠିଛି । ହୁଏତ ଏଥିପାଇଁ ଶ୍ରୀମାଙ୍କର ଆଶୀର୍ବାଦର ଭୂମି ହୋଇ ଯାଇଛି ଓଡ଼ିଶା । ବର୍ତ୍ତମାନ ଓଡ଼ିଶା ଶ୍ରୀଅରବିନ୍ଦଙ୍କର ସାଧନାର ଧାରାର ମହାନ୍ ସ୍ରୋତରେ ପରିଣତ ହୋଇଛି । ମାତ୍ର ଏହି ଧାରାର ପ୍ରଥମ ଉତ୍ସର ସ୍ୱଚ୍ଛ ଧାରାଟି ବହିବାକୁ ଆରମ୍ଭ ହୋଇଥିଲା ୧୯୬୨-୬୩ରେ ।

### ଖୋର୍ଦ୍ଧା ପାଠଚକ୍ର—

ଓଡ଼ିଶାର ଯେଉଁ କେତୋଟି ସ୍ଥାନ ଶ୍ରୀଅରବିନ୍ଦଙ୍କର ଦର୍ଶନର ଆଲୋକରେ ପ୍ରଥମେ ଉଦ୍ଭାସିତ ହୋଇଥିଲା ତାହା ମଧ୍ୟରେ ଥିଲା ଖୋର୍ଦ୍ଧା ଆଉ ଜଟଣୀ । ଏହି

Digitized by PPRACHIN, SOA

ସମୟରେ ଶ୍ରୀଅରବିନ୍ଦଙ୍କ ପ୍ରଦର୍ଶିତ ମାର୍ଗର ମହାନ୍ ସାଧକ ଶ୍ରୀ ନମାଇଁ ଚରଣ ମହାପାତ୍ର ଅବସ୍ଥାପିତ ହୋଇଥାଆନ୍ତି ରେଲବାଇର ଏକ ଉଚ୍ଚ ପଦସ୍ଥ କର୍ମଚାରୀ ରୂପେ କଟଣୀରେ । ଖୋର୍ଦ୍ଧାରେ ଥାଆନ୍ତି କବୟିତ୍ରୀ ଶ୍ରୀମତୀ ବିଦ୍ୟୁତ୍ପ୍ରଭା ଦେବୀ ଓ ତାଙ୍କର ସ୍ୱାମୀ ଶ୍ରୀ ପଞ୍ଚାନନ ମହାନ୍ତି । ଏତିକିବେଳେ ଖୋର୍ଦ୍ଧାରେ, ସ୍କୁଲ ଆଉ କଲେଜରେ ପଢ଼ୁଥିବା ଛାତ୍ରଛାତ୍ରୀମାନେ ସେମାନଙ୍କର ଅଭିଭାବକମାନଙ୍କ ସହ ମିଶି ଗଢ଼ିଥାଆନ୍ତି ଶ୍ରୀଅରବିନ୍ଦ ପାଠଚକ୍ର ।

ଏହି ସମୟରେ ଅପୂର୍ବ ସଂଯୋଗ ବଶତଃ ପରଶୁରାମ ଅବସ୍ଥାନ କରୁଥିଲେ କିଛି ବର୍ଷ ପାଇଁ ତାଙ୍କର ବନ୍ଧୁ ପ୍ରଧାନ ଶିକ୍ଷକ ହରିସିଂହ ପଟ୍ଟନାୟକଙ୍କର ବାସଭବନରେ ଖୋର୍ଦ୍ଧାଠାରେ । ସ୍ୱକଣର ପ୍ରାରମ୍ଭିକ ସମୟରୁ ଶ୍ରୀଅରବିନ୍ଦ ଆଶ୍ରମରୁ ପ୍ରକାଶିତ 'ଆର୍ଯ୍ୟ'ର କିଛି ସଂଖ୍ୟା ପରଶୁରାମଙ୍କ ପାଖରେ ପହଞ୍ଚି ଥିଲା । ଏଥିରେ ଶ୍ରୀଅରବିନ୍ଦଙ୍କର ଯୋଗ ସାଧନା ସମ୍ପର୍କିତ ନିବନ୍ଧଗୁଡ଼ିକ ପରଶୁରାମ ଅତ୍ୟନ୍ତ ଆଗ୍ରହର ସହ ପଢ଼ୁଥିଲେ ।

ଏହା ପରେ ଶ୍ରୀଅରବିନ୍ଦ ସାହିତ୍ୟ ପଢ଼ିବାର କୌଣସି ସୁଯୋଗ ପରଶୁରାମଙ୍କୁ ମିଳି ପାରି ନ ଥିଲା । ମାତ୍ର ୧୯୬୦ ପରଠାରୁ ଶ୍ରୀ ଅରବିନ୍ଦ ଆଶ୍ରମରୁ ପ୍ରକାଶିତ କିଛି ସାହିତ୍ୟର ଓଡ଼ିଆ ଅନୁବାଦ ଓ ମୂଳ ଇଂରାଜୀ ବହି ଆସି ଓଡ଼ିଶାରେ ପହଞ୍ଚିଲା । ସେଥିମଧ୍ୟରୁ କେତୋଟି ପରଶୁରାମଙ୍କର ହସ୍ତଗତ ହୋଇଥିଲା । ଏହାକୁ ଅଧ୍ୟୟନ କରିସାରିବା ପରେ ସେ ଦୀର୍ଘକାଳ ଧରି ଅନ୍ୱେଷଣ କରୁଥିବା ମାର୍ଗର କିଛି ଝଲକ ଦେଖିବାକୁ ପାଇଲେ, ଯାହା ଗତାନୁଗତିକ ଆଧ୍ୟାତ୍ମିକ ସାଧନାର ମୂଳ ଧାରାରୁ ସମ୍ପୂର୍ଣ୍ଣ ଅଲଗା ଥିଲା ; ମାତ୍ର ଭାରତର ମୂଳ ସଂସ୍କୃତି ସହିତ ଅବିଚ୍ଛେଦ୍ୟ ଭାବେ ସମ୍ପର୍କିତ ଥିଲା ।

ଏହା ପରେ ପରଶୁରାମ ଯେତେବେଳେ ୧୯୬୬ରୁ ଖୋର୍ଦ୍ଧାରେ କିଛିକାଳ ଅବସ୍ଥାନ କରିବାକୁ ଲାଗିଲେ, ଏଠାକୁ ଆସି ପ୍ରତି ରବିବାର ଦିନ ଶ୍ରୀ ନମାଇଁ ଚରଣ ମହାପାତ୍ର ଆଲୋଚନାର ବୈଠକ ଆୟୋଜନ କରୁଥିଲେ । ଏଥିପାଇଁ ସହଜରେ ମିଳିପାରୁଥିଲା ଖୋର୍ଦ୍ଧା ହାଇ ସ୍କୁଲର କୋଠରୀ ହରିସିଂହଙ୍କର ସହୃଦୟତାରୁ ।

ମଧ୍ୟେ ମଧ୍ୟେ ଶ୍ରୀ ପ୍ରପତ୍ତି ଅଭି ବାବାଜୀ ଶ୍ରୀ ରାମକୃଷ୍ଣ ଦାସ ମଧ୍ୟ ଏଠାର ସଭାରେ ଯୋଗଦାନ କରି ଆଲୋଚନାର ଧାରାକୁ ଅଧିକ ଜୀବନ୍ତ ଓ ସରସ କରି ପାରୁଥିଲେ ।

ଏହି ସମୟରେ ଖୋର୍ଦ୍ଧାରେ ଅବସ୍ଥାନ କରୁଥାଆନ୍ତି ଶ୍ରୀମତୀ ମନୋରମା ମହାପାତ୍ର, ବର୍ତ୍ତମାନ "ସମାଜ" ପତ୍ରିକାର ସହଯୋଗୀ ସମ୍ପାଦିକା । ତାଙ୍କର ସ୍ୱାମୀ ଶ୍ରୀଯୁକ୍ତ ପଦାରବିନ୍ଦ ମହାପାତ୍ର ଏଠାରେ ବନ ବିଭାଗର ଅଧିକାରୀ ରୂପେ ଅବସ୍ଥାପିତ

Digitized by PPRACHIN, SOA

ହୋଇଥିଲେ । ଶ୍ରୀମତୀ ମହାପାତ୍ର ଏଠାର ମହିଳା ସମିତି ଓ ଶ୍ରୀ ଅରବିନ୍ଦ ଆଲୋଚନା କାର୍ଯ୍ୟକ୍ରମ ସହିତ ସମ୍ପର୍କିତ ଥିଲେ । ବିଦ୍ୟାସିଂହ ବାବୁଙ୍କ ଧର୍ମପତ୍ନୀ ଶ୍ରୀମତୀ ସୁଧାମଣି ଦେବୀ ଥିଲେ ଶ୍ରୀଅରବିନ୍ଦ ପାଠଚକ୍ରର ସମ୍ପାଦିକା ଆଉ ମହିଳା ସମିତିର ସଭାନେତ୍ରୀ । ଏଣୁ ଏହି ଅବକାଶରେ ଖୋର୍ଦ୍ଧା ସହରର ବହୁ ସମ୍ଭ୍ରାନ୍ତ ପରିବାରର ମହିଳାମାନେ ଆକର୍ଷିତ ହୋଇ ଆସି ପାଠଚକ୍ର ଓ ଆଲୋଚନା ଚକ୍ରରେ ଯୋଗଦାନ କରୁଥାନ୍ତି । ଏହା ଛଡ଼ା ସେ ସମୟର କଲେଜ ପ୍ରିନ୍ସ ଶ୍ରୀ ଅରୁଣ-କାନ୍ତ ମହାନ୍ତିଙ୍କ ପରିବାରର ସମସ୍ତ ସଦସ୍ୟ ଏହି ସାଧନାର ଧାରାରେ ନିଜକୁ ଉତ୍ସର୍ଗୀକୃତ କରି ଥାଆନ୍ତି । ପ୍ରାରମ୍ଭିକ ଅବସ୍ଥାରେ ଉଭୟ ଖୋର୍ଦ୍ଧା ଓ ଜଟଣୀ, ଅରବିନ୍ଦ ସାଧନାର ଧାରାକୁ ପ୍ରସାରିତ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ପ୍ରତି ନୂଆ ବର୍ଷର ପ୍ରଥମ ରବିବାର ଦିନ ଖୋର୍ଦ୍ଧାରେ ଓ ଦ୍ୱିତୀୟ ରବିବାର ଦିନ ଜଟଣୀରେ ବାର୍ଷିକ ଉତ୍ସବମାନ ଅନୁଷ୍ଠିତ ହେଉଥିଲା । ଅଧିବେଶନରେ ପ୍ରବଳ ଜନସମାଗମ ହେଉଥିଲା । ତେଣୁ ପରଶୁରାମ ଏହି ସମୟରେ ଖୋର୍ଦ୍ଧାରେ ଅବସ୍ଥାନ କରୁଥିବା ଯୋଗୁଁ ସେ ଶ୍ରୀଅରବିନ୍ଦଙ୍କର ରଚିତ ମୁଖ୍ୟ ଗ୍ରନ୍ଥଗୁଡ଼ିକ ପଢ଼ିବା ସହିତ ଆଲୋଚନାରେ ଭାଗ ନେବାପାଇଁ ପ୍ରକୃଷ୍ଟ ସମୟ ପାଉଥିଲେ ।

ଏହି ପଠନ ଓ ଆଲୋଚନା ମଧ୍ୟରେ, ସେ ଜୀବନ ସାରା ଧରି ଯେଉଁ ମାର୍ଗର ଅନୁସନ୍ଧାନରେ ଲାଗିପଡ଼ିଥିଲେ, ତାହା ଯେପରି ତାଙ୍କର ହାତ ପାହାନ୍ତାରେ ଆସି ପହଞ୍ଚିଗଲା । ସେ କୃତସଙ୍କଳ୍ପ ହେଲେ ତାଙ୍କ ଜୀବନର ଅବଶିଷ୍ଟ ସମୟତକ ଶ୍ରୀଅରବିନ୍ଦଙ୍କର ଯୋଗସାଧନାରେ ସମର୍ପିତ କରିବା ପାଇଁ । ସେ କିଛିକାଳ ଖୋର୍ଦ୍ଧାରେ ଅବସ୍ଥାନ କରି ପୁରୀକୁ ଫେରି ଆସିଥିଲେ । ଏହା ପରେ ୧୯୬୫ ଅଗଷ୍ଟ ୧୪ ତାରିଖଠାରୁ ନିଜ ବାସଗୃହରେ ସାପ୍ତାହିକ ଶ୍ରୀଅରବିନ୍ଦ ପାଠଚକ୍ରର ବ୍ୟବସ୍ଥା କରିଥିଲେ ଓ ତାହାର ଅଧିବେଶନ ପ୍ରତି ରବିବାର ସନ୍ଧ୍ୟା ୫ଟାରୁ ୭ଟା ପର୍ଯ୍ୟନ୍ତ ଚାଲୁଥିଲା । ପରଶୁରାମଙ୍କ ନାତୁଣୀ ଝିଲ୍ (ରାଜମଣି) ପାଠଚକ୍ରର ଦାୟିତ୍ୱ ବହନ କରିଥିଲେ ଓ ଶ୍ରୀ ବର୍ମା ବିଶେଷ ସ୍ଥଳରେ ବ୍ୟାଖ୍ୟା କରୁଥିଲେ । ଏହିଠାରୁ ଆରମ୍ଭ ହୋଇଥିଲା ଶ୍ରୀଅରବିନ୍ଦ ପାଠଚକ୍ର ଯୋଗର ପ୍ରଚାର ଓ ପ୍ରସାର । ପରେ ପରେ ଦ୍ୱିତୀୟ ନାତୁଣୀ ଡଲିକୁ ପଠାଇଥିଲେ ପଣ୍ଡିଚେରୀ ଶ୍ରୀ ଅରବିନ୍ଦ ଶିକ୍ଷା କେନ୍ଦ୍ରରେ ଅଧ୍ୟୟନ ପାଇଁ । ସେ ୧୯୭୨ରେ କୃତିତ୍ୱର ସହ ପାସ କରି ଫେରି ଆସିଥିଲା ।

ପ୍ରାୟ ୧୯୬୪ ବେଳକୁ ପୁରୀରେ ଶ୍ରୀଅରବିନ୍ଦ ଯୋଗ ସାଧନାର ପ୍ରସାର ଆରମ୍ଭ ହୋଇ ସାରିଥିଲା । ଏଠାରେ ଅବସ୍ଥାପିତ ଥିଲେ ସେତେବେଳେ ପରବର୍ତ୍ତୀ କାଳରେ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ବରିଷ୍ଠ ପ୍ରଶାସନିକ ଅଫିସର ଶ୍ରୀ ବିହାରୀ ଲାଲ୍ ପଟ୍ଟନାୟକ ଆଉ ଯେଉଁମାନେ ଦୀର୍ଘକାଳରୁ ଶ୍ରୀଅରବିନ୍ଦ

Digitized by PPRACHIN, SOA

ସାଧନା ସହିତ ଯୁକ୍ତ ହୋଇଥିଲେ । ପରଶୁରାମ ପୁରୀରେ ପହଞ୍ଚିବା ପରେ ସେ ହୋଇଗଲେ ଶ୍ରୀଅରବିନ୍ଦ ସାଧନା ଧାରାର ମୁଖ୍ୟ ପ୍ରେରଣା ଦାତା । ଦ୍ରୁତ ଗତିରେ କେବଳ ପୁରୀ ସହରରେ ନୁହେଁ ସମସ୍ତ ଜିଲ୍ଲାରେ ଶ୍ରୀଅରବିନ୍ଦ ପାଠଚକ୍ରମାନ ଗଢ଼ି ଉଠିଥିଲା । ପୁରୀ ସହରରେ ପ୍ରତି ପାଠଚକ୍ର ଅଧିବେଶନରେ ଯୋଗ ଦେଉ-ଥିଲେ ପରଶୁରାମ ତାଙ୍କର ଅତିକ୍ରାନ୍ତ ପରିଣତ ବୟସ ସତ୍ତ୍ୱେ । ସେତେବେଳକୁ ପରଶୁରାମଙ୍କର ବୟସ ନବେ ବର୍ଷକୁ ଛୁଇଁ ସାରିଥିଲା ।

ଏ ବୟସରେ ସେ ପ୍ରଥମେ ପଣ୍ଡିଚେରୀ ପରିଦର୍ଶନ କରିଥିଲେ ୧୯୬୫ ସାଲରେ । ଏହି ପରିଦର୍ଶନ, ତାଙ୍କର ଦୃଷ୍ଟିଭଙ୍ଗୀକୁ ସମ୍ପୂର୍ଣ୍ଣ ଭାବେ ବଦଳାଇ ଦେଲା । ଏହା ପରେ ସେ ପ୍ରାୟ ପ୍ରତିବର୍ଷ ଯାଉଥିଲେ ପଣ୍ଡିଚେରୀକୁ ବିଶିଷ୍ଟ ଦର୍ଶନ ଦିବସ-ମାନଙ୍କରେ । ସେ ପ୍ରଥମେ ଶ୍ରୀମାଆଙ୍କର ସ୍ୱତନ୍ତ୍ର ଦର୍ଶନ ପାଇଥିଲେ ନଭେମ୍ବର ପହିଲା ୧୯୬୭ ସାଲରେ । ଶ୍ରୀମା ମଧ୍ୟ ପରଶୁରାମଙ୍କର ନବେବର୍ଷ ଅତିକ୍ରାନ୍ତ କରିଥିବା ପରିଣତ ବୟସରେ, ତାଙ୍କର ସ୍ଫୂର୍ତ୍ତି ଓ କାର୍ଯ୍ୟଦକ୍ଷତା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିଲେ । ପରଶୁରାମ ଶ୍ରୀମାଙ୍କର ଶେଷ ଦର୍ଶନ ପାଇଥିଲେ ଶେଷଥର ପରି-ଦର୍ଶନରେ ଅଗଷ୍ଟମାସ ଉଣେଇଶ ଶହ ଏକସ୍ତରି ସାଲରେ ।

ପରଶୁରାମ ପଣ୍ଡିଚେରୀର ବିଶିଷ୍ଟ ସାଧକ ଗୋଷ୍ଠୀଙ୍କର ସହିତ ଘନିଷ୍ଠ ସମ୍ପର୍କ ସ୍ଥାପନ କରିଥିଲେ । ପରମ ସାଧକ ବାବାଜୀ ଶ୍ରୀ ରାମକୃଷ୍ଣ ଦାସ, ପରଶୁରାମଙ୍କର ବିଦ୍ୱତ୍ତାରେ ମୁଗ୍ଧ ହୋଇ ତାଙ୍କୁ 'ମହର୍ଷି' ବୋଲି କେବଳ ସମ୍ବୋଧିତ କରୁ ନ ଥିଲେ, ତାଙ୍କର ପରଶୁରାମଙ୍କ ସହିତ ସମସ୍ତ ଚିଠିର ଆଦାନ ପ୍ରଦାନରେ ଏହି ପଦବୀର ବ୍ୟବହାର କରୁଥିଲେ ।

ପରଶୁରାମ ଶ୍ରୀଅରବିନ୍ଦ ସାଧନାର ଦିଗରେ ନିବିଷ୍ଟ ଥିବାବେଳେ ସେ ଯେପରି ଫେରି ପାଉଥିଲେ ତାରୁଣ୍ୟର ଶକ୍ତି ଆଉ ଉଦ୍ଦାମତା । ଶ୍ରୀଅରବିନ୍ଦ-ପ୍ରେମୀ ଗୋଷ୍ଠୀଙ୍କର ସମାବେଶରେ ତାଙ୍କର ଭିତରେ ଭରି ଯାଉଥିଲା ଅଫୁରନ୍ତ ଶକ୍ତିର ଉଚ୍ଛ୍ୱାସ ଆଉ କର୍ମ ପ୍ରବଣତାର ଅପୂର୍ବ କାର୍ଯ୍ୟକାରିତାର ଶକ୍ତି । ପୁରୀ ସହର ତଥା ଜିଲ୍ଲାର ସମସ୍ତ ପାଠଚକ୍ରର ବାର୍ଷିକ କାର୍ଯ୍ୟସୂଚୀ ପ୍ରସ୍ତୁତ ହେଉଥିଲା ତାଙ୍କର ପରାମର୍ଶରେ ଆଉ ତାହାର ସଫଳ କାର୍ଯ୍ୟକାରିତା ଲାଗି ସେ ପ୍ରୟାସ ଜାରି ରଖିଥିଲେ ବିଭିନ୍ନ ବ୍ୟକ୍ତିଙ୍କର ସହିତ ସମ୍ପର୍କର ମାଧ୍ୟମରେ । ତେଣୁ ତାଙ୍କର ଜୀବନର ଅନ୍ତିମ ପର୍ଯ୍ୟାୟଟି ଥିଲା କର୍ମତତ୍ପରତାର ସମୟ ।

ଆଗରୁ କୁହାଯାଇଛି ଯେ ପରଶୁରାମ ସାମୟିକ ଭାବେ ପ୍ରକାଶ କରୁଥିଲେ 'Midnight Gleanings from here and there' ଶୀର୍ଷକ ଏକ ପତ୍ରିକା । ଏଣିକି ଏହି ପତ୍ରିକାର ମାଧ୍ୟମରେ ସେ ପ୍ରଚାରିତ କରୁଥିଲେ ଶ୍ରୀଅରବିନ୍ଦଙ୍କର ଦର୍ଶନର ମୂଳ ତତ୍ତ୍ୱଗୁଡ଼ିକ ।

Digitized by PPRACHIN, SOA

ପରଶୁରାମଙ୍କର ନିଜସ୍ୱ ଦାର୍ଶନିକ ଦୃଷ୍ଟିଭଙ୍ଗୀରେ ଶ୍ରୀଅରବିନ୍ଦଙ୍କର ପ୍ରଦର୍ଶିତ ମହନୀୟ ଯୋଗ ମାର୍ଗର ବୈଶିଷ୍ଟ୍ୟ ଏହିଭଳି ଭାବେ ପ୍ରତିପାଦିତ ହୋଇଥିଲା ତାଙ୍କ ଦ୍ୱାରା ସଞ୍ଚାଳିତ ଏହି ପତ୍ରିକାର ଗୋଟିଏ ସଂଖ୍ୟାରେ । ସେହି ଇଂରାଜୀ ଲେଖାର ଅନୁବାଦ ପ୍ରଦତ୍ତ ହେଲା ।

"ଯେଉଁଠାରେ ସମସ୍ତ ପ୍ରାଚୀନ ଯୋଗର ସମାପ୍ତି, ସେହିଠାରେ ହିଁ ଶ୍ରୀଅରବିନ୍ଦଙ୍କର ନୂତନ ସମନ୍ୱିତ ଯୋଗର ପ୍ରାରମ୍ଭ । ପ୍ରାଚୀନ ଯୋଗ ଶାସ୍ତ୍ରରେ ଥିଲା ଚେତନାର ଉଦାହରଣ, ମାତ୍ର ଶ୍ରୀଅରବିନ୍ଦଙ୍କର ପ୍ରଦର୍ଶିତ ଯୋଗରେ ଅଛି ଉଭୟ ଉତ୍ତରଣ ଆଉ ଅବତରଣ । ପୁରାତନ ଯୋଗରେ ଦିବ୍ୟସତ୍ତାକୁ ଚେତନାର ମଧ୍ୟରେ ଧାରଣ କରାଯାଇ ପାରେ, କିନ୍ତୁ ତାହାକୁ ପୃଥିବୀ ପୃଷ୍ଠରେ ସମ୍ମିଳିତ ମାନବ ସମାଜ ମଧ୍ୟରେ କିଣ, ଏପରିକି ମଣିଷର ବ୍ୟକ୍ତିଗତ ଶାରୀରିକ ସତ୍ତାରେ ଅବସ୍ଥାପିତ କରିବା ସମ୍ଭବପର ହେଉ ନ ଥିଲା । ପ୍ରାଚୀନ ଯୋଗରେ ପୃଥିବୀ ଗୋଟିଏ ଛଳନା ବା ମାୟାଜାଲ ଅଥବା ମଧ୍ୟବର୍ତ୍ତୀ ସାମୟିକ ସ୍ଥିତି ରୂପେ ବିବେଚିତ ହେଉଥିଲା, କିନ୍ତୁ ଏହି ଅବସ୍ଥିତିର ଅନ୍ତର୍ନିହିତ ମହାନ୍ ଉଦ୍ଦେଶ୍ୟର ପରିପୂରଣ ଲାଗି କୌଣସି ସୁଯୋଗ ନ ଥିଲା । ଶ୍ରୀଅରବିନ୍ଦ କହନ୍ତି ଯେ ପୃଥିବୀ ହେଉଛି ଦିବ୍ୟ ସତ୍ତାଙ୍କର ଗୋଟିଏ ବାସ୍ତବ ସୃଷ୍ଟି, ଏପରିକି ଏହି ପୃଥିବୀର ପୃଷ୍ଠରେ ମାନବ ଶରୀରର ପ୍ରତି ଅଣୁକୋଷକୁ ମଧ୍ୟ ଦିବ୍ୟତାର ସ୍ୱରୂପରେ ପରିବର୍ତ୍ତିତ କରାଯାଇ ପାରିବ । ଏହିପରି ଭାବରେ ମାନବ ସମାଜର ସମ୍ମିଳିତ ଆଧ୍ୟାତ୍ମିକ ପରିବର୍ତ୍ତନ ବା ରୂପାନ୍ତରୀକରଣର ମଧ୍ୟରେ, ଭଗବାନଙ୍କର ରାଜ୍ୟ ଧରାଧାମରେ ପ୍ରତିଷ୍ଠିତ ହୋଇ ପାରିବ ।

ଆଧ୍ୟାତ୍ମିକ କ୍ଷେତ୍ରରେ ଯୋଗ ଉପରେ ଏହିଭଳି ପ୍ରାଧାନ୍ୟ ଆରୋପ କରିବାର ମୂଳ ଉଦ୍ଦେଶ୍ୟ ହେଉଛି ବହୁଜନ୍ମର ଅବଧି ମଧ୍ୟରେ ଆତ୍ମାର ଯେଉଁ ବିକାଶ ବା ଉନ୍ନତି ସାଧନ ସମ୍ଭବପର ହୁଏ, ତାହା ମାତ୍ର କେତେ ବର୍ଷର ଯୋଗ ସାଧନା ମଧ୍ୟରେ ପ୍ରାପ୍ତ ହୋଇପାରିବ । ପ୍ରାଚୀନ ଯୋଗରେ ଯାହାସବୁ ମେଘ ଭଳି ଯେଉଁ ସତ୍ୟ କେବଳ ଊର୍ଦ୍ଧ୍ୱତର ଚେତନାରେ ସ୍ଥାନ ପାଉଥିଲା, ତାହାକୁ କେବଳ ଭୂତଳସ୍ପର୍ଶୀ କରି ନୁହେଁ, ଭୂଗର୍ଭରେ ସ୍ଥାପିତ କରିବାକୁ ହେବ; ଯେପରି ତାହାର ଭିତ୍ତିଭୂମି ହୋଇପାରିବ ସୁଦୃଢ଼ ଓ ଚିରସ୍ଥାୟୀ । ସେହିପରି ମଣିଷର କ୍ଷେତ୍ରରେ ସେହି ସତ୍ୟକୁ ମଧ୍ୟ ନିମ୍ନତର ସତ୍ତାରେ ଅଧିଷ୍ଠିତ କରାଇବାକୁ ହେବ, ଯେପରି ତାହାର ପ୍ରକ୍ରିୟା ମଧ୍ୟରେ ଦ୍ରୁତତର ପରିବର୍ତ୍ତନର ଧାରା ସଂଗଠିତ ହୋଇ ପାରିବ ଏବଂ ଯାହା ଫଳରେ ମାନବୀୟ ବିକାଶର ଗତି ତ୍ୱରାନ୍ୱିତ ହୋଇପାରିବ ।

ଏଥିପାଇଁ ଯେଉଁ ପ୍ରସ୍ତାବ ବା ପ୍ରତିଷ୍ଠାର ଆବଶ୍ୟକତା ରହିଛି, ତାହା ଅତ୍ୟନ୍ତ ଚମତ୍କାର ଭାବରେ ଶ୍ରୀଅରବିନ୍ଦଙ୍କର ରଚନାରେ ଏହିପରି ସ୍ଥାନ ପାଇଛି ।

Digitized by PPRACHIN, SOA

'କେବଳ ଏହିଠାରେ, ଅନ୍ୟ କେଉଁଠାରେ ନୁହେଁ, ସର୍ବୋତ୍ତମ ଧର୍ମଙ୍କର ସନ୍ଧାନଟି ମିଳିପାରିବ ଆଉ ମଣିଷ ପ୍ରକୃତିର ସମସ୍ତ ଅପୂର୍ଣ୍ଣତା ସତ୍ତ୍ୱେ, ତାହା ମଧ୍ୟରେ ଆତ୍ମାର ଦିବ୍ୟସ୍ୱରୂପକୁ ପ୍ରକଟିତ କରାଯାଇ ପାରିବ । ତେଣୁ ଦିବ୍ୟସତ୍ତା, ମଣିଷ ଆଉ ବିଶ୍ୱର ଏକତ୍ର ସମନ୍ୱୟରେ ପରିପୂର୍ଣ୍ଣ ସତ୍ତାର ଆବିଷ୍କାର, ତାହାକୁ ଜୀବନରେ ଧାରଣ ତଥା ତାହାର ଅଭିବ୍ୟକ୍ତ ପରିପ୍ରକାଶ ସମ୍ଭବ ହୋଇ ପାରିବ । ଏହାଦ୍ୱାରା ମଣିଷ ଦୀର୍ଘ କ୍ରମବିକାଶର ଧାରାକୁ ସମ୍ପୂର୍ଣ୍ଣ କରି ସର୍ବୋତ୍ତମ ସିଦ୍ଧିର ଅଧିକାରୀ ହୋଇ ପାରିବ । ଏହି ସୁଯୋଗ ଆମ୍ଭକୁ ମିଳିଛି ମନୁଷ୍ୟ ଜନ୍ମଦ୍ୱାରା, ଆଉ ଏହି ସିଦ୍ଧିପ୍ରାପ୍ତ ନ ହେଲା ପର୍ଯ୍ୟନ୍ତ, ସେ ସ୍ଥିର ନ ରହି ପ୍ରୟାସ କରିଚାଲିଥିବ' ।''

ଧରାପୃଷ୍ଠରେ ମାନବୀୟ ତଥା ସାମଗ୍ରୀକ ବିକାଶର ଧାରାକୁ କ୍ଷିପ୍ର କରିବାର ଦୁରନ୍ତ ଆହ୍ୱାନ, ଦେଶ ମାତୃକାକୁ ଭଗବତ୍ ଶକ୍ତିର ଅଫୁରନ୍ତ ଆଧାର ରୂପେ ପ୍ରକଟିତ କରିବାର ମହନୀୟତା, ସର୍ବୋପରି ଗୁରୁଗୋଷ୍ଠି ମହତ୍ତ୍ୱ ମାତୃଶକ୍ତିର ସମନ୍ୱିତ ପରିପ୍ରକାଶ ଯେଉଁ ଆବିର୍ଭୂତା ବରାଭୟ ଦାତ୍ରିଣୀ ଶ୍ରୀମାଙ୍କର ନିକଟରେ ନିଃସର୍ତ୍ତ ସମର୍ପଣର ତାତ୍ତ୍ୱିକ ବିଶ୍ଳେଷଣାତ୍ମକ ବିଭବ, ଯାହା ଶ୍ରୀଅରବିନ୍ଦଙ୍କର ଦର୍ଶନରେ ସନ୍ନିବେଶିତ ଏ ସମସ୍ତ ଅତି ଅଦ୍ଭୁତ ଭାବେ ଆକର୍ଷିତ କରିଛି ଓଡ଼ିଶାର ଜନସାଧାରଣଙ୍କୁ । ଫଳରେ ଶ୍ରୀଅରବିନ୍ଦଙ୍କର ଦର୍ଶନ, ଏକ ମହାପ୍ରେରଣାର ସ୍ରୋତ ରୂପେ ବହିଚାଲିଛି ଓଡ଼ିଶାର ଭୂଇଁରେ ଅସଂଖ୍ୟ ଜନଗଣଙ୍କୁ ସାନ୍ତ୍ୱନାର ଆଶ୍ୱାସ ପ୍ରଦାନ ମଧ୍ୟରେ ନିଜକୁ ପରିବର୍ତ୍ତିତ କରିବାର ଅପୂର୍ବ ସୁଯୋଗ ପ୍ରଦାନ କରି ।

ତେଣୁ ଓଡ଼ିଶାରୁ ଅଗଣିତ ଜନତାର ସୁଅ ବହିଚାଲିଲା ପଣ୍ଡିଚେରୀକୁ । ଦର୍ଶନ ଉତ୍ସବମାନଙ୍କରେ ପଣ୍ଡିଚେରୀରେ ଶ୍ରୀଅରବିନ୍ଦ ଅନୁରାଗୀ ଓଡ଼ିଶାବାସୀଙ୍କର ସଂଖ୍ୟା କ୍ରମେ ସର୍ବାଧିକ ହେବାକୁ ଲାଗିଲା । ଏହା ପରେ ବିଶ୍ୱନଗରୀ ଅରୋଭିଲର ସ୍ଥାପନା, ତଥା ବହୁଳ ଭାବରେ ଶ୍ରୀଅରବିନ୍ଦ ସାହିତ୍ୟର ପ୍ରକାଶନ, ଓଡ଼ିଶାରେ ଶ୍ରୀଅରବିନ୍ଦଙ୍କର ପ୍ରଦର୍ଶିତ ସାଧନାର ଧାରାକୁ ତ୍ୱରାନ୍ୱିତ କରିବାରେ ସହାୟକ ହୋଇଛି । ପାଠଚକ୍ରର ସଂଖ୍ୟା ବଢ଼ିବା ସଙ୍ଗେ, ଓଡ଼ିଶା, ଶ୍ରୀଅରବିନ୍ଦଙ୍କ ସାଧନା ଆଧାରିତ ଏକ ସ୍ୱତନ୍ତ୍ର ମହନୀୟ ଦିଗକୁ ଗ୍ରହଣ କରିନେବା ସମ୍ଭବପର ହେଲା । ତାହା ହେଉଛି ଶ୍ରୀଅରବିନ୍ଦ ପ୍ରଦର୍ଶିତ ମାର୍ଗର ବିଦ୍ୟାଳୟ ସ୍ଥାପନ ।

ଏ ସମସ୍ତ ବିଷୟ ଓ ବିଭବକୁ ସୁସଙ୍ଗଠିତ ଓ ସଂସ୍ଥାପିତ କରିବାପାଇଁ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀସବୁ ଅନୁଷ୍ଠିତ ହେଉଥିଲା କଟକ, ଭୁବନେଶ୍ୱର କମ୍ପା ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ । ପ୍ରାୟ ସମସ୍ତ ସମ୍ମିଳନୀରେ ପରଶୁରାମ ଅତି ଆଗ୍ରହର ସହ ଯୋଗ ଦେଉଥିଲେ । ସେ ସବୁ ମଞ୍ଚରେ ଭାଷଣ ଦେଇ ନ ଥିଲେ

Digitized by PPRACHIN, SOA

ମଧ୍ୟ ଆଲୋଚନା ଚକ୍ରଗୁଡ଼ିକରେ ତାତ୍ତ୍ୱିକ ମାର୍ଗଦର୍ଶନ ଦେଉଥିଲେ, ଓଡ଼ିଶାର ଭୂଇଁରେ ଶ୍ରୀଅରବିନ୍ଦଙ୍କର ସାଧନା ଧାରାକୁ ସୁପ୍ରତିଷ୍ଠିତ କରିବାର ପାଇଁ ।

ଖୋର୍ଦ୍ଧାଠାରେ ୧୯୬୪-୬୫ ଠାରୁ କିଛି କାଳ ପାଇଁ ଅବସ୍ଥାନ ସମୟରେ ଶ୍ରୀଅରବିନ୍ଦଙ୍କର ଦର୍ଶନ ପ୍ରତି ପରଶୁରାମଙ୍କର ଯେଉଁ ପ୍ରଚଣ୍ଡ ବିଶ୍ୱାସ ଓ ପ୍ରଗାଢ଼ ନିଷ୍ଠା ସୃଷ୍ଟି ହୋଇଥିଲା, ତାହାକୁ ପାଥେୟ କରି ସେ ଆରମ୍ଭ କରିଥିଲେ ଶ୍ରୀଅରବିନ୍ଦଙ୍କର ଚେତନା ପ୍ରସାରର ଜୟଯାତ୍ରା ପୁରୀକୁ କେନ୍ଦ୍ରକରି ।

ପରଶୁରାମ ଖୋର୍ଦ୍ଧାଠାରୁ ଯାଇ ପୁରୀରେ ଅବସ୍ଥାନ କରିବା ବେଳେ ବିଧି ନିର୍ଦ୍ଦିଷ୍ଟ ଆୟୋଜନ ପରି କ୍ଷେତ୍ରଟି ପ୍ରସ୍ତୁତ ହୋଇଯାଇଥିଲା । ଏହାର ଯଥାର୍ଥ ଉପଯୋଗ କରିଥିଲେ, ପରଶୁରାମ, ବନ୍ଧୁ ଅରବିନ୍ଦ-ଦର୍ଶନ-ଅନୁରାଗୀ, ଶ୍ରଦ୍ଧାଳୁ ଗୁଣୀ ଜନଙ୍କୁ ମାର୍ଗ ଦର୍ଶନ ପ୍ରଦାନ କରି ।

ପରଶୁରାମଙ୍କର ଅଧିନାୟକତ୍ୱରେ, ସଂଖ୍ୟାଧିକ ନିବେଦିତ ପରିବାରଙ୍କର ଅକୁଣ୍ଠ ସହଯୋଗ ଓ ଆନ୍ତରିକ ଯୋଗଦାନ ଫଳରେ ସମସ୍ତ ସହର ଓ ଜିଲ୍ଲାରେ ଅଗଣିତ ପାଠଚକ୍ରମାନ ପ୍ରତିଷ୍ଠିତ ହୋଇଥିଲା । ଅବଶ୍ୟ ଭୁବନେଶ୍ୱର, ଅରବିନ୍ଦଙ୍କର ଦର୍ଶନ ପ୍ରସାର ଲାଗି ଓଡ଼ିଶାର ପ୍ରମୁଖ କେନ୍ଦ୍ରରୂପେ ଚିହ୍ନିତ ହୋଇଥିଲା, ତଥାପି ପୁରୀ ସହରର ଏ ଦିଗରେ ଅବଦାନ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ଥିଲା । ଏଠାରେ ରବିବାରର ସାପ୍ତାହିକ ପାଠଚକ୍ର ଛଡ଼ା, ପ୍ରାୟ ସପ୍ତାହର ପ୍ରତିଦିନ ସନ୍ଧ୍ୟାରେ, ବିଭିନ୍ନ ପରିବାରଙ୍କ ଘେନି, ନିୟମିତ ଭାବେ ପାଠଚକ୍ରମାନ ଅନୁଷ୍ଠିତ ହେଉଥିଲା, ଆଉ ପରଶୁରାମ ବିନା ବ୍ୟତିକ୍ରମରେ ଏହି ସମସ୍ତ ପାଠଚକ୍ରର ଅଧିବେଶନ ସମୂହରେ ଯୋଗଦାନ କରୁଥିଲେ ଓ ଅନୁପ୍ରେରଣା ଯୋଗାଉଥିଲେ । ସେ ଥିଲେ ଶ୍ରୀଅରବିନ୍ଦ ପାଠଚକ୍ର ପରିଚାଳନା କ୍ଷେତ୍ରରେ, ପୁରୀରେ, ମୁଖ୍ୟ ଉତ୍ସାହଦାତା ଆଉ ଉଦ୍ଦୀପନାର ମୂଳ ଉତ୍ସ । ଏହା ଛଡ଼ା ରହିଥିଲା ସର୍ବଭାରତୀୟ, ଜିଲ୍ଲା, ଆଞ୍ଚଳିକ ଓ ପ୍ରାଦେଶିକ ସ୍ତରର ଅଧିବେଶନ ସମୂହ, ଯହିଁରେ ସେ ଯୋଗଦାନ କରୁଥିଲେ, ପାଶର ପ୍ରତିକୂଳତା ଆଉ ଉଦ୍ଧୀର୍ଣ୍ଣ ବୟସର ସମସ୍ତ ଅସୁବିଧା ସତ୍ତ୍ୱେ ।

୧୯୭୧ ସାଲର ଦଶହରା ଅବକାଶର ସମୟ । ଦଶହରାରେ ତାଙ୍କର ସ୍ୱନକ୍ଷତ୍ର ଉତ୍ସବ ପାଳିତ ହେଲା । ସେ ଜୀବନର ୯୩ଟି ଶରତ ଋତୁ ଅତିକ୍ରମ କରି ୯୪ ବର୍ଷ ବୟସରେ ପଦାର୍ପଣ କଲେ । ଚଉରାନବେ ବର୍ଷ ବୟସରେ, ଜରା-କାଳୀନ ସମୟର ଅବଧିକୁ ଦୀର୍ଘକାଳ ଧରି ସେ କଟାଉଥିଲେ ମଧ୍ୟ, ଜରା ଅବସ୍ଥା ତାହାଙ୍କୁ ଗ୍ରାସ କରିପାରି ନ ଥିଲା । ତାଙ୍କଠାରେ ଥିଲା ଚିର ତାରୁଣ୍ୟର ଦୀପ୍ତି । ସକାଳର ପ୍ରାତଃ ଭ୍ରମଣଠାରୁ ଆରମ୍ଭ କରି ରାତିକାଳୀନ ଅବସର ପର୍ଯ୍ୟନ୍ତ ତାଙ୍କର ସମସ୍ତ କାର୍ଯ୍ୟକ୍ରମ ଥିଲା ସମୟ ସାରଣୀର ନିର୍ଦ୍ଧାରିତ କାର୍ଯ୍ୟସୂଚୀ । ସେଥିରେ ସାମାନ୍ୟ ବ୍ୟତିକ୍ରମ ମଧ୍ୟ ନ ଥିଲା ।

Digitized by PPRACHIN, SOA

ଦୀର୍ଘକାଳର ମା ରୋଗ ଶର୍କରାଟି ହଠାତ୍ ଅକାନ୍ତ ହୋଇଗଲା ହୃଦ୍‌ରୋଗରେ । ଏକ ସପ୍ତାହ ଧରି ସେ ଚେତନା ଶୂନ୍ୟ ହୋଇ ପଡ଼ିରହିଲେ । ହେଲେ କେଉଁ ଅଦୃଶ୍ୟ ଶକ୍ତିର ଆଶୀର୍ବାଦରେ ସେ ଦିନେ ଜାଗରିତ ହେଲେ, ଗଭୀର ସୁସୁପ୍ତିରୁ ଉଠିଲା ପରି । ଶରୀରର ଦୁର୍ବଳତା ସତ୍ତ୍ୱେ ସେ ବିଶ୍ୱାସ କଲେ ନାହିଁ ଯେ, ସେ ଏତେଦିନ ଧରି ସଂଜ୍ଞାହୀନ ଅବସ୍ଥାରେ ଥିଲେ ବୋଲି । ଏହି ଅସୁସ୍ଥତା ସମୟରେ ପରଶୁରାମଙ୍କର ପୁତ୍ର ଅମିତବିକ୍ରମ ଶ୍ରୀମାଙ୍କର ଦର୍ଶନ ପାଇଁ ପଣ୍ଡିଚେରୀ ଯାଇଥିଲେ । ସେ ଫେରି ଆସି ପିତାଙ୍କର ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଯଥେଷ୍ଟ ପ୍ରଚେଷ୍ଟା ଓ ସେବା ଶୁଶ୍ରୂଷା ଯୋଗାଇ ଦେଇଥିଲେ । ଅମିତବିକ୍ରମ ଥିଲେ ପରଶୁରାମଙ୍କର ଷଡ଼ୁ ଭବ୍ୟସିଂହ ପଟ୍ଟନାୟକଙ୍କର ଜ୍ୟେଷ୍ଠ ପୁତ୍ର, ଯେ ତାଙ୍କର ମାଉସୀଙ୍କର ଶୂନ୍ୟ କୋଳ ପୂରଣ କରିବାପାଇଁ ଆସି ପରଶୁରାମଙ୍କର ପୁତ୍ର ହେବାର ଯୋଗ୍ୟତା ଅର୍ଜନ କରିଥିଲେ । ଏଥିପାଇଁ ପରଶୁରାମଙ୍କର, ତାଙ୍କର ଷଡ଼ୁ ବରିଷ୍ଠ ଶିକ୍ଷାବିତ୍ ତଥା ଓଡ଼ିଶାର ପ୍ରଥମ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ପ୍ରଧାନଶିକ୍ଷକ ଭବ୍ୟସିଂହଙ୍କର ପରିବାର ସହିତ ସମ୍ପର୍କ ଥିଲା ଅତ୍ୟନ୍ତ ଅନ୍ତରଙ୍ଗ ।

ଅସୁସ୍ଥତା ପରେ ଡାକ୍ତରମାନେ ପରଶୁରାମଙ୍କର ପ୍ରତି ବହୁ ନିଷେଧାଦେଶ ଜାରି କଲେ ଖାଇବା, ବୁଲିବା ଆଉ ପାଠଚକ୍ର ଅଧିବେଶନରେ ଯୋଗଦାନ ସମ୍ପର୍କରେ । ଖାଇବା ଓ ଔଷଧ ସେବନ କ୍ଷେତ୍ରରେ ସେ କିଛି ପରିମାଣରେ ଶୃଙ୍ଖଳା ରକ୍ଷି ଚାଲିଥିଲେ ମଧ୍ୟ, ପ୍ରତ୍ୟହ ନିୟମିତ ଭାବେ ପାଠଚକ୍ରରେ ଯୋଗଦାନ ସହିତ ବିଭିନ୍ନ ଆଞ୍ଚଳିକ ଓ ପ୍ରାଦେଶିକ ସ୍ତରର ଶ୍ରୀଅରବିନ୍ଦ ସମ୍ମିଳନୀରେ ଉପସ୍ଥିତ ରହିବା କ୍ଷେତ୍ରରେ ତାଙ୍କର କାର୍ଯ୍ୟ ନିର୍ଘଣ୍ଟ ଥିଲା ଅପରିବର୍ତ୍ତିତ । ଏହି ପାଠଚକ୍ର ତଥା ସମ୍ମିଳନୀରେ ଯୋଗଦାନ ପରଶୁରାମଙ୍କର ପାଇଁ ଯେତେ ଉପଭୋଗ୍ୟ ଓ ଉପାଦେୟ ନ ଥିଲା, ତାହାଠାରୁ ଅଧିକ ପ୍ରେରଣାଦାୟକ ଥିଲା, ଏହି ସମସ୍ତ ଅନୁଷ୍ଠାନର ଉଦ୍ୟୋକ୍ତାମାନଙ୍କର ପାଇଁ, ଯେଉଁମାନଙ୍କୁ ପରଶୁରାମ ସୌହାର୍ଦ୍ଦ୍ୟପୂର୍ଣ୍ଣ ଦିଗ୍‌ଦର୍ଶନ ତଥା ଅନୁପ୍ରେରଣା ଯୋଗାଇ ଆସିଥିଲେ । ତେଣୁ ସେମାନେ ସତୃଷ୍ଣ ନୟନରେ ଚାହିଁ ବସିଥିଲେ ପରଶୁରାମଙ୍କର ଆଗମନ ପାଇଁ ।

ସେ ଦିନ ଥିଲା ୧୯୭୨ ସାଲର ଜୁନ ସତର ତାରିଖ । ସେତେବେଳେ କିଛି ଦିନ ପାଇଁ ପରଶୁରାମଙ୍କର ପୁତ୍ର ଅମିତବିକ୍ରମ ରହୁଥିଲେ ଭୁବନେଶ୍ୱରରେ, ବୁର୍ଲାରେ ସ୍ଥାନାନ୍ତରିତ ହେବା ପର୍ଯ୍ୟାୟରେ । ସେ ଦିନ କିଛି ପୂର୍ବ ସୂଚନା ନ ଥାଇ କେତେକ ସମ୍ପର୍କୀୟ ବନ୍ଧୁବାନ୍ଧବଙ୍କୁ ନେଇ ଆସି ପହଞ୍ଚିଲେ ପୁରୀରେ । ଅତିଥିମାନଙ୍କର ଆଗମନ ଆଉ ସତ୍କାର ପ୍ରଦାନ କରିବାରେ, ପରଶୁରାମ ତାଙ୍କ ଜୀବନର ସବୁଠାରୁ ସରସ ଓ ରସାଳ ସମୟଗୁଡ଼ିକ ବିତାଇଛନ୍ତି । ତେଣୁ ସେଦିନ ରାତିଟି ତାଙ୍କ ପାଇଁ ଥିଲା ଅତ୍ୟନ୍ତ ଉପଭୋଗ୍ୟ ଅତିଥିମାନଙ୍କର ଗହଣରେ, ଆମୋଦଦାୟକ ପରିବେଶରେ ।

Digitized by PPRACHIN, SOA

ପରଦିନ ଥିଲା ଜୁନ ମାସର ଅଠର ତାରିଖ । ସକାଳର ନିୟମିତ ଧ୍ୟାନ ଓ ପ୍ରାର୍ଥନା, ଯହିଁରେ ସେ ଅତି ପ୍ରତ୍ୟୁଷରୁ ନିମଗ୍ନ ରହୁଥାନ୍ତି, ତାହା କଟି ଯାଇଥିଲା ତାଙ୍କର ଶୟନ କକ୍ଷରେ, ଅତି ଗମ୍ଭୀର ଅଥଚ ସ୍ତବ୍ଧ ପରିବେଶରେ । ତା’ପରେ ନିତ୍ୟ ନୈମିତ୍ତିକ କାର୍ଯ୍ୟକ୍ରମ ସରିଥିଲା । ତା’ପରେ ପ୍ରାତଭ୍ରମଣ ସକଳ ସମସ୍ତଙ୍କର ସାଥିରେ । ସମୟଟି ଥିଲା ଅତ୍ୟନ୍ତ ଆନନ୍ଦ ମୁଖର । ମଧ୍ୟାହ୍ନ ଭୋଜନ ଲାଗି ବ୍ୟଞ୍ଜନର ତାଲିକା ଚୂଡ଼ାନ୍ତ ହେଲା । ରନ୍ଧନର ପ୍ରସ୍ତୁତି ଆରମ୍ଭ ହେବାକୁ ଆହୁରି ବାକି ଥାଏ । ଏକ ଉଲ୍ଲାସମୟ ପରିବେଶ ।

ଏହି ସମୟରେ ଆଲୋଚନା ଚାଲିଥିଲା, ଅତିଥିମାନଙ୍କର ଗହଣରେ, ଶ୍ରୀଅରବିନ୍ଦଙ୍କର ଦର୍ଶନ ସମ୍ପର୍କରେ, କିଛି ପରିମାଣରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଆଉ ହାଲୁକା ପରିବେଶରେ । ହେଲେ ଆଲୋଚନାଟି ହୋଇ ଉଠିଥିଲା, କି ତାତ୍ପର୍ଯ୍ୟପୂର୍ଣ୍ଣ ଆଉ ପ୍ରାଣଛୁଆଁ, ପରଶୁରାମଙ୍କର ମର୍ମସ୍ପର୍ଶୀ ଉପସ୍ଥାପନାରେ । ଯେପରି ଭାବର ଉଚ୍ଛ୍ୱାସ ତରଙ୍ଗିତ ହୋଇ ଉଠିଥିଲା । ପୂର୍ବାହ୍ନର ହାଲୁକା ପବନଟି ବହୁଥିଲା ବଢ଼ନ୍ତ ଖରାର ତେଜକୁ କାଟି ଦେଇ । ସବୁଆଡ଼େ ଆହ୍ଲାଦମୟ ପରିପ୍ଳାବନ । ଉତ୍ସବ ଯେମିତି ଘର କୋଣରେ ଉଙ୍କି ମାରୁଥାଏ ।

ସମର୍ପିତ ଭାବରେ, ତାତ୍ତ୍ୱିକ ଆଲୋଚନାରେ ଉଦ୍‌ବେଳନ ମଧ୍ୟରେ ପରଶୁରାମ ଟିକିଏ ଅଟକି ଗଲେ । ଏହି ଅଟକିଯିବାରେ ଟିକିଏ ଗତିରୋଧର ସୂଚନା ମିଳିଥିଲା ହୃଦୟରେ । ବୋଧହୁଏ ଆସିଗଲା ବିଶ୍ରାନ୍ତିର ସମୟ । ହଁ, ପୂର୍ଣ୍ଣ ବିଶ୍ରାନ୍ତିର ସମୟ । ଦୀର୍ଘ ଚଉରାନବେ ବର୍ଷଧରି ଅବିରାମ ଗତିରେ ଚାଲିଥିବା ହୃଦ୍‌ଯନ୍ତ୍ରଟି ଆଜି ହଠାତ୍ ନୀରବିଗଲା, ବିଶ୍ରାନ୍ତିର ପ୍ରକ୍ରିୟା ମଧ୍ୟରେ । ଦୀର୍ଘ ଯାତ୍ରା ପଥରେ, ଏହା ଥିଲା ଟିକିଏ ଅଟକିଯାଇ ଗୋଟିଏ ଭୂମିରୁ ଲମ୍ଫ ଦେଇ ଉଚ୍ଚତର ଭୂମିକୁ ଉତ୍ତରିତ ହେବାର ସମୟ ।

ତେଣୁ ଏହାହିଁ ପରମ ସ୍ମାରକୀର ମୁହୂର୍ତ୍ତ, ଏକ ମହୋତ୍ସବର ବେଳା, ଯାହାକୁ ଉଦ୍‌ଘୋଷିତ କରି, ଅଗଣିତ ପୁଷ୍ପଗୁଚ୍ଛ ଓ ସ୍ତବକମାନ ସବୁ ଲମ୍ବି ଯାଇଥିଲା, ପରଶୁରାମଙ୍କର ଦୁଇ ପାର୍ଶ୍ୱରେ । ମାତୃସଙ୍ଗୀତର ମୂର୍ଚ୍ଛନାରେ ଅଭିମନ୍ତ୍ରିତ ହୋଇ ଯାଇଥିଲା ସ୍ତବ୍ଧାପ୍ଳୁତ ଗାମ୍ଭୀର୍ଯ୍ୟମୟ ପରିବେଶଟି ।

ସବୁଆଡ଼େ ପ୍ରସରି ଯାଇଥିଲା ଆନନ୍ଦର ଉଦ୍‌ବେଳନ, ଏହି ଉଲ୍ଲାସର ପରମ ମୁହୂର୍ତ୍ତରେ । କ୍ରମ ବିକାଶର ଧାରାରେ, ଏହା ଥିଲା ଜୀବନର ଗତିପଥରେ, ଊର୍ଦ୍ଧ୍ୱାୟିତ ମାର୍ଗରେ, ଉଚ୍ଚତର ସୋପାନରେ ଅଧିଷ୍ଠିତ ହେବାର ମହତ୍ତର ପଦକ୍ଷେପ । ତେଣୁ ସମସ୍ତଟି ଥିଲା ଉତ୍ସବର ନିରବଚ୍ଛିନ୍ନ ପର୍ଯ୍ୟାୟ, ଯାହାର ମଧ୍ୟରେ ତାଙ୍କର ଅନୁପମ ଶୋଭାଯାତ୍ରାଟି ଚାଲିଥିଲା ସ୍ୱର୍ଗଦ୍ୱାରକୁ ପୁଷ୍ପର ଅଗଣିତ ଶ୍ରଦ୍ଧାଞ୍ଜ

Digitized by PPRACHIN, SOA

ବ୍ୟକ୍ତିଙ୍କର ସମାବେଶରେ । ପରିବେଶଟି ଥିଲା ଅତୀବ ସ୍ୱର୍ଗୀୟ, ସ୍ତବ୍ଧତାରେ ଅନ୍ତରଙ୍ଗ, ଭାବଗାମ୍ଭୀର୍ଯ୍ୟରେ ଉଦ୍ଦାମ ରହିତ ଆଉ ଆହ୍ଲାଦର ଏକ ବସ୍ତୁଗତ ପ୍ରସାରଣ ପରି ଅନିର୍ବଚନୀୟ ଥିଲା ତାହାର ଅନୁଭୂତି ଆଉ ନୈର୍ବ୍ୟକ୍ତିକ ଥିଲା ତାହାର ପରିପ୍ରକାଶ ।

× × ×

ସବୁ ଅସ୍ତ ଯିବା ପରେ........

ହଠାତ୍ ଉଦ୍‌ବେଳିତ ହୋଇ ଉଠେ ଗୋଟିଏ ସ୍ମୃତିର ଉଚ୍ଛ୍ୱାସ

ସାଂସାରିକ ଜୀବନର ପ୍ରାରମ୍ଭରେ, ଜଣେ ଅନ୍ତରଙ୍ଗ ସୁହୃଦ୍ ଆଉ ଶୁଭେଚ୍ଛୁ ଭାବରେ ଉତ୍କଳମଣି ଗୋପବନ୍ଧୁଙ୍କଠାରୁ ଆସି ପହଞ୍ଚିଥିଲା, ଏକ ନିମନ୍ତ୍ରଣର ଆହ୍ୱାନ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ । ଏହି ଆହ୍ୱାନକୁ ବିନମ୍ର ଭାବରେ ଅସ୍ୱୀକାର କରି ପରଶୁରାମ ସେଦିନ କହିଥିଲେ—

"ମୋର ଟିକିଏ ଯୋଗର ତୃଷ୍ଣା ଅଛି । ତେଣୁ ଏହି ପବିତ୍ର ସ୍ୱାଧୀନତା ସଂଗ୍ରାମୀର ତ୍ୟାଗପୂତ ଜୀବନକୁ ବରଣ କରି ନିଜ ପ୍ରତି ବାହିଁକି ଛଳନା କରି ଚାଲିଥିବ ?"

କେତେ ସ୍ୱଚ୍ଛ, ପ୍ରାଣବନ୍ତ, ସକାଳର ଜାକର ପରି ଛଳ ଛଳ ଆଉ ଛଳନା-ବର୍ଜିତ ଏ ଉକ୍ତି । ହେଲେ ପରଶୁରାମଙ୍କର ଯୋଗର ଜୀବନ, ଯେଉଁଠି ପ୍ରତି ପଦରେ ତ୍ୟାଗର ଆତ୍ମୋତ୍ସର୍ଗ ଯେଣି ମହିମାନ୍ୱିତ ହୁଏ, ତାହା କ'ଣ ଯୋଗର ପର୍ଯ୍ୟାୟଭୁକ୍ତ ହୋଇପାରେ ? ଯୋଗ କଣ ହୁଏ ଜୀବନର ଆହରଣୀ ଲାଗି ଏତେ ଉତ୍ସର୍ଗୀକୃତ, ଦେଶ ସେବା ଓ ଶିକ୍ଷାର ପ୍ରସାର ଲାଗି ଏତେ ନିବେଦିତ ଆଉ ସାଧନାର ଭୂଇଁରେ ଏଭଳି ନୈର୍ବ୍ୟକ୍ତିକ ?

ପରଶୁରାମଙ୍କର ତ୍ୟାଗଦୀପ୍ତ ଯୋଗ ; ଜୀବନର ସମସ୍ତ ବିଭବ ଓ ବୈଭବକୁ ଆବରିତ କରି ପରିପୂର୍ଣ୍ଣ ଜୀବନର ଆବେଦନ ଯେଣି ହୁଏ କେତେ ଉଦ୍ଭାସିତ, ପ୍ରଖର ସୂର୍ଯ୍ୟାଲୋକ ପରି କେତେ ଦୀପ୍ତିମାନ ଆଉ ଜାଜ୍ୱଲ୍ୟମୟ ।

ହଁ, ଏଇଥି ପାଇଁ ତାଙ୍କର ସମଗ୍ର ଜୀବନଟି ହୋଇଯାଏ ଯୋଗର ସମନ୍ୱୟ । ଆଉ ତାଙ୍କର ତ୍ୟାଗଦୀପ୍ତ ଯୋଗରେ ଜୀବନଟି ହୋଇଯାଏ ପୂର୍ଣ୍ଣାଙ୍ଗ ଯୋଗର ମହିମାନ୍ୱିତ ଆଧାର ।

Digitized by PPRACHIN, SOA

# ପରଶୁରାମଙ୍କର ଜୀବନ ପଞ୍ଜିକା

୮୭୮—ଜନ୍ମ, ଭଞ୍ଜନଗର ସମୀପସ୍ଥ କୁସଲ ଗ୍ରାମରେ, ମାମୁଁଘରେ। ଦଶହରା ଦିନରେ।

୮୮୩—ବାପା ଓ ମା'ଙ୍କର ଅକାଳ ବିୟୋଗ।

୮୮୯—ଗ୍ରାମଶାଳୀରେ ବିଦ୍ୟାରମ୍ଭ।

୧୯୦୪—ମାଇନର ପାଶ ବୃତ୍ତି ସହ—ପାରଳାଖେମୁଣ୍ଡି ସ୍କୁଲରୁ।

୧୯୦୮—ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ—ପୁରୀ ହାଇସ୍କୁଲରୁ ବୃତ୍ତିସହ—ସମାଜ ସେବା।

୧୯୧୨—ଦର୍ଶନ ଶାସ୍ତ୍ରରେ ଅନର୍ସ ସହ ବି. ଏ. ପାଶ, ରେଭେନ୍‌ସା କଲେଜରୁ—ଦେଶ ମିଶ୍ରଣ କାର୍ଯ୍ୟରେ ଯୋଗଦାନ।

୧୯୧୩—ପ୍ୟାରୀମୋହନ ଏକାଡେମୀରେ ଶିକ୍ଷକତା।
ବିବାହ, ପୁରୀର ଶ୍ରୀମତୀ ନୀଳମଣି ଦେବୀଙ୍କର ସହ।

୧୯୧୪-୧୮—ଖୋର୍ଦ୍ଧା ହାଇସ୍କୁଲରେ ଶିକ୍ଷକତା, ଓ ପ୍ରଧାନ ଶିକ୍ଷକ ରୂପେ ଅଧିଷ୍ଠିତ, ସମାଜ ସେବା।

୧୯୧୫—ପାଟଣାରୁ ବି. ଟି. ପରୀକ୍ଷାରେ ଉତ୍ତୀର୍ଣ୍ଣ।

୧୯୧୮—ଆସିକାର (ଅପୂର୍ଣ୍ଣ) ହାଇସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଯୋଗଦାନ—ଶିକ୍ଷାର ପ୍ରସାର।

୧୯୧୮-୨୮—ଆସିକା ହାଇସ୍କୁଲର ପ୍ରଧାନ ଶିକ୍ଷକତା ସହ, ଦେଶ ମିଶ୍ରଣ ଆନ୍ଦୋଳନରେ ସକ୍ରିୟ ଯୋଗଦାନ। ୧୯୨୪ରେ ଫିଲିପ୍-ଡଫ କମିଟିକୁ ହାଇସ୍କୁଲରେ ସମ୍ବର୍ଦ୍ଧନା, ନୂତନ ଗୃହରେ ହାଇସ୍କୁଲର ଅଧିଷ୍ଠାନ—ପଶୁବଳୀ ପ୍ରଥାର ନିରୋଧ—ଭଜ ଗୋବିନ୍ଦଂ ଆନ୍ଦୋଳନ, ନୈଶ ବିଦ୍ୟାଳୟ ଏବଂ ଅସ୍ପୃଶ୍ୟତା ନିବାରଣ ଆଦି ବହୁବିଧ କାର୍ଯ୍ୟକ୍ରମ ଦ୍ୱାରା ସମାଜ ସେବା।

୧୯୨୮-୩୮—ଋଷିକୁଲ୍ୟା (ଭଞ୍ଜନଗର) ହାଇସ୍କୁଲରେ ଯୋଗଦାନ—ଦେଶ ମିଶ୍ରଣ ଆନ୍ଦୋଳନର ଅନ୍ତିମ ପର୍ଯ୍ୟାୟରେ ଯୋଗଦାନ—ଆଧ୍ୟାତ୍ମିକ ସାଧନା—ସର୍ବ ଧର୍ମ ସମନ୍ୱୟର ସାଧନା—ଶିକ୍ଷାର ପ୍ରସାର—ସମାଜ ସଂସ୍କାର—ମିଶନାରୀଙ୍କର ସହ ସମ୍ପର୍କ।

୧୯୩୮-୪୧—ଖଲ୍ଲିକୋଟ ହାଇସ୍କୁଲରେ ପ୍ରଧାନ ଶିକ୍ଷକ—ଶିକ୍ଷା ଓ କଳାର ପ୍ରସାର—ଆଧ୍ୟାତ୍ମିକ ସତ୍ସଙ୍ଗ।

Digitized by PPRACHIN, SOA

୧୯୪୧-୪୩—ଛତ୍ରପୁର ହାଇସ୍କୁଲରେ ପ୍ରଧାନ ଶିକ୍ଷକ ।

୧୯୪୩—ଜନକ ପାର୍ଶ୍ୱ ଆସିକା ହାଇସ୍କୁଲରେ ଯୋଗଦାନ ଓ ଅବସର ଗ୍ରହଣ ।

୧୯୪୩-୪୭—ପୁରୀରେ ଅବସରକାଳୀନ ଜୀବନ ସହ ବାର୍ଗଙ୍ଗା (ବୀର ନରସିଂହପୁର) ଓ ପ୍ରହରାଜପୁର ହାଇସ୍କୁଲରେ ପ୍ରଧାନ ଶିକ୍ଷକତା ।

୧୯୪୭—ପତ୍ନୀ ବିୟୋଗ ।

୧୯୪୮-୬୧—ପୁରୀରେ ଅବସରକାଳୀନ ଜୀବନ—ଆଧ୍ୟାତ୍ମିକ ସାଧନା—ସମାଜ ସେବା ।

୧୯୬୩-୭୧—ଶ୍ରୀଅରବିନ୍ଦ ଦର୍ଶନର ପ୍ରଚାର ଓ ପ୍ରସାର ।

୧୯୬୫—ଶ୍ରୀମାଙ୍କର ସହ ସାକ୍ଷାତ୍କାର—ଶ୍ରୀଅରବିନ୍ଦ ଚକ୍ରାଧାରାର ସକ୍ରିୟ ପ୍ରସାରରେ ଯୋଗଦାନ—ପାଠଚକ୍ର ସମ୍ମିଳନୀର ପତ୍ରପ୍ରସାର ।

୧୯୭୧—ସ୍ୱାସ୍ଥ୍ୟହାନି—ହୃଦ୍‌ରୋଗରେ ଆକ୍ରାନ୍ତ—ଶ୍ରୀଅରବିନ୍ଦ ଚେତନା ପ୍ରସାରରେ ସକ୍ରିୟ କାର୍ଯ୍ୟକ୍ରମ ।

୧୯୭୨—ମହାପ୍ରସ୍ଥାନ—ଜୁନ ମାସ ଅଠର ତାରିଖ (୧୮ । ୬ । ୧୯୭୨) ।

---

Digitized by PPRACHIN, SOA



ଶ୍ରୀଯୁକ୍ତ ପରଶୁରାମ ବର୍ମାଙ୍କର ଅସିକା ହାଇସ୍କୁଲରୁ ବଦାୟକାଳୀନ ଫଟୋଚିତ୍ର

Digitized by PPRACHIN, SOA



ପ୍ରଖ୍ୟାତ ଶିକ୍ଷାବିତ୍ ଦିବ୍ୟସିଂହ ପଟ୍ଟନାୟକ
(ପରଶୁରାମଙ୍କର ଅନ୍ତରଙ୍ଗ ସହଯୋଗୀ)

Digitized by PPRACHIN, SOA

## ଶ୍ରଦ୍ଧାଞ୍ଜଳି

ଓଡ଼ିଶାର ଜଣେ ପ୍ରଖ୍ୟାତ ଶିକ୍ଷାବିତ୍, ବର୍ଷୀୟାନ୍ ଅଧ୍ୟାତ୍ମବିତ୍ ଏବଂ ଉତ୍ସର୍ଗୀକୃତ ଦେଶସେବୀ ପରଶୁରାମ ବର୍ମାଙ୍କର ମହାପ୍ରୟାଣ ଘଟିଲା, ୯୪ ବର୍ଷର ପରିଣତ ବୟସରେ ୧୯୭୨ ସାଲ ଜୁନ ୧୮ ତାରିଖରେ, ପୁରୀଠାରେ ଅବସ୍ଥିତ ନିଜର ବାସଭବନରେ ।

ଏହା ଓଡ଼ିଶାର ସାଂସ୍କୃତିକ ତଥା ସାମାଜିକ ମହଲରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ଆଧ୍ୟାତ୍ମିକ କ୍ଷେତ୍ରରେ ପରଶୁରାମଙ୍କର ନାମ ସମ୍ଭ୍ରମତାର ସହ ସ୍ମରଣ କରାଯାଉଥିଲା । ତେଣୁ ସେହି ମହାନ୍ ଆତ୍ମାଙ୍କର ପରଲୋକପ୍ରାପ୍ତି ଅବସରରେ ଓଡ଼ିଶାର ପ୍ରତିଷ୍ଠିତ ଦୈନିକପତ୍ର 'ସମାଜ'ରେ ବିଶେଷ ସମ୍ବାଦ ପରିବେଷଣ ସହ, ସମ୍ପାଦକୀୟ—'ସମ୍ବାଦ ଓ ସଙ୍କେତ' ସ୍ତମ୍ଭରେ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଥିଲା ।

ଏ ସମସ୍ତ ଛଡ଼ା ବହୁ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କଠାରୁ ଶୋକସନ୍ତପ୍ତ ଶ୍ରଦ୍ଧାଞ୍ଜଳି-ସୂଚକ ବାର୍ତ୍ତାମାନ ଆସି ପହଞ୍ଚିଥିଲା ।

ଏହି ବିଶେଷ ସମ୍ବାଦ ଓ ଶ୍ରଦ୍ଧାଞ୍ଜଳି ସବୁ, ସମାଜର ପୁରୁଣା ସଂଖ୍ୟାମାନଙ୍କରୁ ସଙ୍କଳିତ ହୋଇ ଏଠାରେ ପ୍ରଦତ୍ତ ହେଲା ।

ଦୈନିକ ସମାଜରେ ୧୯ । ୬ । ୧୯୭୨ରେ ପ୍ରକାଶିତ ବିଶେଷ ସମ୍ବାଦସ୍ତମ୍ଭ ।

### ପରଶୁରାମ ବର୍ମାଙ୍କର ମହାପ୍ରୟାଣ

(ନିଜ ପ୍ରତିନିଧିଙ୍କଠାରୁ)

ପୁରୀ, ତା ୧୯ । ୬—ରାଜ୍ୟର ବରିଷ୍ଠ ଶିକ୍ଷାବିତ୍ ତଥା ସାଧକ ଶ୍ରୀ ପରଶୁରାମ ବର୍ମାଙ୍କର ମୃତ୍ୟୁ ସମ୍ବାଦ ସହରରେ ଖେଳିଯିବା ପରେ ସହରର ବହୁ ଆଇନଜୀବୀ, ବରିଷ୍ଠ ଭଦ୍ରବ୍ୟକ୍ତି, ଜଳ ଶ୍ରୀଅରବିନ୍ଦ କମିଟିର ସାଧକମାନେ ତଥା ବନ୍ଧୁବାନ୍ଧବମାନେ ତାଙ୍କ ବାସଭବନ ନିକଟକୁ ଯାଇ ସ୍ୱର୍ଗତ ବର୍ମାଙ୍କ ଶେଷ ଦର୍ଶନ ଲାଭ କରିଥିଲେ । ତାଙ୍କ ଶବାଧାର ଉପରେ ବହୁ ସଂଖ୍ୟାରେ ପୁରୁଷ ଓ ମହିଳାମାନେ ମାଲ୍ୟାର୍ପଣ କରିଥିଲେ ।

ଉପରଓଲା ସ୍ୱର୍ଗତ ବର୍ମାଙ୍କ ଶବାଧାରକୁ ଏକ ଶୋଭାଯାତ୍ରାରେ ସହର ପରିକ୍ରମା କରାଯାଇ ଶେଷରେ ମହୋଦଧିତୀରସ୍ଥ ସ୍ୱର୍ଗଦ୍ୱାର ଘାଟ ନିକଟକୁ ନିଆ

Digitized by PPRACHIN, SOA

ଯାଇଥିଲି । ସେଠାରେ ସ୍ୱର୍ଗତ ବର୍ମାଙ୍କ ପୋଷ୍ୟପୁତ୍ର ଶ୍ରୀ ଅମିତଭୂଷଣ ଦେବ ମୁଖାଗ୍ନି ଦେଇଥିଲେ ।

୧୮୭୮ ମସିହା ଅକ୍ଟୋବର ୨୨ ତାରିଖରେ ସ୍ୱର୍ଗତ ବର୍ମା ପୁରୀ ଜିଲାର ଚିଲିକା ଅନ୍ତର୍ଗତ ମାଲୁଦ ଗ୍ରାମର ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଉତ୍କଳର ବରପୁତ୍ର ସ୍ୱର୍ଗତ ଗୋଦାବରୀଶ ଓ ପଣ୍ଡିତ ନୀଳକଣ୍ଠଙ୍କର ସେ ସହାଧ୍ୟାୟୀ ଥିଲେ । ପୁରୀ ଜିଲା ସ୍କୁଲରୁ ସେ ଏଣ୍ଟ୍ରାନ୍ସ ପାଶ କରିବା ପରେ ରେଭେନ୍ସା କଲେଜରୁ ବି. ଏ. ପାଶ କରିଥିଲେ । ପାଟନାରୁ ବି. ଟି. ମଧ୍ୟ ପାଶ କରିଥିଲେ । ସେ ଉତ୍କଳମଣିଙ୍କ ସହକର୍ମୀ ରୂପେ ବହୁ ଦିନ କାର୍ଯ୍ୟ କରିଥିଲେ । ତାଙ୍କ ଶିକ୍ଷକ ଜୀବନ ପ୍ରଥମେ କଟକ ପ୍ୟାରୀମୋହନ ଏକାଡେମୀରେ ଆରମ୍ଭ କରିଥିଲେ । ବହୁ ଦିନ ପର୍ଯ୍ୟନ୍ତ ସେ ଖୋର୍ଦ୍ଧା ହାଇସ୍କୁଲର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରି ପ୍ରଶଂସିତ ହୋଇଥିଲେ । ଏହାଛଡ଼ା ଆସିକା, ଭଞ୍ଜନଗର, ଖଲିକୋଟ, ଛତ୍ରପୁର ହାଇସ୍କୁଲଗୁଡ଼ିକରେ ପ୍ରଧାନ ଶିକ୍ଷକ ରୂପେ ମଧ୍ୟ କାର୍ଯ୍ୟ କରି ଆସିଥିଲେ ।

ତାଙ୍କ ଭଳି ଜଣେ ସୁଶୃଙ୍ଖଳ, ଦକ୍ଷ, ଜ୍ଞାନୀ, ଛାତ୍ରବତ୍ସଳ ବ୍ୟକ୍ତି ଦେଖିବାକୁ ବିରଳ । ଛାତ୍ର ଜୀବନରୁ ଜାତୀୟ ଆନ୍ଦୋଳନ କାର୍ଯ୍ୟରେ ସେ ଉତ୍କଳମଣିଙ୍କ ସହ ବହୁ ସମୟ ଧରି କାର୍ଯ୍ୟ କରି ଆସୁଥିଲେ । ଏଭଳି କି ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ଉତ୍କଳୀୟ ସଂସ୍କୃତି ଏବଂ ପରମ୍ପରା ରକ୍ଷା କରିବାକୁ ସେ ଆପ୍ରାଣ ଚେଷ୍ଟା କରିଥିଲେ । କର୍ମକ୍ଷେତ୍ରରୁ ଅବସର ନେବା ପରେ ସେ ସର୍ବଦା ଅଧ୍ୟୟନ ଓ ସାଧନାରେ ରତ ଥିଲେ । ଏହି ୯୪ ବର୍ଷ ବୟସରେ ମଧ୍ୟ ସେ ପ୍ରତ୍ୟହ ବ୍ୟାୟାମ, ପ୍ରାତଃ ଭ୍ରମଣ, ଅଧ୍ୟୟନ ଓ ସାଧନା ଇତ୍ୟାଦି କରୁଥିଲେ ।

ଗତ ୧୯୬୭ ମସିହାରୁ ସ୍ୱର୍ଗତ ବର୍ମା ଶ୍ରୀଅରବିନ୍ଦଙ୍କ ଦର୍ଶନରେ ମୁଗ୍ଧ ହୋଇ ସାଧନାରେ ଆକୃଷ୍ଟ ହୋଇଥିଲେ । ପୁରୀରେ ଶ୍ରୀଅରବିନ୍ଦ ପାଠଚକ୍ର ପ୍ରତିଷ୍ଠା କେବଳ ତାଙ୍କର ଉଦ୍ୟମ ଫଳରେ ହୋଇ ପାରିଥିଲା । ବର୍ତ୍ତମାନ ଶ୍ରୀଅରବିନ୍ଦଙ୍କ ଶତବାର୍ଷିକୀ ସମୟରେ ସେ ଜିଲା ଜଏଣ୍ଟ କମିଟିର ସଭାପତି ରୂପେ ଶ୍ରୀମାଙ୍କର ଆଶୀର୍ବାଦ ପାଇଥିଲେ । ଆଜି ତାଙ୍କ ମୃତ୍ୟୁରେ ସହରବାସୀ ଦୁଃଖିତ ।

୧୯ । ୬ । ୭୨ । ସମାଜ ।

Digitized by PPRACHIN, SOA

'ସମାଜର ଶ୍ରଦ୍ଧାଞ୍ଜଳି'

ଦୈନିକ ସମାଜର ୨୦ । ୭ । ୭୨ ସଂଖ୍ୟାରେ ପ୍ରକାଶିତ

## ସମ୍ବାଦ ଓ ସଂକେତ

ଗଭୀର ଦୁଃଖର କଥା ଯେ, ଓଡ଼ିଶାର ଜଣେ ଲବ୍‌ଧପ୍ରତିଷ୍ଠ, ଧର୍ମପ୍ରାଣ, ପରମସାଧକ ଓ ଆଜୀବନ ଶିକ୍ଷାବ୍ରତୀ ଶ୍ରୀ ପରଶୁରାମ ବର୍ମାଙ୍କର ପୁରୀଠାରେ ତାଙ୍କ ବାସଭବନରେ ଗତ ୧୮ ତାରିଖରେ ପରଲୋକ ହୋଇଯାଇଛି । ତାଙ୍କର ବୟସ ୯୪ ବର୍ଷ ହୋଇଥିଲା । କିନ୍ତୁ ସେ ଜୀବନର ଶେଷ ପର୍ଯ୍ୟନ୍ତ ନିଷ୍ଠାପର ଭାବରେ ଧର୍ମଚର୍ଚ୍ଚା, ଅଧ୍ୟୟନ, ଅଧ୍ୟାପନା, ବ୍ୟାୟାମ ଓ ପ୍ରାତଃଭ୍ରମଣ ପ୍ରଭୃତି କରୁଥିଲେ । ଏପରିକି ରୋଗୀମାନଙ୍କ ପାଖକୁ ଯାଇ ସେବା ଓ ସାହାଯ୍ୟ ଦେବାରେ ସେ ପଶ୍ଚାତ୍ ନ ଥିଲେ । ଜୀବନର ଶେଷ ଭାଗରେ ଶ୍ରୀଅରବିନ୍ଦଙ୍କ ଦର୍ଶନବାଦ ବିଷୟରେ ସେ ଗବେଷଣା କରୁଥିଲେ । ତାଙ୍କର ଉଦ୍ୟମରେ ପୁରୀରେ ଶ୍ରୀଅରବିନ୍ଦ ପାଠଚକ୍ର ପ୍ରତିଷ୍ଠିତ ହୋଇଥିଲା ।

୧୮୭୮ ମସିହା ଅକ୍ଟୋବର ୨୨ ତାରିଖରେ ପୁରୀ ଜିଲ୍ଲା ଚିଲିକା କୂଳବର୍ତ୍ତୀ ମାଲୁଦ ଅଞ୍ଚଳରେ ସେ ଜନ୍ମଗ୍ରହଣ କରିଥିଲେ । ପୁରୀ ଜିଲ୍ଲା ସ୍କୁଲ ଓ ରେଭେନ୍‌ସା କଲେଜରୁ ବି. ଏ. ପାଶ କରି ପାଟନାରେ ବି. ଟି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରଥମେ କଟକ ପ୍ୟାରୀମୋହନ ଏକାଡେମୀର ଶିକ୍ଷକ ରୂପେ ଏବଂ ପରେ ଖୋର୍ଦ୍ଧା ହାଇସ୍କୁଲର ପ୍ରଧାନ ଶିକ୍ଷକରୂପେ ଖୁବ୍ ପ୍ରଶଂସାର ସହିତ କାର୍ଯ୍ୟ କରିଥିଲେ । ସେଠାରୁ ଅବସର ନେବା ପରେ ସେ ବହୁ ସ୍କୁଲର ପ୍ରଧାନ ଶିକ୍ଷକ ହୋଇ ବହୁ ଅନୁଷ୍ଠାନ ଗଢ଼ିଥିଲେ ଓ ଶହ ଶହ ଗ୍ରନ୍ଥଙ୍କୁ ମନୀଷୀ କରିଥିଲେ । ତାଙ୍କ ଅମଳରୁ ଖୋର୍ଦ୍ଧା ହାଇସ୍କୁଲରେ ଉଚ୍ଚ ପରମ୍ପରା ରହିଛି । ସେ ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କ ସହିତ ଦେଶମିଶ୍ରଣ ଆନ୍ଦୋଳନ, ଜାତୀୟ ଶିକ୍ଷାର ପ୍ରସାର ଏବଂ ସାମାଜିକ ସେବା କାର୍ଯ୍ୟରେ ବରାବର ସହଯୋଗ କରି ଆସିଥିଲେ । ୧୯୧୭ରେ ସେ ଖୋର୍ଦ୍ଧା ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିବାବେଳେ ଆମମାନଙ୍କ ସହିତ ତାଙ୍କର ପ୍ରଥମ ପରିଚୟ । ସେ ଯେ କେବଳ ଇଂରାଜୀ ବା ଗଣିତ ପ୍ରଭୃତିରେ ଶିକ୍ଷା ଦେଉଥିଲେ ତାହା ନୁହେଁ, ସଂସ୍କୃତ ସାହିତ୍ୟରେ ମଧ୍ୟ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା । କବି କାଳିଦାସଙ୍କ ମେଘଦୂତ, କୁମାରସମ୍ଭବ ପ୍ରଭୃତି କାବ୍ୟ ତାଙ୍କର ମୁଖସ୍ଥ ଥିଲା । ସେ ଅତି ଭାବପ୍ରବଣ ଭାବରେ ସେଥିରୁ ଶ୍ଲୋକ ବୋଲି ବ୍ୟାଖ୍ୟାନ କରୁଥିଲେ । ସେ ଅସାଧାରଣ ଜ୍ଞାନପିପାସୁ ଥିଲେ । ପୁରୀରେ ଅବସର ନେବା ସମୟରେ ମହାତ୍ମା ଗାନ୍ଧିଙ୍କ ଶତବାର୍ଷିକୀ ଉତ୍ସବରେ ଏବଂ ପୁରୀ ଜିଲ୍ଲା ସ୍କୁଲରେ ମହାତ୍ମା ଗାନ୍ଧିଙ୍କ ପ୍ରତିମୂର୍ତ୍ତି ଉଦ୍‌ଘାଟନ ବେଳେ ମୁଖ୍ୟ ଅତିଥି ରୂପେ ସେ ସାରଗର୍ଭକ ଭାଷଣ ଦେଇଥିଲେ । ପୁଣ୍ୟାତ୍ମା ଆଗ୍ରହ ହରିହର ୯୩ ବର୍ଷ ବୟସ ପର୍ଯ୍ୟନ୍ତ ଯେପରି ବଞ୍ଚିଥିଲେ ସେହିଭଳି କବି ବାଳକୃଷ୍ଣ ପଟ୍ଟନାୟକ ମଧ୍ୟ ୯୪ ବର୍ଷ ବୟସ

Digitized by PPRACHIN, SOA

ପର୍ଯ୍ୟନ୍ତ କରୁଥିଲେ । ମାତ୍ର ଏମାନେ ଶେଷ ଜୀବନରେ ପୀଡ଼ିତାବସ୍ଥାରେ କିଛି କାଳ ପଡ଼ିଯାଇଥିଲେ । କିନ୍ତୁ ୯୪ ବର୍ଷ ବୟସ୍କ ସାଧକ ପରଶୁରାମ ବର୍ମା ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସବଳ କର୍ମଠ ଅବସ୍ଥାରେ ଧର୍ମଚର୍ଚ୍ଚା ଜ୍ଞାନଚର୍ଚ୍ଚା କରୁ କରୁ ସଂସାରରୁ ବିଦାୟ ନେଲେ । ସେଭଳି ଆଦର୍ଶ ଶିକ୍ଷକ ଏ ଯୁଗରେ ନାହାନ୍ତି କହିଲେ ଚଳେ । ତାଙ୍କ ବିୟୋଗରେ ଶିକ୍ଷ କ୍ଷେତ୍ରରେ ଗୋଟିଏ ଯୁଗର ପରିସମାପ୍ତି ହୋଇଗଲା ପରି ମନେହୁଏ । ଆମ୍ଭେମାନେ ତାଙ୍କଠାରେ ବହୁଭାବରେ ଋଣୀ । ତାଙ୍କ ବିୟୋଗରେ ଆମ୍ଭେମାନେ ଗଭୀର ଶୋକପ୍ରକାଶ କରି ତାଙ୍କର ପୁତ୍ର ଓ ଆତ୍ମୀୟ ସ୍ୱଜନଙ୍କର ପ୍ରତି ଗଭୀର ସହାନୁଭୂତି ଜଣାଉଛୁ ଓ ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛୁ । ସମାଜ—୨୦ । ୬ । ୭୨

× × ×

## ପ୍ରଖ୍ୟାତ ଦେଶସେବୀ ଓ ଶିକ୍ଷାବିତ୍

ଓଡ଼ିଶାର ଅତି ବୟୋଜ୍ୟେଷ୍ଠ ଓ ପ୍ରବୀଣ ଶିକ୍ଷକ 'ଲକ୍ଷେ ଗୁରୁଙ୍କର ଗୁରୁ' ପରଶୁରାମ ବର୍ମା ୯୪ ବର୍ଷରେ ଗତ ୧୮ । ୬ । ୭୨ ତାରିଖ ଦିନ, ତାଙ୍କର ପୁରୀ ଘରେ ଇହଧାମରୁ ଚାଲିଯାଇଛନ୍ତି । ସେ ଥିଲେ ଗୋଦାବରୀଶ ମିଶ୍ରଙ୍କର ସହପାଠୀ । ଘର ଡାଲିକା ମଧ୍ୟସ୍ଥ ମାଳୁଦ । ୧୯୧୩ରେ କଲିକତା ବିଶ୍ୱବିଦ୍ୟାଳୟର ଡିଗ୍ରୀ ପାଇ ଅଳ୍ପ ଦିନ ମାତ୍ର ଖୋରଧା ହାଇସ୍କୁଲରେ କାର୍ଯ୍ୟ କଲେ । ପରେ ଗୋପବନ୍ଧୁଙ୍କର ପ୍ରେରଣାରେ ଓ ଗଞ୍ଜାମ 'ଆସିକା'ର ହରିହର ପଣ୍ଡାଙ୍କ ପ୍ରୋତ୍ସାହନରେ ଆସିକା ଯାଇ ସେଠା ହାଇସ୍କୁଲର ମୂଳଦୁଆ ଦେଇଥିଲେ । ସେ ସମୟର କଲେକ୍ଟର କଟେଲ ସାହେବଙ୍କର ଦାବୀରୁ ଆସିକାରେ ଏକ ହାଇସ୍କୁଲ ଖୋଲି ଆନ୍ଧ୍ରମାନଙ୍କର କୁଚକ୍ରକୁ ଏଡ଼ାଇବା ପାଇଁ ଓଡ଼ିଆ ଶିକ୍ଷକ ରଖିବା ବ୍ୟବସ୍ଥା କରାଯାଇଥିଲା । ଏଠାରେ ଦୀର୍ଘ ୧୦ ବର୍ଷ କାଳ କାର୍ଯ୍ୟ କରି ରସଲକୁଣ୍ଡା (ଭଂଜନଗର) ଯାଇ ହାଇସ୍କୁଲକୁ ଚଳାଇଲେ । ପରେ ଛତ୍ରପୁର ଓ ଖଲ୍ଲିକୋଟ ଯାଇ ୩୫ ବର୍ଷ କାଳ ହେଡ୍‌ମାଷ୍ଟ୍ର କାମ କରି ଶେଷରେ ପୁରୀରେ ନିଜ ଘର କରି ରହିଥିଲେ । ତାଙ୍କର ଜୀବନୀ ନିକଟରେ ଛପା ହେବ ।

୨୦ । ୬ । ୭୨

ଡାକ୍ତର ରାଧାଚରଣ ପଣ୍ଡା
ବାଲୁଗାଁ, ପୁରୀ

Digitized by PPRACHIN, SOA

## ସମର୍ପିତ ଅଧ୍ୟାତ୍ମବ୍ରତ୍ ଓ ସମାଜସେବୀ ପରଶୁରାମ

ଜ୍ଞାନ, ବୟସ୍କ, ଉଚ୍ଚକୋଟିର ଶିକ୍ଷକ ବର୍ମା ପରିଣତ ବୟସରେ ସ୍ୱର୍ଗଲାଭ କରିଛନ୍ତି, ତଥାପି ଏହା ତାଙ୍କ ସମ୍ପର୍କରେ ଆସିଥିବା ସମସ୍ତଙ୍କୁ ଅବଶ୍ୟ ଦୁଃଖପ୍ରଦ ହେବ ।

ଖଲ୍ଲିକୋଟ ମର୍ଦ୍ଦରାଜ ଉଚ୍ଚ ବିଦ୍ୟାଳୟକୁ ପ୍ରଧାନ ଶିକ୍ଷକ ରୂପେ ଆସିବାର ବହୁ ପୂର୍ବରୁ ତାଙ୍କ ସହିତ ମୋର ପରିଚୟ ଥିଲା । ଏଠି ଘନିଷ୍ଠତା ବୃଦ୍ଧି ପାଇଲା । ପ୍ରତ୍ୟହ ସ୍କୁଲ କାର୍ଯ୍ୟ ପରେ ଆମର ଶାସ୍ତ୍ରଚର୍ଚ୍ଚା ଚାଲିବା ଗୋଟିଏ ନିୟମରେ ପଡ଼ିଗଲା । ଏଠାରେ ପାଠାଗାର ଉନ୍ନତି ପାଇଁ ତାଙ୍କର ପରିଶ୍ରମ ଓ ସର୍ବସାଧାରଣ କାର୍ଯ୍ୟରେ ସହଯୋଗ ଭୁଲିବାର ନୁହେଁ । କର୍ତ୍ତବ୍ୟନିଷ୍ଠ ଓ ଛାତ୍ରବତ୍ସଳ ଗୁଣରୁ ସେ ବିଦ୍ୟାଳୟର ବହୁ ଉନ୍ନତି କରି ପାରିଥିଲେ । ସେ ଥିଲେ ନିଃସନ୍ତାନ । ନିଜ ସଢ଼ୁଙ୍କ ପୁଅ ଅମିତଙ୍କୁ ସେ ପୋଷ୍ୟପୁତ୍ର କରିଥିଲେ । ସଢ଼ୁ ଦିବ୍ୟସିଂହ ପଟ୍ଟନାୟକ ତାଙ୍କର ସହକର୍ମୀ ଥିଲେ ଓ ତାଙ୍କର ସହଯୋଗୀ ବର୍ମା ମହାଶୟଙ୍କୁ ବହୁ ସାହାଯ୍ୟ କରୁଥିଲେ । ଏ ଉଭୟଙ୍କର ଆଦର୍ଶରେ ଛାତ୍ରମାନେ ଅନୁପ୍ରାଣିତ ହୋଇଥିଲେ । ମୁଁ ଜଣେ ଘନିଷ୍ଠ ବନ୍ଧୁଙ୍କୁ ହରାଇଲି ।

ତାଙ୍କ ଆତ୍ମା ସଦ୍‌ଗତି ଲଭିବାକୁ ଏହି ମାତ୍ର ପ୍ରାର୍ଥନା

୧୫ । ୬ । ୭୧ —ଶ୍ରୀ ବାଇକୋଳି ମହାପାତ୍ର ଜ୍ୟୋତିଷ ବିଶାରଦ
ଖଲ୍ଲିକୋଟ

## ଦେଶସେବୀ ଶିକ୍ଷାବ୍ରତ୍

ବିଶିଷ୍ଟ ଶିକ୍ଷାବ୍ରତୀ ବୟୋବୃଦ୍ଧ ପରଶୁରାମ ବର୍ମାଙ୍କର ପରଲୋକ ଅତ୍ୟନ୍ତ ଦୁଃଖଦାୟକ । ବର୍ମା ମହାଶୟ ଜଣେ ଆଦର୍ଶ ଶିକ୍ଷକ ରୂପେ ଖ୍ୟାତି ଅର୍ଜନ କରିଥିଲେ ଏବଂ ଦେଶସେବା କାର୍ଯ୍ୟରେ ମଧ୍ୟ ସେହିପରି ସହଯୋଗ କରିଥିଲେ । ଓଡ଼ିଆ ଦେଶମିଶ୍ରଣ ସଭା ସମିତିମାନଙ୍କରେ, ସ୍ୱର୍ଗୀୟ ପରଶୁରାମଙ୍କର ସକ୍ରିୟ ଅଂଶ ଗ୍ରହଣ ଅବିସ୍ମରଣୀୟ ।

ଜଣେ ଉଚ୍ଚକୋଟିର ଶିକ୍ଷକ ଭାବରେ ସେ ଗଞ୍ଜାମ ଜିଲ୍ଲାରେ କାର୍ଯ୍ୟ କରିଥିଲେ । ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛି ।

୧୧।୬।୭୧ ଶ୍ରୀ କାମାକ୍ଷୀ ପ୍ରସାଦ ଶର୍ମା
(ସମାଜର ପୁରୁଣା ସଂଖ୍ୟାରୁ ସଂକଳିତ) ବ୍ରହ୍ମପୁର

Digitized by PPRACHIN, SOA

## ସଂସ୍ମରଣ

ଓଡ଼ିଶାରେ ଖ୍ୟାତି ଅର୍ଜନ କରିଥିବା ସୁନାମଧନ୍ୟ ପ୍ରଧାନଶିକ୍ଷକ ପରଶୁରାମ ବର୍ମା, କେବଳ ଜଣେ ସମ୍ମାନନୀୟ ଶିକ୍ଷାବିତ୍ ନ ଥିଲେ, ସେ ମଧ୍ୟ ଥିଲେ ଜଣେ ପ୍ରତିଶ୍ରୁତିବଦ୍ଧ ସଂସ୍କାରକ, ଦେଶମିଶ୍ରଣ ଆନ୍ଦୋଳନର ପ୍ରଭାବଶାଳୀ ସଞ୍ଚାଳକ, ଶ୍ରୀଅରବିନ୍ଦ ଦର୍ଶନ ଧାରାର ପରିପ୍ରସାରରେ ପ୍ରେରଣାଦାୟୀ ସଂଯୋଜକ ଏବଂ ଚିନ୍ତାର ଚେତନାରେ ଅତ୍ୟନ୍ତ ପ୍ରଗତିଶୀଳ ଭାବଧାରାର ବାହକ । ତାଙ୍କର କାର୍ଯ୍ୟର ଧାରା ସମାଜର ବହୁ କ୍ଷେତ୍ରକୁ ପ୍ରସାରିତ ହୋଇଥିଲା ଏବଂ ପ୍ରତିଟି କ୍ଷେତ୍ରରେ ସେ ଉଭା ହୋଇଥିଲେ ଅନୁପ୍ରେରଣାର ଏକ ଅଫୁରନ୍ତ ଉତ୍ସ ରୂପରେ ।

ପରଶୁରାମଙ୍କର ପରଲୋକର ଅବ୍ୟବହିତ ପରେ, ଦୁଇଟି ପ୍ରାଣବନ୍ତ, ଭାବଉଚ୍ଛ୍ୱାସରେ ଅତ୍ୟନ୍ତ ସମ୍ବେଦନଶୀଳ ଆଉ ଉପସ୍ଥାପନାରେ ଅତୀବ ମାର୍ମିକ ଲେଖା ରଚିତ ହୋଇଥିଲା ତାଙ୍କର ଦୁଇଜଣ ଅନୁରାଗୀ ଅନ୍ତରଙ୍ଗ ସହଯୋଗୀଙ୍କର ଦ୍ୱାରା ।

ଦୁଇଟି ଲେଖା ନିଜସ୍ୱ ଗୁଣରେ ମହୀୟାନ ।

ଆଶା, ସଶ୍ରଦ୍ଧ ପାଠକମାନଙ୍କ ପାଖରେ ଏହା ସମାଦୃତ ହେବ ।

Digitized by PPRACHIN, SOA

# ଶ୍ରୀ ଗୁରୁ ସ୍ମରଣେ

## ଶ୍ରୀ ଦିବ୍ୟସିଂହ ପଟ୍ଟନାୟକ

ପରମ ପୂଜନୀୟ ଗୁରୁଦେବ ଲବ୍ଧପ୍ରତିଷ୍ଠ ଭୂତପୂର୍ବ ପ୍ରଧାନ ଶିକ୍ଷକ ସାଧକ ପରଶୁରାମ ବର୍ମା ଏକାଧାରରେ ଥିଲେ ଜଣେ ଆଦର୍ଶବାଦୀ, ଦେଶସେବକ, ପ୍ରଧାନ ଶିକ୍ଷକ, ଶିକ୍ଷାବିତ୍ ଓ ସମାଜ ସଂସ୍କାରକ। ତାଙ୍କର ଜୀବନର ବୈଶିଷ୍ଟ୍ୟ ଥିଲା ଧର୍ମ ଶାସ୍ତ୍ରାଲୋଚନା ଓ ତଦନୁସାରେ ପାରିବାରିକ ଓ ନିଜ ଜୀବନରେ ତଥା ସମାଜ ଜୀବନରେ ଉଚ୍ଚ ଧର୍ମତତ୍ତ୍ୱର ପ୍ରତିଫଳନ, ପରିପାଳନ ଓ ପରିପ୍ରସାର ବିଧାନ।

ମୋର କୈଶୋରାବସ୍ଥାରେ ଖୋର୍ଦ୍ଧା ହାଇସ୍କୁଲର ଛାତ୍ର ଭାବରେ ମୁଁ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସି ପାରିଥିଲି। ସେତେବେଳେ ତାଙ୍କ ଆଶୀର୍ବାଦ ଲାଭ କରି ମୋର ସ୍ୱାଭାବିକ ଜୀବନ ଗଠନର ସମସ୍ତ ସୁବିଧା ଓ ସୁଯୋଗ ପାଇ ନିଜକୁ କୃତାର୍ଥ ମନେ କରୁଛି। ସେ ୧୯୧୪ ମସିହାରେ ଖୋର୍ଦ୍ଧା ଉଚ୍ଚ ବିଦ୍ୟାଳୟରେ ସହକାରୀ ପ୍ରଧାନ ଶିକ୍ଷକ ଭାବରେ ଯୋଗଦାନ କରିଥିଲେ। ସେହି ବିଦ୍ୟାଳୟରେ ଜଣେ ତରୁଣ ଧୀଶକ୍ତିମାନ୍, ଉତ୍ସାହୀ, ସୁଦକ୍ଷ, ମେଧାବୀ, ସମାଜସେବୀ ଆଦର୍ଶ ଶିକ୍ଷକ ଭାବରେ ସେ ପାଞ୍ଚବର୍ଷ ଅତିବାହିତ କରିଥିଲେ। ସେ ସେହି ବିଦ୍ୟାଳୟରେ ଯୋଗଦାନ କରିବା ପୂର୍ବରୁ ବି. ଏ. (ଅନର୍ସ) ପାଶ କରି ପ୍ୟାରୀମୋହନ ଏକାଡେମୀରେ ୬ ମାସ ପାଇଁ ସହକାରୀ ଶିକ୍ଷକ ରୂପେ ମଧ୍ୟ କାର୍ଯ୍ୟ କରି ସୁଖ୍ୟାତି ଅର୍ଜନ କରି ସାରିଥାନ୍ତି ଏବଂ ସେହି ବିଦ୍ୟାଳୟରେ କାର୍ଯ୍ୟ କରୁଥିବା ସମୟରେ ପାଟନା ଟ୍ରେନିଂ କଲେଜରୁ ବି. ଟି. ପାସ କଲେ। ଖୋର୍ଦ୍ଧାରେ କାର୍ଯ୍ୟ କରୁଥିବା ସମୟରେ ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା କେତେଗୁଡ଼ିଏ ଆଦର୍ଶବାଦୀ ଚରିତ୍ରବାନ, ଧର୍ମପରାୟଣ, ନୀତିବାନ ଦେଶପ୍ରେମୀ ନାଗରିକ ସୃଷ୍ଟି କରିବା। ଏହି ଦୃଷ୍ଟିକୋଣରୁ ବାଣପୁର ଗୋଦାବରୀଶ ଉଚ୍ଚ ବିଦ୍ୟାଳୟର ପ୍ରାଣପ୍ରତିଷ୍ଠାତା ସୁଦକ୍ଷ ଆଦର୍ଶ ଶିକ୍ଷକ ସ୍ୱର୍ଗୀୟ ବିଶ୍ୱନାଥ ଶତପଥୀ ଥିଲେ ତାଙ୍କର ପ୍ରିୟତମ ପଟ୍ଟଶିଷ୍ୟ। ତାଙ୍କର ସେହି ଉଚ୍ଚାଭିଳାଷ ପୂରଣ ପାଇଁ ତାଙ୍କର ଶୁଭଦୃଷ୍ଟି ମଧ୍ୟ ମୋ ଉପରେ ପଡ଼ିଥିଲା ଓ ମୁଁ ତାଙ୍କ ନିକଟ ସମ୍ପର୍କରେ ଆସି ତାଙ୍କଠାରୁ ଯେଉଁ ଆଶୀର୍ବାଦ ଓ ସଦୁପଦେଶ ଲାଭ କରିଛୁ, ତାହା ହେଉଛି ମୋ ଜୀବନର ପ୍ରଧାନ ସମ୍ବଳ ଓ ପାଥେୟ।

ଛାତ୍ରାବସ୍ଥାରୁ ସେ ଜଣେ ଧୀଶକ୍ତିମାନ୍ ଆଦର୍ଶ ଯୁବନେତା ଭାବରେ ସୁଖ୍ୟାତି ଅର୍ଜନ କରିଥିଲେ ଏବଂ ସେ ସମୟରେ ଦେଶାତ୍ମବୋଧର ଅଭିବୃଦ୍ଧି ପାଇଁ ସଙ୍ଗଠିତ ପ୍ରାୟ ପ୍ରତ୍ୟେକ ଅନୁଷ୍ଠାନର ଅଗ୍ରଣୀ ଥିଲେ। ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କାଳରେ ସେ ସୁନାମଧନ୍ୟ ଗୋଦାବରୀଶ ଓ ନୀଳକଣ୍ଠଙ୍କର ସହାଧ୍ୟାୟୀ ଥିଲେ ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ ନିକଟ ସମ୍ପର୍କରେ ଆସି ତାଙ୍କର ପ୍ରତ୍ୟେକ କର୍ମ

Digitized by PPRACHIN, SOA

ଯୋଜନାରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ରେଭେନ୍‌ସା କଲେଜରେ ଛାତ୍ର ଥିବା ସମୟରେ ସେ ଉତ୍କଳର ବରେଣ୍ୟ ନେତୃବୃନ୍ଦ ମଧୁସୂଦନ, ବ୍ରଜସୁନ୍ଦର, ବିଚିତ୍ରାନନ୍ଦ, ଲକ୍ଷ୍ମୀଧର, ଭିକାରୀଚରଣ ପ୍ରଭୃତିଙ୍କ ସମ୍ପର୍କରେ ଆସି ଉତ୍କଳ ସମ୍ମିଳନୀ, କଲେରା ରୋଗ ସେବା, ବନ୍ୟାକଷ୍ଟ ଲୋକଙ୍କ ପ୍ରଭୃତି ସଙ୍ଗେସଙ୍ଗେ ନାନାବିଧ ରାଜନୈତିକ ଓ ସାଂସ୍କୃତିକ କାର୍ଯ୍ୟରେ ଅଂଶ ଗ୍ରହଣ କରିଥିଲେ । ଏହି ସବୁ ମହତ୍ କାର୍ଯ୍ୟରେ ଯୋଗଦାନ କରି ସେ ଯେଉଁ ଉଚ୍ଚ ଆଦର୍ଶରେ ଉଦବୁଦ୍ଧ ହୋଇ-ଥିଲେ ତାହାର ପ୍ରଭାବ ନିଜର ଛାତ୍ରମାନଙ୍କ ମଧ୍ୟରେ ପ୍ରତିଫଳିତ କରାଇବା ଏବଂ ସେମାନଙ୍କ ମଧ୍ୟରେ ଭାରତୀୟ ଭାବ ଜାଗ୍ରତ କରାଉଥିବା ଦୃଷ୍ଟିରୁ ସେ ସ୍ଥାନୀୟ ବ୍ରିଟିଶ ଶାସକମାନଙ୍କ ଚକ୍ଷୁଶୂଳ ମଧ୍ୟ ହୋଇଥିଲେ । ଖୋର୍ଦ୍ଧା ସ୍କୁଲରେ କାର୍ଯ୍ୟ କରୁଥିବା ସମୟରେ ସେ ସତ୍ୟବାଦୀ ବନ ବିଦ୍ୟାଳୟ ସହିତ ଘନିଷ୍ଠ ସମ୍ପର୍କ ରଖି-ଥିଲେ ଓ ଛାତ୍ରମାନଙ୍କୁ ସେ ବିଦ୍ୟାଳୟକୁ ନେଇ ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ କରୁଥିଲେ । ତିନି ବର୍ଷ ପରେ ସେ ଖୋର୍ଦ୍ଧା ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦକୁ ଉନ୍ନୀତ ହେଲେ ଏବଂ ପରେ ବୃହତ୍ତର ଦେଶସେବାର କ୍ଷେତ୍ର ସନ୍ଧାନରେ ଏ ବିଦ୍ୟାଳୟ ପରିତ୍ୟାଗ କରିଥିଲେ ।

ଉତ୍କଳ ସମ୍ମିଳନୀ ପ୍ରତିଷ୍ଠିତ ହେବା ପରେ ଗଞ୍ଜାମରେ ଓଡ଼ିଆ ଜାତୀୟ ଭାବର ଜାଗରଣ ବିଶେଷ ଭାବରେ ତାଙ୍କୁ ଆକର୍ଷଣ କଲା । ଗଞ୍ଜାମ ଜିଲାର ଓଡ଼ିଆ ଅଞ୍ଚଳର କେନ୍ଦ୍ରସ୍ଥଳ ଆସ୍କାଠାରେ ଗୋଟିଏ ଉଚ୍ଚ ବିଦ୍ୟାଳୟ ସ୍ଥାପିତ ହେଲା । ସେହି ବିଦ୍ୟାଳୟ ପାଇଁ ଜଣେ ଓଡ଼ିଆ ଦେଶପ୍ରେମୀ ଉତ୍ସାହୀ ପ୍ରଧାନ ଶିକ୍ଷକ ଆବଶ୍ୟକ ପଡ଼ିବାରୁ ଉତ୍କଳମଣି ଗୋପବନ୍ଧୁଙ୍କ ପରାମର୍ଶ ଏବଂ ଗଞ୍ଜାମର ବିଶିଷ୍ଟ ନେତୃବୃନ୍ଦଙ୍କ ଅନୁରୋଧ କ୍ରମେ ସେ ୧୯୧୮ ମସିହା ସେପ୍‌ଟେମ୍ବର ମାସରେ ଉକ୍ତ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବରେ ଯୋଗଦାନ କଲେ । ସେ ଉକ୍ତ ବିଦ୍ୟାଳୟରେ ୧୦ ବର୍ଷ ଏବଂ ଭଞ୍ଜନଗର, ଖଲ୍ଲିକୋଟ ଓ ଛତ୍ରପୁର ବିଦ୍ୟାଳୟ-ମାନଙ୍କରେ ଆଉ ପନ୍ଦର ବର୍ଷ କାର୍ଯ୍ୟ କରି ୧୯୪୩ ମସିହାରେ ଅବସର ଗ୍ରହଣ କଲେ । ଗଞ୍ଜାମ ଜିଲାରେ ଦୀର୍ଘ ୨୫ ବର୍ଷ କାର୍ଯ୍ୟ କରି ସେ ଅଞ୍ଚଳରେ ଶିକ୍ଷା ପ୍ରସାର, ଓଡ଼ିଆ ଭାବର ଜାଗରଣ, ସମାଜ ସଂସ୍କାର, ରାଜନୀତି ଓ ଧର୍ମନୀତି କ୍ଷେତ୍ରରେ ଯେଉଁ କାର୍ଯ୍ୟ ସବୁ କରି ଯାଇଛନ୍ତି, ସେଥିପାଇଁ ସେ ଗଞ୍ଜାମର ପ୍ରତ୍ୟପଲ୍ଲୀରେ ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲେ । ଏହି ବିଦ୍ୟାଳୟ ସ୍ଥାପନ ପାଇଁ ଓଡ଼ିଆପ୍ରେମୀ ଜିଲାପାଳ କଟ୍ରେଲଙ୍କର ଉଦ୍ୟମ ଚିରସ୍ମରଣୀୟ । ଗଞ୍ଜାମର ଶତ ଶତ ଶିଷ୍ୟ ତାଙ୍କ ଦ୍ୱାରା ଉପକୃତ ହୋଇଥିଲେ ଏବଂ ସେମାନେ ତାଙ୍କୁ ପିତୃତୁଲ୍ୟ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରନ୍ତି । ତାଙ୍କର ବିଶିଷ୍ଟ ଶିଷ୍ୟମାନଙ୍କ ମଧ୍ୟରେ ଚିଫ୍ ଇଞ୍ଜିନିୟର ମମତାଜ ଅଲ୍ଲି, ସଚିବ ପଞ୍ଚାନନ ତ୍ରିପାଠୀ, ଆଇ ଏ. ଏସ୍.,

Digitized by PPRACHIN, SOA

ଆଡ୍‌ଭୋକେଟ ହୟଗ୍ରୀବ ପଣ୍ଡା, ରାଧାଚରଣ ଦାସ, ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ପଦ୍ମଚରଣ ତ୍ରିପାଠୀ, ରାଜମାତାଙ୍କ ଶିରଜାଭୂଷଣ, ବୃନ୍ଦାବନ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଗଞ୍ଜାମର ବରିଷ୍ଠ ନେତା ନିରଞ୍ଜନ, ଦିବାକର, ଲାଲମୋହନ, ବିଶ୍ୱନାଥ, ଲିଙ୍ଗରାଜ ପ୍ରଭୃତିଙ୍କର ସେ ଅନ୍ତରଙ୍ଗ ବନ୍ଧୁ ହୋଇ ପାରିଥିଲେ ।

ନିମ୍ନଲିଖିତ କାର୍ଯ୍ୟ ପାଇଁ ସେ ଉକ୍ତ ଜିଲ୍ଲାରେ ସୁପରିଚିତ ଓ ସ୍ମରଣୀୟ ।

ଓଡ଼ିଶା ଦେଶ ମିଶ୍ରଣ ଓ ଉତ୍କଳ ପ୍ରଦେଶ ଗଠନ ପାଇଁ ଗଞ୍ଜାମ ଜିଲ୍ଲାରେ ଫିଲିପ୍-ଡଫ କମିଶନ ଓ ଓଡନେଲ୍ କମିଟି ବସିଥିବା ବେଳେ ସେ ସହକାରୀ ଶିକ୍ଷକ ଓ ଛାତ୍ରମାନଙ୍କୁ ସାଙ୍ଗରେ ଧରି ଘୁମୁସର ଏବଂ ଛତ୍ରପୁର ସବ୍‌ଡିଭିଜନର ପ୍ରତ୍ୟେକ ଗ୍ରାମ ବୁଲି "ଆମେ ସବୁ ଓଡ଼ିଆ ଏକ" "ଦେଶ ମିଶ୍ରଣ ଆମର ଦାବୀ" ପ୍ରଭୃତି ଧ୍ୱନି ଦ୍ୱାରା ଗଗନ ପବନ ମଣ୍ଡଳ କମ୍ପିତ ଓ ମୁଖରିତ କରି ଦେଇଥିଲେ । ଆସିକା ଉଚ୍ଚ ବିଦ୍ୟାଳୟ ପ୍ରାଙ୍ଗଣରେ ଗୋଟିଏ ବିରାଟ ସଭାରେ ଫିଲିପ-ଡଫଙ୍କୁ ଯେଉଁ ଦାବୀପତ୍ର ଦିଆ ଯାଇଥିଲା ତାହାର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ସେ ଥିଲେ ଅଗ୍ରଣୀ ।

ଓଡ଼ିଆ ଅଞ୍ଚଳର ବିଦ୍ୟାଳୟମାନଙ୍କରୁ ତେଲୁଗୁ ପ୍ରଭାବ କମାଇ ଓଡ଼ିଆ ଜାତୀୟତାର ଅଭିବୃଦ୍ଧି ପାଇଁ ସେ ପ୍ରଗାଢ଼ ଉଦ୍ୟମ କରିଥିଲେ । ତାହାର ପ୍ରଭାବରେ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଛାତ୍ରଙ୍କ ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧିପ୍ରାପ୍ତ ହୋଇଥିଲା ।

ମହାତ୍ମା ଗାନ୍ଧିଙ୍କର ଗଞ୍ଜାମ ଭ୍ରମଣବେଳେ ଆସିକାଠାରେ ତାଙ୍କୁ ଯେଉଁ ଅଭ୍ୟର୍ଥନା ଦିଆ ଯାଇଥିଲା, ସେଥିରେ ସେ ମଧ୍ୟ ନେତୃତ୍ୱ ନେଇଥିଲେ । କଂଗ୍ରେସ ଆନ୍ଦୋଳନକୁ ସେ ସର୍ବଦା ହାର୍ଦ୍ଦିକ ସହଯୋଗ ପ୍ରଦାନ କରୁଥିଲେ ।

ସେ ସମୟରେ ପୁରୁଷୋତ୍ତମପୁର ନିକଟବର୍ତ୍ତୀ ତାରତାରିଣୀ, ଆସିକାର ଖମ୍ବେଶ୍ୱରୀ ଏବଂ ସୋରଡ଼ାର କଣ୍ଡାପୀଠ ଠାକୁରାଣୀଙ୍କଠାରେ ଉତ୍କଟ ଧରଣର ବଳି ପ୍ରଥା ପ୍ରଚଳିତ ଥିଲା । ଶ୍ରୀଯୁକ୍ତ ବର୍ମାଙ୍କ ଉଦ୍ୟମରେ ଏହି ବଳି ପ୍ରଥା ଲୋପ ପାଇଥିଲା । ଆସିକାର ଜମିଦାର ଆନ୍ଧ୍ର ବ୍ରାହ୍ମଣ ହୋଇଥିଲେ ମଧ୍ୟ ତାଙ୍କ ଘର ପକ୍ଷରୁ ଖମ୍ବେଶ୍ୱରୀଙ୍କ ନିକଟରେ ବଳି ପଡ଼ୁଥିଲା । ବର୍ମାଙ୍କ ଅନୁରୋଧ-କ୍ରମେ ଜମିଦାର କୋଣ୍ଡଲ ରାଓ ବଳି ବନ୍ଦ କଲେ । ତାଙ୍କ ନାମାନୁସାରେ ଗୋଟିଏ ଗୀତ ରଚିତ ହୋଇଥିଲା ।

"କୋଣ୍ଡଲ ରାଓ ଦୟା କଲେ
ବୋଦା ନ ମାରି ଛାଡ଼ି ଦେଲେ ।"

Digitized by PPRACHIN, SOA

ଅ.ସିକା ସହରରେ ଧର୍ମ ଭାବ ଜାଗ୍ରତ କରାଇବା ପାଇଁ ବିଦ୍ୟାଳୟର ଛାତ୍ର ଓ ଶିକ୍ଷକମାନଙ୍କ ପକ୍ଷରୁ ପ୍ରତ୍ୟେକ ଦିନ ପ୍ରତ୍ୟୁଷରେ "ଭଜ ଗୋବିନ୍ଦଂ ସୁର ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ ମତେ" ଗାନ କରି ସହର ପରିକ୍ରମା କରନ୍ତି । ବର୍ଷ ଶେଷରେ ଗୋଟିଏ ବଡ଼ ଧରଣର ଅଷ୍ଟ ପ୍ରହର କୀର୍ତ୍ତନର ବ୍ୟବସ୍ଥା କରାଯାଉଥିଲା । ଉକ୍ତ କୀର୍ତ୍ତନରେ "ଭଜ ଗୋବିନ୍ଦଂ" ଆବୃତ୍ତି କରା-ଯାଉଥିଲା । ତେଣୁ ଷ୍ଟେସନର ପୂରପଲ୍ଲୀରେ ଏବେ ସୁଦ୍ଧା କୀର୍ତ୍ତନ ଶବ୍ଦ ପରିବର୍ତ୍ତେ "ଭଜ ଗୋବିନ୍ଦଂ" ପ୍ରତିଶବ୍ଦ ବ୍ୟବହୃତ ହେଉଛି ।

ତାହାଙ୍କ ପ୍ରେରଣାରେ ବିଦ୍ୟାଳୟମାନଙ୍କରେ ସରସ୍ୱତୀ ପୂଜା ଓ ଗଣେଶ ପୂଜା ଆରମ୍ଭ କରାଯାଇ ଛାତ୍ରମାନଙ୍କ ମଧ୍ୟରେ ସାଙ୍ଗଠନିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମର ସୂତ୍ରପାତ କରି ଯାଇଥିଲା । ବିଭିନ୍ନ ବିଦ୍ୟାଳୟରେ ତାଙ୍କର ସହକର୍ମୀ ଭାବରେ ଏହି ସବୁ କାର୍ଯ୍ୟରେ ସହଯୋଗ କରିବାର ସୁଯୋଗ ପାଇଥିବାରୁ ମୁଁ ନିଜକୁ ଧନ୍ୟ ମନେକରେ ।

ଧର୍ମଶାସ୍ତ୍ରାଲୋଚନା ଥିଲା ତାଙ୍କ ଜୀବନର ବୈଶିଷ୍ଟ୍ୟ । ଛାତ୍ର ଜୀବନରୁ ସେ ଏଥିପ୍ରତି ପ୍ରବଳ ଆଗ୍ରହ ପ୍ରକାଶ କରୁଥିଲେ ଓ ସାଧୁସନ୍ଥଙ୍କ ସମ୍ପର୍କରେ ଆସି ସେମାନଙ୍କର କଲ୍ୟାଣ ଭାଜନ ହୋଇଥିଲେ । ଶିକ୍ଷକତା କରୁଥିବା ସମୟରେ ଛାତ୍ରମାନଙ୍କ ମଧ୍ୟରେ ଧର୍ମଭାବ ଜାଗ୍ରତ କରିବା ପାଇଁ ସେ ପ୍ରାଣପଣେ ଉଦ୍ୟମ କରି-ଥିଲେ । ସେ ସମୟରେ "ନମସ୍ତେ ସତେତେ ଜଗତ୍କାରଣାୟ" ସ୍ତବଟି ପ୍ରତ୍ୟେକ ଛାତ୍ରର କଣ୍ଠସ୍ଥ ଥିଲା । ଏବେ ମଧ୍ୟ ପରିଣତ ବୟସରେ ସବୁ ଛାତ୍ରଙ୍କ ମୁଖରୁ ସ୍ୱତଃ-ସ୍ଫୂର୍ତ୍ତି ଭାବରେ ତାହା ବାହାରି ପଡ଼ୁଥିବାର ଦେଖାଯାଏ ।

ଗତ ଷାଠିଏ ବର୍ଷକାଳ ଅବସର ସମୟଟିକ ସେ ନିଷ୍ଠା ସହକାରେ ଶାସ୍ତ୍ରା-ଧ୍ୟୟନରେ ଅତିବାହିତ କରିଛନ୍ତି । ଧର୍ମ ପୁସ୍ତକ ଥିଲା ତାଙ୍କର ସହଚର । ଯେତେବେଳେ କୌଣସି ନୂତନ ପୁସ୍ତକର ସନ୍ଧାନ ମିଳେ, ସେତେବେଳେ ସେ ତାହା ଯଥାଶୀଘ୍ର କ୍ରୟ କରି ଆମୂଳଚୂଳ ପାଠ କରି ପାଣି ପରି ପିଇ ପକାନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ପଠିତ ପୁସ୍ତକଗୁଡ଼ିକରେ ଶତ ଶତ ନାଲି ନେଳି ପେନ୍ସିଲ ଗାର ଓ ଟୀକା ଟିପ୍ପଣୀ ଦେଖିବାକୁ ମିଳେ । ପୁସ୍ତକରେ ଗାର ପଡ଼ିବା ସଙ୍ଗେ ସଙ୍ଗେ ତାଙ୍କ ମସ୍ତିଷ୍କରେ ଗଭୀର ରେଖାପାତ ହୋଇଯାଏ ଓ ସ୍ମୃତିର ଗନ୍ତାଘରେ ଚିରଦିନ ପାଇଁ ସାଇତି ହୋଇ ରହିଯାଏ । ସର୍ବଧର୍ମ ସମନ୍ୱୟ ଥିଲା ତାଙ୍କ ଧର୍ମାଲୋଚନାର ବିଶିଷ୍ଟ ଆଭିମୁଖ୍ୟ । ଗୀତା, ଭାଗବତ, ଉପନିଷଦ ଓ ବେଦାନ୍ତ ସହିତ ସେ କୋରାନ୍, ବାଇବେଲ, ତ୍ରିପିଟକ ଓ ଜେନ୍ଦା ଆବେସ୍ତା, ଗ୍ରନ୍ଥସାହେବ ପ୍ରଭୃତି ଧର୍ମ ଶାସ୍ତ୍ରର ଅଧ୍ୟୟନ ଓ ଗବେଷଣା କରୁଥିଲେ ଓ ସେ ସବୁ

Digitized by PPRACHIN, SOA

ମଧ୍ୟରେ ଥିବା ସମନ୍ୱୟର ସନ୍ଧାନ କରୁଥିଲେ । ସେ ବ୍ରହ୍ମବିଦ୍ୟା ସମିତିର ଜଣେ ପ୍ରାଚୀନ ସଭ୍ୟ ଥିଲେ । ବୈଷ୍ଣବ ଧର୍ମରେ ମଧ୍ୟ ସେ ଦୀକ୍ଷିତ ହୋଇଥିଲେ ଏବଂ ରାମକୃଷ୍ଣ ମିଶନର ପୃଷ୍ଠପୋଷକ ଥିଲେ । ବିବେକାନନ୍ଦ ସାହିତ୍ୟରେ ତାଙ୍କର ପାରଦର୍ଶିତା ଅତୁଳନୀୟ ।

ପ୍ରାୟ ୨୦ ବର୍ଷ କାଳ ପ୍ରତ୍ୟେକ ବର୍ଷର ଗୀତା ଜୟନ୍ତୀ ସମୟରେ ଗୀତାତତ୍ତ୍ୱ ସମ୍ବନ୍ଧରେ "Midnight Gleanings" ନାମକ ପତ୍ରିକା ଛପାଇ ବନ୍ଧୁମାନଙ୍କ ମଧ୍ୟରେ ବିତରଣ କରୁଥିଲେ । ଗତ ୧୦ ବର୍ଷ ହେଲା ଅରବିନ୍ଦ ସାହିତ୍ୟ ଓ ମାତୃବାଣୀ ତାଙ୍କର ଅତିପ୍ରିୟ ପଠନୀୟ ବିଷୟ ଥିଲା । ପୁରୀ ସହରରେ ପ୍ରାୟ ୪୦ ଗୋଟି ପାଠଚକ୍ର ସ୍ଥାପନ କରି ତାହାର ପରିଚାଳନା ଦାୟିତ୍ୱ ସେ ଗ୍ରହଣ କରିଥିଲେ ଏବଂ ପ୍ରତିଦିନ ସେ ଚାରି ପାଞ୍ଚଗୋଟି ପାଠଚକ୍ରରେ ଯୋଗଦାନ କରି ଆଲୋଚନାରେ ଭାଗ ନେଉଥିଲେ ଏବଂ ସଭ୍ୟମାନଙ୍କୁ ଉତ୍ସାହିତ କରୁଥିଲେ । ଅରବିନ୍ଦଙ୍କ ଦ୍ୱାରା ପ୍ରଦର୍ଶିତ ପୂର୍ଣ୍ଣଯୋଗ "Integral Yoga" ଏବଂ ଶରୀରର ରୂପାନ୍ତର ସିଦ୍ଧାନ୍ତ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା ଏବଂ ସେହି ସିଦ୍ଧାନ୍ତକୁ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ସେ ସର୍ବଦା ତତ୍ପର ଥିଲେ । ଐଶ୍ୱରିକ ଜୀବନର ପ୍ରକୃତ ଅନୁଭବ ପାଇଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଶରୀର ନୀରୋଗ, ଜରାମୁକ୍ତ, ସୁଦୃଢ଼ ଓ ସକ୍ଷମ ରହିବା ନିତାନ୍ତ ଆବଶ୍ୟକ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଏବଂ ତାଙ୍କ ଜୀବନରେ ତାହା ବାସ୍ତବତାରେ ପ୍ରକଟିତ ହୋଇଥିଲା । ମୃତ୍ୟୁ ବେଳକୁ ତାଙ୍କୁ ୯୪ ବର୍ଷ ହୋଇଥିଲେ ସୁଦ୍ଧା ଜରା ବା ବ୍ୟାଧି ତାଙ୍କ ଶରୀରକୁ ସ୍ପର୍ଶ କରିପାରି ନ ଥିଲା । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ କାର୍ଯ୍ୟଦକ୍ଷ ଥିଲେ ଓ ସହାସ୍ୟ ବଦନରେ ଓ ପୂର୍ଣ୍ଣ ସଚେତନ ଅବସ୍ଥାରେ ପ୍ରାଣତ୍ୟାଗ କଲେ । ଗୀତା ଶାସ୍ତ୍ରର ନିମ୍ନଲିଖିତ ଦୁଇଗୋଟି ଶ୍ଳୋକର ମର୍ମ ତାଙ୍କ ମହାପ୍ରୟାଣ ମୁହୂର୍ତ୍ତର ଆଲେଖ୍ୟ ହୋଇଥିଲା—

ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ
ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ
ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରଂ
ଯଃ ପ୍ରୟାତି ସ ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ।

ଅତିଥି ସତ୍କାର ଓ ରୋଗୀ ସେବା ଥିଲା ତାଙ୍କର ଗୋଟିଏ ଅତି ପ୍ରିୟ କାର୍ଯ୍ୟ । ଯେ ଥରେ ତାଙ୍କ ସଙ୍ଗେ ଆଳାପ କରିବାର ସୁଯୋଗ ପାଏ, ସେ ହୋଇଯାଏ ଚିର ଦିନପାଇଁ ତାଙ୍କର ବନ୍ଧୁ । ଏହି ସବୁ ଗୁଣ ଲାଗି ସେ ପୁରୀ ସହରରେ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲେ । ସେ ଆବାଳବୃଦ୍ଧବନିତା ସମସ୍ତଙ୍କର ପ୍ରିୟତମ ବନ୍ଧୁ

Digitized by PPRACHIN, SOA

ହୋଇ ପାରିଥିଲେ ଓ ସର୍ବସାଧାରଣରେ 'ଜଜ' ଭାବରେ ପରିଚିତ ଥିଲେ । ଛୋଟ ଛୋଟ ପିଲମାନେ ତାଙ୍କୁ ଅରବିନ୍ଦ ବୋଲି ଜାଣନ୍ତି ।

ଗୁରୁଭାବରେ ମୋର ତାଙ୍କ ସଙ୍ଗେ ପ୍ରଥମ ପରିଚୟ ଓ ତାଙ୍କର ଆଶୀର୍ବାଦ ମୋର ଜୀବନର ସମ୍ବଳ ହୋଇଛି । ପରବର୍ତ୍ତୀ କାଳରେ ବହୁ ବିଦ୍ୟାଳୟରେ ମୁଁ ତାଙ୍କର ସହକାରୀ ହେବାର ସୁଯୋଗ ଲାଭ କରି ବିଶେଷ ପରିମାଣରେ ଉପକୃତ ହୋଇଛି ଏବଂ ବନ୍ଧୁ ଭାବରେ ତାଙ୍କର ଅନାବିଳ ପ୍ରେମ ଲାଭ କରି ମୁଁ ନିଜକୁ କୃତାର୍ଥ ମନେକରେ । ଭଗବାନ ତାଙ୍କ ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ ।

(ଏହି ପ୍ରବନ୍ଧଟି ସମାଜର—୨୮ । ୭ । ୭୨ ସଂଖ୍ୟାରେ ପରଶୁରାମଙ୍କର ଏକାଦଶାହ ଉପଲକ୍ଷେ ପ୍ରକାଶିତ) ।

Digitized by PPRACHIN, SOA

'ମା'

# ଅମ୍ଳାନ ପୁରୁଷ—ପରଶୁରାମ

## ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର

ଜାଣି ବୋଲି ତାଙ୍କୁ କହୁଚି, ପୁରୀ ପାଠଚକ୍ରର ଅନ୍ୟ ସଭ୍ୟଙ୍କ ଭଳି ପରମ ଶ୍ରଦ୍ଧା ଓ ସମ୍ମାନର ସହ । କିନ୍ତୁ ଅମ୍ଳାନ ପୁରୁଷ ପରଶୁରାମ ମୋର ରକ୍ତସମ୍ପର୍କୀୟ ନୁହନ୍ତି । ପୁରୀ ଶ୍ରୀଅରବିନ୍ଦ ପାଠଚକ୍ର ପରିବାରର ସେ ଥିଲେ ଅଭିଭାବକ ଗୋଟିଏ ଦଶନ୍ଧି ଧରି । କୁଟୁମ୍ବ ନ ଥାଇ ସେ ଥିଲେ ବିଶ୍ୱକୁଟୁମ୍ବୀ, ସମସ୍ତଙ୍କର ସୁଖ ଦୁଃଖର ସାଥୀ, ବିପଦର ବନ୍ଧୁ । ପୁରୀ ପାଠଚକ୍ରର ସମସ୍ତ ସଭ୍ୟ—ଆବାଳବୃଦ୍ଧବନିତାଙ୍କର ସେ ଥିଲେ ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ, ଆଉ ମୋର ଥିଲେ ଆତ୍ମାର ବନ୍ଧୁ । ତାଙ୍କ ସହ ମୋର ସମ୍ପର୍କ ଯେ କୌଣସି ରକ୍ତ ସମ୍ପର୍କୀୟଙ୍କଠାରୁ ଥିଲା ଅଧିକ ନିବିଡ଼ ଓ ଗଭୀର । କାରଣ ଏ ସମ୍ପର୍କ ଥିଲା ନିଃସ୍ୱାର୍ଥ ଓ ପବିତ୍ର । ଆତ୍ମା ସହ ଆତ୍ମାର ବନ୍ଧନର କ'ଣ ବିଚ୍ଛେଦ ଅଛି, ବିଲୟ ଅଛି ? ମୃତ୍ୟୁରେ ବି ଏ ସମ୍ପର୍କ ସୁଦୃଢ଼, ଅତୁଟ ଓ ଅବିଚ୍ଛିନ୍ନ ।

ପୁରୀ ପାଠଚକ୍ର ଆନ୍ଦୋଳନର ଇତିହାସ ଆଲୋଚନା କଲେ ଯେଉଁ କେତୋଟି ମହାନ୍ ମାତୃଭକ୍ତ, ସାଧକ ଓ ତ୍ୟାଗପୂତ ବ୍ୟକ୍ତିତ୍ୱଙ୍କର ନାମୋଲ୍ଲେଖ ନ କରି ରହି ହେବ ନାହିଁ, ତନ୍ମଧ୍ୟରେ ଶ୍ରୀ ପରଶୁରାମ ବର୍ମା ମୋ'ର ବିଚାରରେ ଅଗ୍ରଗଣ୍ୟ । ମୋ ଅନୁରୋଧରେ ପରିଣତ ବୟସରେ ସେ ଯେପରି ସଦାସର୍ବଦା ଛାଇପରି ମୋ ସହ ରହି ସବୁ ପାଠଚକ୍ରକୁ ଯାଇ ଘରେ ଘରେ ନୂଆ ପାଠଚକ୍ର ଖୋଲିବାର ଉତ୍ସାହ ସୃଷ୍ଟି କରି ଆବଶ୍ୟକ କ୍ଷେତ୍ରରେ ଆର୍ଥିକ ସାହାଯ୍ୟ ଦେଇ ପାଠଚକ୍ର ଆନ୍ଦୋଳନକୁ ଜୀବନ୍ତ ଓ ଜାଗ୍ରତ କରାଇବାରେ ମତେ ସର୍ବାଧିକ ପ୍ରେରଣା ଓ ପୃଷ୍ଠପୋଷକତା ଦେଇଥିଲେ, ତାହା କୃତଜ୍ଞ ହୃଦୟରେ ସ୍ୱୀକାର ନ କରିବାର ମୋର ଉପାୟ ନାହିଁ ।

ଶ୍ରୀ ପରଶୁରାମ ବର୍ମା ଥିଲେ ପୁରୀ ସହରରେ କାହିଁକି ଓଡ଼ିଶାର ଜଣେ ଖ୍ୟାତନାମା କର୍ମୀପୁରୁଷ । ପ୍ରଥମେ ତାଙ୍କ ବିଷୟରେ ପଢ଼ିବାକୁ ପାଇଥିଲି ତାଙ୍କ ବାଲ୍ୟବନ୍ଧୁ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରଖ୍ୟାତ ପୁସ୍ତକ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ'ରୁ । ପରଶୁରାମ ବର୍ମା ଚଉକାର ମାଲୁଦରେ ଜନ୍ମଲାଭ କରିଥିଲେ । ଇଂରାଜୀ ଓ ବଙ୍ଗ ଭାଷାର ସୁଯୋଗ୍ୟ ଅନୁବାଦକ ସ୍ୱର୍ଗୀୟ ନିରଞ୍ଜନ ପଟ୍ଟନାୟକଙ୍କ ଭଳି ସେ ଯୁଗର ଜଣେ ବିଜ୍ଞ ବ୍ୟକ୍ତିଙ୍କ ସନ୍ତାନ ଥିଲେ । ମାଲୁଦରୁ ୭ମ ଶ୍ରେଣୀରେ ବୃତ୍ତି ପାଇ ସେ ପଢ଼ିଥିଲେ ପୁରୀ ଜିଲ୍ଲାସ୍କୁଲରେ । ମା' ତାଙ୍କର,

Digitized by PPRACHIN, SOA

ଥିଲେ କୁଳଡ଼ ଭଞ୍ଜ ରାଜବଂଶ ସଂଭୂତା । ଏକ ସମ୍ଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ । ପିତା ସ୍ୱତଃ ଜ୍ଞାନୀ ଓ ସମ୍ଭ୍ରାନ୍ତ । ଏଣୁ ସାଂସ୍କୃତିକ ଚେତନା ଯେପରି ତାଙ୍କର ଅସ୍ଥି ମଜ୍ଜାଗତ । ଛାତ୍ର ଜୀବନରେ, ଶିକ୍ଷକତାରେ, ଜୀବନଚର୍ଯ୍ୟାରେ ସେ ଉଚ୍ଚ ସାଂସ୍କୃତିକତା ଓ ରୁଚି ବୋଧର ପ୍ରକୃଷ୍ଟ ପରିଚୟ ଦେଇଛନ୍ତି । ପୁରୀ ଜିଲ୍ଲା ସ୍କୁଲରେ ସେ ପଢ଼ିବା ବେଳେ ବେଦ, ବେଦାନ୍ତ, ଉପନିଷଦ, ଗୀତା ପ୍ରଭୃତି ଅଧ୍ୟୟନ କରି ତାର ନିର୍ଯ୍ୟାସ ହିଁ ଜୀବନରେ ପ୍ରୟୋଗ କରିବାକୁ ଉଦ୍ୟମ କରିଛନ୍ତି । ଜଣେ ଚରିତ୍ରବାନ୍ ମେଧାବୀ ଛାତ୍ର ଭାବରେ ମାଟ୍ରିକ ପାସ କରି ରେଭେନ୍ସାରେ ବି. ଏ. ପଢ଼ିଛନ୍ତି । ପରବର୍ତ୍ତୀ କାଳରେ ପାଟନାର ବି. ଟି ପାସକରି ଶିକ୍ଷକ ଜୀବନ ଯାପନର ପର୍ଯ୍ୟାୟରେ ତାଙ୍କର ପ୍ରଥମ ସ୍କୁଲ ଗୋପୀମୋହନ ଏକାଡେମୀ, ପରେ ପରେ ଖୋର୍ଦ୍ଧା ହାଇସ୍କୁଲ, ଆସ୍କା ହାଇସ୍କୁଲ, ଭଞ୍ଜନଗର ହାଇସ୍କୁଲ, ଖଲିକୋଟ ହାଇସ୍କୁଲ, ଛତ୍ରପୁର ଅନ୍ସ୍ଲୋ ହାଇସ୍କୁଲ ପ୍ରଭୃତିରେ ଗୌରବର ସହ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରି ଶେଷରେ ଆସ୍କା ହାଇସ୍କୁଲରୁ ୧୯୪୩ ମସିହାରେ ଅବସର ନେଇଛନ୍ତି ସମ୍ମାନର ସହ । ପରବର୍ତ୍ତୀ କାଳରେ ୧୯୪୯ରେ ଢେଙ୍କାନାଳ ପ୍ରହରାଜପୁର ହାଇସ୍କୁଲ ଏବଂ ୧୯୪୬ରେ ସୋରଡ଼ା ହାଇସ୍କୁଲରେ ପ୍ରଧାନ ଶିକ୍ଷକଭାବେ କିଛି ବର୍ଷ କାର୍ଯ୍ୟ କରିଛନ୍ତି ଓ ସେ ବିଦ୍ୟାଳୟଗୁଡ଼ିକୁ ପୁଷ୍ଟିଳ କରିଛନ୍ତି ।

ଦୀର୍ଘ ୩୮-୪୦ ବର୍ଷ ଶିକ୍ଷକ ଓ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କଲାବେଳେ ଶ୍ରୀ ପରଶୁରାମ ବର୍ମା ସର୍ବଦା ଜଣେ ଆଦର୍ଶ ଚରିତ୍ରବାନ୍ ଛାତ୍ରପ୍ରିୟ ଏବଂ ଦେଶପ୍ରେମୀ ବ୍ୟକ୍ତି ଭାବରେ ନିଜକୁ ପରିଚୟ କରାଇଛନ୍ତି । ପ୍ରଶାସନ କ୍ଷେତ୍ରରେ ସ୍ଥଳ ବିଶେଷରେ ସେ ବଜ୍ରପରି କଠୋର; ତଥାପି ସେ ନବନୀପରି କୋମଳ ଥିଲେ ଅନ୍ତରରେ ।

ରାଜନୀତି ଓ ସମାଜ ସଂସ୍କାର କ୍ଷେତ୍ରରେ ତାଙ୍କର ଅବଦାନ ଅନବଦ୍ୟ । ଆସ୍କା, ତାରାତାରିଣୀ ଓ କୁଳଡ଼ଠାରେ ପଶୁବଳି ପ୍ରଥା ବନ୍ଦ କରିବାରେ ସେ ନେତୃତ୍ୱ ନେଇ ରକ୍ଷଣଶୀଳ ସମାଜରୁ ଏକ କୁତ୍ସିତ କୁସଂସ୍କାର ଦୂର କରିବାକୁ ଯେପରି ଦୃଢ଼ ପଦକ୍ଷେପ ନେଇଛନ୍ତି, ସେପରି ପାରଳା ମହାରାଜା, ଖଲିକୋଟ ମହାରାଜା, ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ସହ ମିଶି ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶରୁ, ଓଡ଼ିଆଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବାକୁ ସାହସିକ ନେତୃତ୍ୱ ନେଇଛନ୍ତି । କେବଳ ସେତିକି ନୁହେଁ ଅସ୍କାରେ ହରିଜନଙ୍କ ସ୍ୱାର୍ଥରକ୍ଷା ପାଇଁ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନରେ ଯେପରି ନେତୃତ୍ୱ ନେଇଛନ୍ତି ଏହା ଆଜି ଦକ୍ଷିଣାଞ୍ଚଳରେ କିମ୍ବଦନ୍ତୀ ହୋଇ ରହିଯାଇଛି ।

Digitized by PPRACHIN, SOA

ପ୍ରାଚ୍ୟ ଓ ପାଶ୍ଚାତ୍ୟ ବହୁ ଦର୍ଶନଶାସ୍ତ୍ର ଅଧ୍ୟୟନ କରି ତାର ମର୍ମକୁ ଆୟତ୍ତ କରିବାକୁ ଶ୍ରୀଯୁକ୍ତ ବର୍ମା ମହାଶୟ ସାରା ଜୀବନଧରି ଅଧ୍ୟବସାୟ କରିଛନ୍ତି । ରାମକୃଷ୍ଣ ମିଶନର ପ୍ରଖ୍ୟାତ ଯୋଗୀ ବ୍ରହ୍ମାନନ୍ଦଙ୍କୁ ଗୁରୁ ରୂପେ ବରଣ କରି ସେ ସାଧନା ଆରମ୍ଭ କରିଥିଲେ ମଧ୍ୟ ପରବର୍ତ୍ତୀକାଳରେ ସେ ନିଗମାନନ୍ଦଙ୍କ ନିକଟକୁ ଯାଇ ବହୁବାର ଶାସ୍ତ୍ରାଲୋଚନା କରିଛନ୍ତି । କିଛି ବର୍ଷ ଗୌଡ଼ୀୟ ବୈଷ୍ଣବ ପନ୍ଥା ବି ଅନୁସରଣ କରିଛନ୍ତି; ଆଉ ବେଦାନ୍ତର ପଥରେ ବି ଚାଲିଛନ୍ତି । ପୁଣି ଜଟିଆବାବା ମଠକୁ ଯାଇ ବିଜୟ ଗୋସ୍ୱାମୀଙ୍କ ସାଧନାର ଧାରାରେ ବି ଅଗ୍ରସର ହୋଇଛନ୍ତି । ଶେଷରେ ପ୍ରଣବାନନ୍ଦଙ୍କୁ ମଧ୍ୟ ଗ୍ରହଣ କରି ତାଙ୍କର ମତ ଅନୁସରଣ କରି କାର୍ଯ୍ୟ କରିଛନ୍ତି । କିନ୍ତୁ ସର୍ବଦା ପ୍ରଗତିଶୀଳ ବର୍ମା ମହାଶୟ ଭାରତୀୟ ଋଷିମାନଙ୍କ ଭଳି 'ଚରୈବେତି' ବା 'ଆଗକୁ ଚାଲ' ଆଦର୍ଶକୁ ଧରି କେଉଁଠି ଅଟକି ଯାଇ ନାହାନ୍ତି । ସେ ଚିର ଅଭିଯାତ୍ରୀ, ସମସ୍ତ ଜୀବନ ତାଙ୍କର ଏକ ପରୀକ୍ଷାଗାର । ଏଥିରେ ବିଭିନ୍ନ ଦର୍ଶନ ଜ୍ଞାନ ବିଜ୍ଞାନର ପରୀକ୍ଷା କରାଯାଇଛି । କିନ୍ତୁ ସେ ଜୀବନର ଅନ୍ତିମ ଦଶକରେ ଶ୍ରୀମା, ଶ୍ରୀଅରବିନ୍ଦଙ୍କ ଦର୍ଶନରେ ପୂର୍ଣ୍ଣ ରୂପେ ପ୍ରଭାବିତ ହୋଇ ତାକୁ ହିଁ ଜୀବନର ଅନ୍ତିମ ସମ୍ବଳ ଭାବେ ଦୃଢ଼ତାର ସହ ମାନିନେଇଛନ୍ତି ।

ମା'ଙ୍କ ଦର୍ଶନଲାଭ ପାଇଁ ବାର୍ଦ୍ଧକ୍ୟକୁ ଉପେକ୍ଷା କରି ଯୁବ ସୁଲଭ ଉନ୍ମାଦନାରେ ବାରମ୍ବାର ଯାଇଛନ୍ତି ସେ ଶ୍ରୀଅରବିନ୍ଦ ଆଶ୍ରମ ପଣ୍ଡିଚେରୀକୁ । ମା ତାଙ୍କୁ ସ୍ୱତନ୍ତ୍ର ଭାବେ ଗ୍ରହଣ କରିଛନ୍ତି ବୋଲି ତାଙ୍କର ବିଶ୍ୱାସ ହୋଇଛି । କାରଣ ମା ସହାସ୍ୟ ବଦନରେ କିଛିକ୍ଷଣ ବିସ୍ମୟାବିଷ୍ଟ ହୋଇ ତାଙ୍କ ଉପରେ ଦୃଷ୍ଟି ନିକ୍ଷେପ କରିଛନ୍ତି ବୋଲି ତାଙ୍କର ଅନୁଭବ ହୋଇଛି । ପଣ୍ଡିଚେରୀରୁ ଫେରିବା ପରେ ତାଙ୍କର ମା'ଙ୍କ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ଏପରି ନିର୍ବିଚଳ ଓ ବଜ୍ରାଦପି ସୁଦୃଢ଼ ହୋଇଯାଇଛି ଯେ, ତାହା ତାଙ୍କୁ ଜନ୍ମ ଜନ୍ମାନ୍ତର ପର୍ଯ୍ୟନ୍ତ ମା'ଙ୍କର ଜଣେ ଏକାନ୍ତ ସେବକ ଓ ସାଧକ ରୂପେ ବିବର୍ତ୍ତନର ଧାରାରେ ଚାଲିଥିବା ଏକ ବିକାଶଶୀଳ ଆତ୍ମା ରୂପରେ ଅନୁଭବ କରାଇବାରେ ସମର୍ଥ ହୋଇ ପଡ଼ିଛି । ସେ ଲୋକ ଶୋକ ଭୁଲି ମା'ଙ୍କ ସେବାରେ ଲାଗିଯାଇଛନ୍ତି ଜୀବନର ଅନ୍ତିମ ମୁହୂର୍ତ୍ତ ଯାଏ । ୧୯୬୪-୬୫ରେ ଯେଉଁ ବିଶ୍ୱାସର ଗୋଟିଏ ଅଙ୍କୁରୋଦ୍‌ଗମ ହୋଇଥିଲା ଏବଂ ସେଠି ପାଠଚକ୍ର ହିସାବରେ ମା ସହ ଆଲୋଚନାରେ ନିଜର ଶଂକା-ଗୁଳ୍ମଗୁଡ଼ିକର ଉନ୍ମୀଳନ କରିବାରେ କଠୋର ସାଧନା କରିଥିଲେ, ତାହା ପରବର୍ତ୍ତୀ କାଳରେ ଏକ ମହାଦ୍ରୁମରେ ପରିଣତ ହୋଇ ପାଠଚକ୍ର ଆନ୍ଦୋଳନରେ ସକ୍ରିୟ ଧର୍ମୀ ସାଧକ ସାଧିକାଙ୍କୁ ଛାୟାଛତ୍ର ଯୋଗାଇ ଦେଇଥିଲା । ମା'ଙ୍କର ବହୁ ବିଜ୍ଞ ବୟସ୍କ ଭକ୍ତମାନଙ୍କ ମଧ୍ୟରେ ଦ୍ୱିତୀୟ ଲଳିତ ମୋହନ ଘୋଷଙ୍କୁ

Digitized by PPRACHIN, SOA

ଛଡ଼ି ଦେଲେ ଅନ୍ୟ କେହି ତାଙ୍କ ଭଳି ଓଡ଼ିଶାରେ ସେବା ଓ ସାଧନାରେ ଏତେ ଅଗ୍ରଗାମୀ ବୋଲି ମୋର ମନେହୁଏ ନାହିଁ ।

ମା'ଙ୍କ ପାଇଁ ପୁରୀରେ ସେତେବେଳଯାଏଁ ଏକ ସ୍ଥାୟୀ ବାସଗୃହ ହୋଇପାରି ନ ଥାଏ । ଏଥିପାଇଁ ମୋ ସହ ବହୁ ଅଗମ୍ୟ ସ୍ଥାନକୁ ଯାଇଛନ୍ତି, ବାର୍ଷିକ ଉତ୍ସବ, କ୍ୟାମ୍ପ ଓ ସେମିନାର ପାଇଁ । ତାଙ୍କର ଅର୍ଥଦାନ ଓ ଶ୍ରମଦାନ ଦେଖି ଅନ୍ୟମାନେ ବିଶେଷଭାବେ ପ୍ରଭାବିତ ହୋଇଛନ୍ତି । ଶ୍ରୀ ମଧୁସୂଦନ ନନ୍ଦ ଓ ତାଙ୍କର ଧର୍ମପ୍ରାଣା ପତ୍ନୀ ଶକୁନ୍ତଳା ରାଉତ, ଇଞ୍ଜିନିୟର ଧ୍ରୁବ ଦାସ ଓ ତାଙ୍କର ପରିବାର, ଡେପୁଟୀ କଲେକ୍ଟର ପୂର୍ଣ୍ଣ ରାଉତ ଓ ତାଙ୍କ ପତ୍ନୀ, କୃଷ୍ଣ ମୋହନ ପଟ୍ଟନାୟକ, କିରଣ ଅପା ଓ ତାଙ୍କର ପିଲାମାନେ, କୃଷ୍ଣ ମୋହନ ମହାନ୍ତି ଓ ତାଙ୍କ ପରିବାର, ଶ୍ରୀ ଅର୍ଜୁନ ମିଶ୍ର ତାଙ୍କ ପତ୍ନୀ ବସନ୍ତ କୁମାରୀ, ଶୈଳବାଳା, କନକ ମାଉସୀ, ବିହାରୀ ଭାଇ (ଜିଲ୍ଲା ମାଜିଷ୍ଟ୍ରେଟ ବିହାରୀଲାଲ ପଟ୍ଟନାୟକ) ଏବଂ ତାଙ୍କ ପରିବାର ଏହିପରି ପୁରୀର ଶତାଧିକ ପରିବାରର ସେ ଥିଲେ ପରମ ଆତ୍ମୀୟ । ଶ୍ରୀମା-ଶ୍ରୀଅରବିନ୍ଦଙ୍କ କର୍ମଧାରା ସମ୍ପର୍କରେ ତାଙ୍କର ନୀତି ବା ସିଦ୍ଧାନ୍ତକୁ ସମସ୍ତେ ଆନନ୍ଦ ଚିତ୍ତରେ ଗ୍ରହଣ କରି ଯାଉଥିଲେ ।

ଏହିପରି ଏକ ପ୍ରଚଣ୍ଡ ପାଠଚକ୍ର ଆନ୍ଦୋଳନ ସେତେବେଳେ ଦ୍ରୁତଗତିରେ ପୁରୀରେ ଚାଲିଥିଲା ଯାହାକୁ ତ୍ୱରାନ୍ୱିତ କରିବାକୁ ଅଧ୍ୟାପକ ହୃଦାନନ୍ଦ ରାୟଙ୍କ ଭଳି ବିଜ୍ଞ ସାଧକଙ୍କ ପୁରୀରେ ଆବିର୍ଭାବ ହୋଇଥିଲା, ସେତେବେଳେ କାକା ଆଗରୁ କିଛି ସୂଚନା ଦେଇ ମା'ଙ୍କ ରାଜ୍ୟକୁ ଚାଲିଗଲେ ୧୯୭୨ ଜୁନ ୧୮ ତାରିଖ ସକାଳ ୯ଟା ସମୟରେ ।

ଦୁଇଦିନ ପୂର୍ବରୁ ସେ ମତେ ପୁରୀ ଷ୍ଟେସନରେ ବିଦାୟ ଦେବାକୁ ଯାଇଥିଲେ, ଶୁଭେଚ୍ଛା ଜଣାଇ ଥିଲେ, କଲିକତାରେ 'World Union' ଯେଉଁ ସଭା କରୁଛି ତହିଁରେ ମୁଖ୍ୟବକ୍ତା ଓ ଉଦ୍‌ଘାଟକ ରୂପେ ମୁଁ ଯେଉଁ ଭାଷଣ ଦେବି ତାହା ଯେପରି ଅତ୍ୟନ୍ତ ସଫଳ ହୁଏ । ମୁଁ ଫେରିଲି ଯେଉଁ ରାତିରେ, ସଫଳତାର ସମ୍ବାଦ ଦେବାର ଉଗ୍ର ଆକାଂକ୍ଷା ନେଇ, ସେହି ରାତି ଥିଲା କାକାଙ୍କର କାଳରାତ୍ରି ବୋଲି ମୁଁ ଜାଣି ନ ଥିଲି । ବନ୍ଧୁ କୃଷ୍ଣମୋହନ ପଟ୍ଟନାୟକ ଓ ତାଙ୍କ ପରିବାର ସେଦିନ କଲିକତା Conference ଖବର ଶୁଣିବାପାଇଁ ଉତ୍କଣ୍ଠିତ ହୋଇ ରହିଥିଲେ ଓ ମୋ ପାଇଁ ରାତି ଭୋଜନ ଓ ବିଶ୍ରାମର ବ୍ୟବସ୍ଥା କରିଥିଲେ । କ୍ଲାନ୍ତ ହେତୁ ମୁଁ ପୂର୍ବଭଳି ଉଷାକାଳରେ ସ୍ନାନ ଓ ଧ୍ୟାନ କରିପାରିଲି ନାହିଁ ମାତ୍ର ସକାଳ ୭ଟାରେ ସ୍ନାନ ଓ ଧ୍ୟାନ ପରେ କାକାଙ୍କର ଦେହାନ୍ତର ଦାରୁଣ ଦୁଃସମ୍ବାଦ ମତେ ଜଣେଇ ଦିଆଗଲା ।

Digitized by PPRACHIN, SOA

ଜାଜାଙ୍କର ସୁଯୋଗ୍ୟ ସନ୍ତାନ ଟୁକୁବାବୁ (ଶ୍ରୀ ଅମିତ ବିକ୍ରମ ଦେବ) ମତେ ଅପେକ୍ଷା କରି ରହିଥିଲେ । ମୋ ପରାମର୍ଶରେ ଆଶ୍ରମର ସାଧକମାନଙ୍କୁ ଯେପରି ପରିବେଶରେ ରଖାଯିବା କଥା, ସେପରି ଶୋକଗ୍ଳାନ, ମାତୃ ସଙ୍ଗୀତମୟ ପ୍ରଶାନ୍ତ ଶୁଭ୍ର ପରିବେଶରେ ଜାଜାଙ୍କର ଶବାଧାର ସଜେଇ ହୋଇଥାଏ । ଋଷିକଳ୍ପ ପରଶୁରାମ ବର୍ମା ତାଙ୍କର ଶୁଭ୍ରଶ୍ମଶ୍ରୁଯୁକ୍ତ ଜ୍ଞାନଦୀପ୍ତ ସହାସ୍ୟ ବଦନରେ ସମାଧି-ମଗ୍ନ ଯୋଗୀ ଭଳି ଶୋଭା ପାଉଥାଆନ୍ତି । ଶତାଧିକ ପାଠଚକ୍ରର ଭକ୍ତ ଓ ସାଧକଗଣ ତାଙ୍କୁ ପୁଷ୍ପାର୍ପଣ ସହ ପ୍ରଣିପାତ କରି ତାଙ୍କ ଶବାଧାର ସହିତ ଶ୍ମଶାନ ଯାତ୍ରା ପାଇଁ ପ୍ରସ୍ତୁତ ହେଉଥାନ୍ତି । ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ରବୀନ୍ଦ୍ର କୁମାର ମହାନ୍ତିଙ୍କ ଭଳି ସହରର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କ ଶବାଧାର ବହନ କରି ଶ୍ମଶାନ ଯାତ୍ରା କରିବାକୁ ଜିଦ୍ କରୁଥାନ୍ତି । ଜଣେ ମହାପୁରୁଷଙ୍କର ଯେପରି ସହର ପରିକ୍ରମା ଆରମ୍ଭ ହୋଇଥାଏ, ଧୂପ, ଦୀପ, ପୁଷ୍ପମାଳ୍ୟରେ ସୁଶୋଭିତ ଓ ସମ୍ବର୍ଦ୍ଧିତ......ପରଶୁରାମ ବର୍ମାଙ୍କର ଅପୂର୍ବ ଶବ ଶୋଭାଯାତ୍ରା ଜନାରଣ୍ୟ ଭିତରେ ଶାନ୍ତ ଓ ନୀରବତାର ପରିବେଶରେ ଯେପରି ଚାଲିଥାଏ, ତାହା ଏପରି ଅଭିନବ ଓ ଅପୂର୍ବ ଯେ ଆଜି ମଧ୍ୟ ତାହା ସ୍ମୃତିରେ ଜୀବନ୍ତ ଓ ଜାଗ୍ରତ ହୋଇଉଠେ ।

ଚଉରାନବେ ବର୍ଷ ବୟସରେ ବରେଣ୍ୟ ମାତୃସାଧକ ପରଶୁରାମ ବର୍ମା, ମୋର ପ୍ରିୟ ଜାଜା ତାଙ୍କର ମରଲୀଳା ସମାପ୍ତ କରି ମା'ଙ୍କର ଅମର ଧାମକୁ ମା'ଙ୍କ ନାମ ଜପ କରି କରି ଚାଲିଗଲେ, ତାଙ୍କର ଅସଂଖ୍ୟ ମାତୃ ପରିବାର ଆଗରେ ମାତୃ ସାଧକର ଅଟଳ ନିଷ୍ଠା ଓ ତପସ୍ୟାର ଅନିର୍ବାଣ ଅଗ୍ନିଶିଖା ରୂପେ ଆବିର୍ଭୂତ ହୋଇ, ଅସଂଖ୍ୟ ବ୍ୟକ୍ତିଙ୍କୁ ମାତୃ ସେବାର ଦିବ୍ୟ ପ୍ରେରଣାର ମନ୍ତ୍ରରେ ଦୀକ୍ଷିତ କରି । ଏଥିରେ ଆମେ ସମସ୍ତେ ଗର୍ବିତ ଓ ଗୌରବାନ୍ୱିତ । ମାତ୍ର ବ୍ୟକ୍ତିଗତ ଭାବେ ମୁଁ ଅନୁଭବ କଲି ମୁଁ ଯାହା ହରାଇଛି, ତାର ଭରଣା ଜନ୍ମ ଜନ୍ମାନ୍ତରରେ ହୋଇ ପାରିବ ନାହିଁ । କିଏ ଆଉ ଏତେ ଆଦର କରି ମତେ ଡକାଇ "Synthesis of Yoga"ର ବ୍ୟାଖ୍ୟା ଶୁଣିବାକୁ ଘଣ୍ଟା ଘଣ୍ଟା ବ୍ୟୟ କରି ମୋ ପାଖରେ ବସି ରହିବ ଓ ଗୁରୁଜନ ଭୂମିକା କରି ବାସ୍ତବରେ ଶିକ୍ଷକ ଭଳି ଅନ୍ତରରେ ଥିବା ଗଣ୍ଠିସବୁ ସହଜରେ ଉନ୍ମୋଚନ କରି ମୋର ଜ୍ଞାନର ପରିସର ବଢ଼ାଇ ଦେବ, କିଏ ମୋର ବ୍ୟକ୍ତିଗତ ସମସ୍ୟାର ସହଜ ସମାଧାନ ପାଇଁ ଆଗେଇ ଆସିବ ଓ ପ୍ରତି ମୁହୂର୍ତ୍ତରେ ସଖା ଓ ବନ୍ଧୁର ପ୍ରୀତି ଦେଇ ମତେ ମା'ଙ୍କ ସେବାକାର୍ଯ୍ୟରେ ଉତ୍ସାହିତ କରିଚାଲିବ ? ଜୀବନର ଅନ୍ତିମ ମୁହୂର୍ତ୍ତରେ ସେ ଯେ ମୋର କଲିକତା ପ୍ରତ୍ୟାଗମନ କଥା ଟୁକୁ ବାବୁଙ୍କୁ ପଚାରୁଥିଲେ ଓ ମତେ ତାଙ୍କ ପାଖକୁ ଡକାଇ ପଠାଇ ଥିଲେ, ଏହା ଶୁଣିବା ପରେ ତାଙ୍କ ସହ ଅନ୍ତିମ

Digitized by PPRACHIN, SOA

ମିଳନରୁ ବଞ୍ଚିତ ହୋଇ ମୁଁ କି ଯନ୍ତ୍ରଣା ବହୁଦିନ ଯାଏ ଅନୁଭବ କରିଛୁ ତାହା ମୁଁ ହିଁ ଜାଣେ । ଝଙ୍ଗଙ୍କର ଶରୀର ଅବସାନ ହୋଇଛୁ । ମାତ୍ର ସେ ସର୍ବଦା ଆମ ସବୁ ମାତୃକାର୍ଯ୍ୟରେ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି ଓ ରହିବେ ଏ ବିଶ୍ୱାସ ମୋର ଅତ୍ୟନ୍ତ ଦୃଢ଼ ।

—ବନ୍ଦେ ମାତରମ୍—

---

Digitized by PPRACHIN, SOA

# MIDNIGHT GLEANINGS FROM HERE AND THERE

## BULLETIN—No. 20

## JANMASTAMI
## HOW SLAY WITHOUT SIN ?

*Yasyanaahamkritobhabah*
*budhirjasya na lipyate.*
*Hatwapi sa imanlokan*
*na hanti na nibaddhyate.*

Geeta

[He that has gone beyond his body and mind realising his true Self within, being and becoming one with God, even if he slays all these men, he does not commit sin, nor is he bound by the fruits of his action.]

Krsna was acting as charioteer for Arjuna, when the greatest war of the world was raging. There Arjuna felt dismayed and horrified. The thought of slaughter made this hero tremble and quiver. Krsna then spoke to Arjuna and awakened in him God-consciousness and brought him out of anxiety and weakness. Krsna said to him, "Arjuna, why should you shake and tremble ? See what your present duty is. If your present duty of the world is to kill all these men, then kill them. I am the God of gods, the Light of lights and am I not destroying

Digitized by PPRACHIN, SOA

every second, millions upon millions of birds and animals, am I not hurling them into nothingness ? Am I not destroying life and living beings in Fire, Flood, Famine and Quakes ?" Here am I Nature, God, Providence ever doing these things ? Yet I am always immaculate and untainted. God kills, yet is God to blame ? No, God is still pure.

Now Krshna tells Arjuna, "If you realise the Truth, if you become one with God, if you realise your true Self within, then, your body becomes simply an instrument of Divinity. In the name of justice, duty, truth, right, if your body kills and destroys millions upon millions you are pure, you are in tact, you are untainted."

*Yasya preranaya Parthah*
*prabrutto yuddha karmani.*
*Tyaktwa sakalasandeham*
*tam bande Parameswaram.*

[Salutations to Parameswar—the Iswar of all Iswars inspired by Whom Arjuna agreed to engage in the bloody battle of Kurukshetra, freed from all doubts and delusions once for all.]

With Greetings,

Yours in Krsna
Parasuram Varma
Janari Gachha, Puri.

Digitized by PPRACHIN, SOA

ପରିଶିଷ୍ଟ-୨

# MIDNIGHT GLEANINGS FROM HERE AND THERE

## BULLETIN—No. 24

1. Thy Kingdom come. Thy will be done on earth as it is in Heaven.

2. The last enemy to be conquered is Death, and then, the Kingdom of God shall be established on earth as it is now in Heaven.

The soul progresses by gathering experience in the ordinary life but it is a very long, slow and devious process from birth to birth. Yoga hastens the soul's development. The progress that can be made in many lives is made in a few years by the help of Yoga.

Just as modern science has advanced greatly over past researches and brought new truths and powers, the Yoga of Sri Aurobindo and the Mother has also made a momentous advancement over all past Yogas. It is called the "Integral Yoga" or the "Supramental Yoga."

Where the past Yogas end, this new Integral Yoga starts. The Yogas of the past were only of ascent to the Spirit. Sri Aurobindo's Yoga is both of ascent and descent. One can realise the Divine in consciousness by the old Yogas but cannot establish

Digitized by PPRACHIN, SOA

the Divine on earth in a collective no less than in an individual physical life. In the old Yogas the world was considered either an illusion or a transitional phase: it had no prospect of having all the terms of its existence fulfilled. Sri Aurobindo says that the world is a real creation of the Divine and life in it can be completely divinised down to the very cells of the body. A Kingdom of God on earth can be brought about in the most literal sense by a total transformation of collective men.

To put it in Sri Aurobino's words: "Here and not elsewhere the highest Godhead has to be found, the soul's divine nature developed out of the imperfect physical human nature and through unity with God and man and universe the whole large truth of being discovered and lived and made visibly wonderful. That completes the long cycle of our becoming and admits us to a supreme result; that is the opportunity given to the soul by the human birth and until that is accomplished, it cannot cease."

---

In the holy name of the Divine Mother and the Divine Master—

**P. Varma**

Digitized by PPRACHIN, SOA

# ପରମଗୁରୁ ଶ୍ରୀ ଶ୍ରୀ ନିଗମାନନ୍ଦଙ୍କର ସହିତ ପରଶୁରାମଙ୍କର ବାର୍ତ୍ତାଳାପର ବିବରଣୀ

**୨୩ । ୩ । ୩୪ ତାରିଖ ମଙ୍ଗଳବାର**

ବନମାଳୀ ଭାଇ, ପରଶୁରାମ ବର୍ମା ପ୍ରଭୃତି କେତେ ଜଣ ଶ୍ରୀଶ୍ରୀଠାକୁରଙ୍କ ନିକଟକୁ ଯାଇଥିଲେ । ଆଜି ପରଶୁରାମ ବର୍ମା ଅନେକ ପ୍ରଶ୍ନ ପଚାରିଥିଲେ ।

ପରଶୁରାମ ବର୍ମା—ସାଧନର ପଥ କେତୋଟି ଓ ମୋର କେଉଁ ପଥ ଶ୍ରେୟ ?

ଶ୍ରୀଶ୍ରୀଠାକୁର—ସାଧନର କେବଳ ମାତ୍ର ଦୁଇଟି ପଥ—ଯୋଗପଥ ଓ ଭକ୍ତିପଥ । ଜ୍ଞାନପଥ ଅଛି, କିନ୍ତୁ ସେ ପଥର କୌଣସି ସାଧନ ନାହିଁ । ତାହା ବିଚାରଲବ୍ଧ । ଜ୍ଞାନସାଧନା ଯୋଗଶାସ୍ତ୍ରସମ୍ମତ । ଅଧିକାଂଶ ସ୍ଥଳରେ ଜ୍ଞାନର ସାଧନପଥ ଯୋଗ ଓ ଭକ୍ତିର ସାଧନପଥ ଚିହ୍ନେ । ଅଧିକ ବୟସରେ ଯୋଗ ସାଧନ ହୁଏ ନାହିଁ ; କିନ୍ତୁ ଭକ୍ତିପଥରେ ବୟସ ପ୍ରଭୃତି ବିଚାରର ଆବଶ୍ୟକତା ନାହିଁ । ଭକ୍ତିପଥର ପ୍ରଧାନ ଅବଲମ୍ବନ ବିଶ୍ୱାସ । ଭକ୍ତିର ସାଧନ ଅଧିକାରୀ ଭେଦରେ ନାନା ପ୍ରକାର ହେଲେ ମଧ୍ୟ କେହି ଶ୍ରେଷ୍ଠ ବା କେହି ବଡ଼ ନୁହନ୍ତି । ସମସ୍ତେ ସମାନ ! ଭକ୍ତିପଥରେ ଭଗବାନଙ୍କୁ ଦର୍ଶନ କରିଯାଇପାରେ । ବିଶ୍ୱାସ ନ ଥିଲେ ଭକ୍ତିପଥରେ ଗତି କରିପାରିବ ନାହିଁ । ଯାହାଙ୍କର ଭକ୍ତି ନାହିଁ, ସେ ଯୋଗ ବା ଜ୍ଞାନପଥରେ ଗତି କରିପାରନ୍ତି ; କିନ୍ତୁ ଯୋଗ ଓ ଜ୍ଞାନ ଅପେକ୍ଷାକୃତ କୃଚ୍ଛ୍ରସାଧ୍ୟ । ଭକ୍ତି ଅପେକ୍ଷାକୃତ କୋମଳ ; ତେଣୁ ଅଳ୍ପାୟାସସାଧ୍ୟ । ତେବେ ପ୍ରଧାନ କଥା ହେଉଛି, ଭଗବାନଙ୍କ କୃପା କିମ୍ବା ମହାପୁରୁଷଙ୍କ କୃପା ନ ହେଲେ କିଛିହିଁ ହୁଏ ନାହିଁ । ଭକ୍ତିପଥରେ ଯେଉଁସବୁ ସାଧନ ଅଛି, ତାହା ତତ୍ତ୍ୱଶୁଦ୍ଧି ନିମିତ୍ତ । ତୁମ ପକ୍ଷରେ ଭକ୍ତିପଥ ଶ୍ରେୟ ।

## ଭକ୍ତିପଥର ସାଧନା

ପରଶୁରାମ ବର୍ମା—ଭକ୍ତିପଥର ସାଧନା କିପରି ଆରମ୍ଭ କରିବାକୁ ହୁଏ ?

ଶ୍ରୀଶ୍ରୀଠାକୁର—ଭକ୍ତିପଥରେ ନାନା ପ୍ରକାର ସାଧନା ପ୍ରଚଳିତ ଅଛି । ତନ୍ମଧ୍ୟରେ ସାଧୁସଙ୍ଗ ପ୍ରଧାନ । ସଦ୍‌ଗ୍ରନ୍ଥାଦି ପାଠ ମଧ୍ୟ ସାଧୁସଙ୍ଗର ଅନ୍ତର୍ଗତ ।

Digitized by PPRACHIN, SOA

ପ୍ରଥମେ କୌଣସି ଗୋଟିଏ ଭାବ ଧରି ଭକ୍ତିପଥର ସାଧନା ଆରମ୍ଭ କରିବାକୁ ହୁଏ । ସାଧାରଣତଃ ଭକ୍ତ ଭଗବାନଙ୍କୁ ପ୍ରଭୁ ଭାବରେ ଦେଖନ୍ତି । ସେ ବିରାଟ, ସେ ମହାନ୍, ସେ ସକଳର କର୍ତ୍ତା, ସେ ସର୍ବଶକ୍ତିମାନ୍ ଏହି ଭାବକୁ ପ୍ରଭୁଭାବ ବୁଝାଯାଏ । କିନ୍ତୁ ଭକ୍ତ କ୍ରମେ ଦାସ୍ୟ ଓ ସଖ୍ୟ ଭାବରେ ଭଗବାନଙ୍କୁ ମୋର ପ୍ରଭୁ ଓ ମୋର ସଖା ବୋଲି ସମ୍ବୋଧନ କରିପାରନ୍ତି । ଶ୍ରୀମାନ୍ ମହାପ୍ରଭୁ ଗୌରାଙ୍ଗଦେବ ଏହି ପଥର ସାଧନକୁ ନବଧା ବିଭକ୍ତ କରିଛନ୍ତି । ସର୍ବଶେଷରେ ଆତ୍ମସମର୍ପଣ ଭାବ ।

ତୁମେ ସଦ୍‌ଗ୍ରନ୍ଥ ପାଠ କରିପାର । ତଦ୍ୱାରା ଚିତ୍ତରେ ଭକ୍ତିର ଆକାଙ୍କ୍ଷା ଜାଗ୍ରତ ହେବ । ଯେତେ ଭକ୍ତିଗ୍ରନ୍ଥ ଅଛି ସେସବୁ ପାଠ କର । ସେଥିମଧ୍ୟରୁ ସ୍ୱାମୀ ବିବେକାନନ୍ଦଙ୍କ କୃତ 'ଭକ୍ତିଯୋଗ' ଜ୍ଞାନମିଶ୍ରିତ; ଅଶ୍ୱିନୀ ବାବୁଙ୍କ 'ଭକ୍ତିଯୋଗ' ଭାବମିଶ୍ରିତ ଓ ଆମ ମଠର 'ପ୍ରେମିକଗୁରୁ' ପ୍ରେମଭକ୍ତିମିଶ୍ରିତ । ସର୍ବଶେଷରେ 'ଭାଗବତ' ସର୍ବଶ୍ରେଷ୍ଠ ଭକ୍ତିଗ୍ରନ୍ଥ । ଏସବୁ ଗ୍ରନ୍ଥ ପାଠ କରିବାଦ୍ୱାରା ଅନେକ ପ୍ରଶ୍ନର ମୀମାଂସା ହେବ । ଏହା ପାଠ କଲେ ସ୍ୱାଧ୍ୟାୟର ଫଳ ମଧ୍ୟ ଲାଭ କରିପାରିବ ।

ଭକ୍ତିପଥରେ ଜଣେ ଗୁରୁ ଆବଶ୍ୟକ । ଭକ୍ତିପଥରେ କାହିଁକି, ସାମାନ୍ୟ ଲେଖାପଢ଼ାରେ ମଧ୍ୟ ଜଣେ ଗୁରୁ ଆବଶ୍ୟକ । ସନ୍ନ୍ୟାସୀମାନଙ୍କୁ ମଧ୍ୟ ଗୁରୁ କରିବାକୁ ହୁଏ । ଯେଉଁମାନେ ଭକ୍ତିପଥରେ ବିଶେଷ ଅଗ୍ରସର, ସେମାନଙ୍କ ମଧ୍ୟରୁ ଯାହାଙ୍କ ପ୍ରତି ବିଶ୍ୱାସ ଓ ଭକ୍ତି ହେବ, ସେପରି ଲୋକଙ୍କୁ ଗୁରୁ କରି ତାଙ୍କର ଆଶ୍ରୟ ନେବାକୁ ହେବ । ଭଗବାନଙ୍କର ଅନନ୍ତ ନାମ ଓ ଅନନ୍ତ ରୂପ ଅଛି । ତନ୍ମଧ୍ୟରୁ କୌଣସି ଗୋଟିଏ ନାମରେ ନିଷ୍ଠା ଥିବା ଆବଶ୍ୟକ । ଗୁରୁ ଏହି ନାମରୂପ ନିର୍ଦ୍ଦେଶ କରିଦିଅନ୍ତି । ଶିଷ୍ୟ କେବଳ ବିଶ୍ୱାସ ଧରି ଗୁରୁଦେବଙ୍କ ଉପରେ ନିର୍ଭର କରିବା କର୍ତ୍ତବ୍ୟ । ଗୁରୁ ଚିତ୍ତଶୁଦ୍ଧି କରିବା ପାଇଁ କ୍ରିୟା ଦେଇ ପରେ ଶିଷ୍ୟକୁ ଆପଣାର କରିନିଅନ୍ତି । ଗୀତା ହେଉଛି ଉପନିଷଦର ସାରାଂଶ । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନାନା ପ୍ରକାର ଉପଦେଶ ଦେଇ ଶେଷରେ କହିଲେ, "ଯଦି କିଛି ନ ପାରୁଛ ତେବେ 'ମାମେକଂ ଶରଣଂ ବ୍ରଜ' ମୋର ଶରଣ ନିଅ । ମୋତେ ପ୍ରଣାମ କର । ଅର୍ଜ୍ଜୁନ ଶେଷରେ ଏହି ଆତ୍ମସମର୍ପଣ ରୂପ ଗୁରୁନିର୍ଭରତାକୁ ହିଁ ଅବଲମ୍ବନ କଲେ । ଏହି ପଥରେ ଗୁରୁ-ଶିଷ୍ୟଙ୍କର ଘନିଷ୍ଠ ସମ୍ବନ୍ଧ ସ୍ଥାପିତ ହୁଏ । ଶିଷ୍ୟ ଗୁରୁଙ୍କୁ ଭଗବାନ ବୋଲି ଦେଖନ୍ତି । ଗୁରୁଙ୍କ ସେବା କରି ସେ ଭଗବତ୍ ସେବାର ଅଧିକାର ଅର୍ଜନ କରନ୍ତି ।

ଯେ ସଦ୍‌ଗୁରୁ, ସେ ତାଙ୍କ ଭକ୍ତମାନଙ୍କର ଭଗବାନ । କିନ୍ତୁ ଜଗଦ୍‌ଗୁରୁ, ଯଥା: ଚୈତନ୍ୟଦେବ, ଶ୍ରୀକୃଷ୍ଣ ପ୍ରଭୃତି ସର୍ବସାଧାରଣଙ୍କୁ କୃପା ବିତରଣ କରିପାରନ୍ତି । ସଦ୍‌ଗୁରୁ କେବଳ ତାଙ୍କର ଆଶ୍ରିତ ଶିଷ୍ୟ-ଭକ୍ତମାନଙ୍କୁ

Digitized by PPRACHIN, SOA

କୃପା ବିତରଣ କରନ୍ତି । ଗୁରୁ ଓ ଶିଷ୍ୟଙ୍କ ମଧ୍ୟରେ ଯେଉଁ ଆଦାନ-ପ୍ରଦାନ ବା ଶକ୍ତିସଞ୍ଚାର-କ୍ରିୟା ହୁଏ, ତାହା ଧୀରେ ଧୀରେ ହୁଏ ।

ପରଶୁରାମ ବର୍ମା—ଠାକୁର ! ଗୁରୁ ସ୍ପର୍ଶଦ୍ୱାରା, ଇଚ୍ଛାଦ୍ୱାରା, ଦର୍ଶନଦ୍ୱାରା କଅଣ ଶକ୍ତିସଞ୍ଚାର କରିପାରନ୍ତି ?

ଶ୍ରୀଶ୍ରୀଠାକୁର—ହଁ, ସଦ୍‌ଗୁରୁ ତାହା କରିପାରନ୍ତି । ଏହି ଶକ୍ତି ସଞ୍ଚାର କରିବା ହିଁ ତ ତାଙ୍କର ବିଶେଷତ୍ୱ । ସେ ଉପଯୁକ୍ତ କି ଅନୁପଯୁକ୍ତ ବିଗ୍ଭର ନ କରି ସମଭାବରେ କୃପା ବିତରଣ କରନ୍ତି । ତେବେ ଏପରି ଶକ୍ତିସଞ୍ଚାର କ୍ରିୟା ଅନୁଭବ କରିବାକୁ ହେଲେ ଖୁବ୍ ଶକ୍ତିଶାଳୀ ଗୁରୁଙ୍କର ଆଶ୍ରୟ ନେବାକୁ ହୁଏ ।

## ଗୁରୁ ଚ୍ୟରି ପ୍ରକାର

ପରଶୁରାମ ବର୍ମା—ଠାକୁର ! ଗୁରୁଙ୍କ ଭିତରେ ପୁଣି ସ୍ଥାନ ବଡ଼ ଅଛନ୍ତି ନା କଅଣ ?

ଶ୍ରୀଶ୍ରୀଠାକୁର—ହଁ, ଅଛନ୍ତି । ଗୁରୁ ଚ୍ୟରି ପ୍ରକାର । ଆଦର୍ଶଗୁରୁ, ଆଗ୍ଭର୍ଯ୍ୟଗୁରୁ, ସଦ୍‌ଗୁରୁ ଓ ଜଗଦ୍‌ଗୁରୁ । ଯାହାଙ୍କୁ ଆଦର୍ଶ କରି ଚଳିବାକୁ ଇଚ୍ଛା କରିବ, ସେ ହେଉଛନ୍ତି ଆଦର୍ଶଗୁରୁ । ଯାହାଙ୍କଠାରୁ ପ୍ରାଥମିକ ଶିକ୍ଷା ଆରମ୍ଭ କରିବ, ସେ ଆଗ୍ଭର୍ଯ୍ୟଗୁରୁ । ଯେଉଁ ଗୁରୁ ନିଜ ଶକ୍ତି ଶିଷ୍ୟଠାରେ ସଞ୍ଚାରିତ କରିଦେଇପାରନ୍ତି, ସେ ସଦ୍‌ଗୁରୁ । ସଦ୍‌ଗୁରୁ ମଧ୍ୟ ଆଗ୍ଭର୍ଯ୍ୟଗୁରୁ ହୋଇପାରନ୍ତି । ଯେପରି ଜଣେ ଏମ୍. ଏ. ପାଶ କରିଥିବା ଉଚ୍ଚଶିକ୍ଷିତ ବ୍ୟକ୍ତି ଶ୍ରେଷ୍ଠ ଶ୍ରେଷ୍ଠ ବାଳକମାନଙ୍କୁ ଶିକ୍ଷା ଦେଇପାରନ୍ତି ଏବଂ ବୟସ୍କମାନଙ୍କୁ ମଧ୍ୟ ଶିକ୍ଷା ଦେଇପାରନ୍ତି । ସେହିପରି ସଦ୍‌ଗୁରୁ ଆଗ୍ଭର୍ଯ୍ୟଗୁରୁ ହୋଇପାରନ୍ତି । ପ୍ରଥମରେ ଚିତ୍ତଶୁଦ୍ଧିର ସାଧନ ଦେଇ ସେ ଆଗ୍ଭର୍ଯ୍ୟଗୁରୁ ହୁଅନ୍ତି, ପରେ ଶକ୍ତି ସଞ୍ଚାର କରି ସଦ୍‌ଗୁରୁଙ୍କ କାର୍ଯ୍ୟ କରନ୍ତି ।

ସଦ୍‌ଗୁରୁ ପ୍ରଥମରୁ ସାଧକଙ୍କୁ ଶକ୍ତିସାଧନାର ଉପଯୋଗୀ କରିନେଇ ପରେ କୃପା କରିଥାଆନ୍ତି । ସେତେବେଳେ ଶିଷ୍ୟର ଶକ୍ତି ଧାରଣ କରିବାର କ୍ଷମତା ଜାତ ହୁଏ । ଅନ୍ୟଥା ଅସମୟରେ କୃପା କଲେ ତାହା ଫଳପ୍ରସୂ ହୁଏ ନାହିଁ । କିନ୍ତୁ ମୋର ଇଚ୍ଛା ତୁମେମାନେ ଶୀଘ୍ର ଶୀଘ୍ର ଉନ୍ନତି ଲାଭ କର । ତାହା ହେଲେ ତୁମର ଓ ଦେଶର ଉପକାର ହେବ । ମୋର ବଙ୍ଗଦେଶର ଶିଷ୍ୟ-ଭକ୍ତମାନେ ଯେପରି ଶୀଘ୍ର ଶୀଘ୍ର ଉନ୍ନତି ଲାଭ କରିଛନ୍ତି, ତୁମେମାନେ ସେହିପରି ହୁଅ । ତୁମମାନଙ୍କର ଉନ୍ନତି ସଙ୍ଗରେ ମୋ ସ୍ୱାର୍ଥ ମଧ୍ୟ ଜଡ଼ିତ ଅଛି । କାରଣ ତୁମେମାନେ ଠାକୁରଙ୍କ କୃପା ପାଇ ଉନ୍ନତି ଲାଭ କରିଛ ବୋଲି

Digitized by PPRACHIN, SOA

ସାଧାରଣରେ ପ୍ରକାଶ କରି ହତାଶ ପ୍ରାଣରେ ଆଶାର ଆଲୋକ ଜଳାଇ ଦେଇ-ପାରିବ । ଭକ୍ତ ସମ୍ମିଳନୀରେ ଭଗବ ବାନମସ୍ୟଦ୍ୱାରା କୃପା ଉପଲବ୍‌ଧିର ବିବରଣ ଭକ୍ତମାନେ ପ୍ରକାଶ କରି ହତାଶ ପ୍ରାଣରେ ଆଶାର ଆଲୋକ ସଞ୍ଚାର କରାଇ ଦିଅନ୍ତି । ଭକ୍ତମାନେ ନିଜ ନିଜର ଉତ୍‌ଥାନ-ପତନର ଇତିହାସ ବ୍ୟକ୍ତ କରି ସେ ସମୟରେ କୃପା ଉପଲବ୍‌ଧିର ବିଷୟ ପ୍ରକାଶ କରିବାଦ୍ୱାରା ଅନେକ ଉପକାର ସାଧିତ ହୋଇଥାଏ ।

**ବିରୁଦ୍ଧବାଦୀମାନେ ବଡ଼ ଭକ୍ତ**

ପରଶୁରାମ ବର୍ମା—ସଂସାର ମଧ୍ୟରେ ରହି କଅଣ ଭକ୍ତିର ସାଧନା ଚାଲିପାରେ ?

ଶ୍ରୀଶ୍ରୀଠାକୁର—ସାଂସାରିକ କାର୍ଯ୍ୟ ଭିତରେ ଥାଇ ମଧ୍ୟ ଭକ୍ତିସାଧନା ଚାଲିପାରେ । କାରଣ ଭକ୍ତିପଥରେ ଟିକିଏ ପବିତ୍ରତା ବ୍ୟତୀତ ବିଶେଷ କିଛି କଡ଼ା ନିୟମ ନାହିଁ । ପ୍ରତ୍ୟେକ ପଥରେ କିଛି ନା କିଛି ବିଶେଷ ନିୟମ ଅଛି । ତେଣୁ କଥିତ ଅଛି—

"ଗୃହୀ ହୋ କର୍ କହେ ଜ୍ଞାନ୍,
ବୈରାଗୀ ହୋ କର୍ ଲଗାଏ ଧ୍ୟାନ୍,
ଯୋଗୀ ହୋ କର୍ ଠୋକେ ଭଗ୍,
ଉନୋ ଆଦ୍‌ମୀ ମହା ଠଗ୍ ।"

ଅର୍ଥାତ୍ ଗୃହୀମାନେ ସର୍ବଦା ଦ୍ୱୈତବାଦ ନେଇ ରହନ୍ତି । ଜ୍ଞାନ ଅଦ୍ୱୈତବାଦ-ମୂଳକ; ତେଣୁ ଗୃହସ୍ଥମାନଙ୍କର ଜ୍ଞାନ ବା ଅଦ୍ୱୈତବାଦର ଚର୍ଚ୍ଚା କରିବା ଉଚିତ ନୁହେଁ । ବୈରାଗୀମାନେ ଯଦି ଧ୍ୟାନରେ ବସିବେ, ସେମାନଙ୍କ ମନରେ ସମସ୍ତ ଭୋଗ୍ୟବସ୍ତୁର ଚିନ୍ତା ଆସି ଉଦିତ ହେବ; ତେଣୁ ଏପରି ଧ୍ୟାନରେ କିଛି ଫଳଲାଭ ହେବ ନାହିଁ । ଯୋଗୀମାନଙ୍କର ଜ୍ଞାନ, ଭକ୍ତି, ବିଶ୍ୱାସ ନ ଥିଲେ ମଧ୍ୟ କିଛି କ୍ଷତି ନାହିଁ; କିନ୍ତୁ ସଂଯମ ସେମାନଙ୍କର ପ୍ରଧାନ ଅବଲମ୍ବନ । ବ୍ରହ୍ମଚର୍ଯ୍ୟହୀନ ହେଲେ ଶକ୍ତିଲାଭ ହୋଇପାରେ ନାହିଁ । ସେମାନେ ଯଦି ଅସଂଯତ ହୁଅନ୍ତି, ତେବେ ସେମାନଙ୍କୁ ମହାଠକ ବୋଲି କୁହାଯିବ । ଭକ୍ତିପଥରେ ବିଶେଷ କିଛି କଡ଼ା ନିୟମ ନାହିଁ । କେବଳ ଆତ୍ମସମର୍ପଣ ଓ ଦୁଃଖ ପାଇବା ଏହି ପଥର ସହାୟକ । ମୋର ଗୃହୀ ଭକ୍ତମାନଙ୍କ ମଧ୍ୟରୁ ଯେଉଁମାନେ ଉନ୍ନତ ହୋଇପାରିଛନ୍ତି, ସେମାନେ କେବଳ ମୋତେ ଦୁଃଖ ପାଇ ଉନ୍ନତ ହୋଇଛନ୍ତି । ମୋ'ଠାରେ ଆତ୍ମସମର୍ପଣ କରିବା ହିଁ ସେମାନଙ୍କର ଉନ୍ନତିର ପ୍ରଧାନ କାରଣ ।

ଗିରିଶ ଘୋଷ ଏହି ଆତ୍ମସମର୍ପଣ ବଳରେ ପ୍ରଧାନ ବୈରାଗୀ ହୋଇ ମଧ୍ୟ ରାମକୃଷ୍ଣଦେବଙ୍କର ଶ୍ରେଷ୍ଠ ଭକ୍ତ ହୋଇପାରିଥିଲେ । ପ୍ରଥମରୁ ଗିରିଶ ଘୋଷ

Digitized by PPRACHIN, SOA

ରାମକୃଷ୍ଣଙ୍କର ବିରୁଦ୍ଧବାଦୀ ଥିଲେ ଓ ଜଣେ ପ୍ରଧାନ ନାସ୍ତିକ ଥିଲେ । କିନ୍ତୁ ଗୁରୁଦେବଙ୍କଠାରେ ଆତ୍ମସମର୍ପଣ କରି, ତାଙ୍କ କୃପା ପାଇ ସେ ଏତେ ଉନ୍ନତ ହୋଇଉଠିଲେ ଯେ, ବର୍ତ୍ତମାନ ସେ ବଙ୍ଗଳାର ଆଦର୍ଶ ଗୁରୁ ଓ ଶ୍ରେଷ୍ଠ ଭକ୍ତ । ଅନେକ କ୍ଷେତ୍ରରେ ଆସ୍ତିକମାନଙ୍କ ଅପେକ୍ଷା ନାସ୍ତିକମାନଙ୍କଦ୍ୱାରା ଅଧିକ କାର୍ଯ୍ୟ ହୋଇଥାଏ । ନାସ୍ତିକମାନେ ସର୍ବଦା ଅନୁସନ୍ଧାନରେ ବ୍ୟସ୍ତ ଥାଆନ୍ତି । ଟିକିଏ କୃପା ପାଇଲେ ଶୀଘ୍ର ଶୀଘ୍ର ଉନ୍ନତ ହୋଇଯାଆନ୍ତି । ଅନେକ ବଡ଼ ବଡ଼ ଭକ୍ତ ପ୍ରଥମେ ନାସ୍ତିକ ଥିଲେ । ମୁଁ ମଧ୍ୟ ଜଣେ ନାସ୍ତିକ ଥିଲି । ପ୍ରଥମେ ମୋର ଯେଉଁମାନେ ପ୍ରଧାନ ବିରୁଦ୍ଧବାଦୀ ଥିଲେ, ସେମାନେ ବର୍ତ୍ତମାନ ମୋର ପ୍ରଧାନ ଭକ୍ତ ମଧ୍ୟରେ ସ୍ଥାନ ପାଇଛନ୍ତି ।

ପରଶୁରାମ ବର୍ମା—ଠାକୁର ! ତାହାହେଲେ ଆଜିଠାରୁ ଆପଣଙ୍କ ବିରୁଦ୍ଧବାଦୀ ହେଲେ ତ ଭଲ ହୁଅନ୍ତା ?

ଶ୍ରୀଶ୍ରୀଠାକୁର—ହଁ, ବିରୁଦ୍ଧବାଦୀ ହେବାଟା ଏତେ ସହଜ ନୁହେଁ । ଏହା ଖୁବ୍ ଶକ୍ତ କାର୍ଯ୍ୟ । ସାଧାରଣ ଲୋକେ ତାହା ପାରିବେ ନାହିଁ । କାରଣ କେହି କହିପାରିବେ କି ମୁଁ ଠାକୁରଙ୍କ ନିର୍ଦ୍ଦେଶିତ ପଥରେ ଚାଲି କିଛି ପାଇଲି ନାହିଁ ? ସାଧାରଣ ଲୋକେ ଏହା କହିପାରିବେ ନାହିଁ । ମୁଁ ଜାଣେ, ତୁମର ମୋ ଉପରେ ଖୁବ୍ ଜୋର ଅଛି, କାରଣ ତୁମେ ଯେତେବେଳେ କହି ପଠାଇଲ ଯେ ମୋ ନାମ କହିଲେ ଠାକୁର ଜାଣିବେ, ମୁଁ ସେତିକିବେଳୁଁ ଜାଣିଛି, ତୁମର ମୋ ଉପରେ ଦାବୀ କେତେ ।

ଏହା ପରେ ଠାକୁର ଉଠିଗଲେ ।

(ନୀଳାଚଳ ବାଣୀ ଗ୍ରନ୍ଥରୁ ଗୃହୀତ)

Digitized by PPRACHIN, SOA

# ସ୍ତବ

ଓଁ ନମସ୍ତେ ସତେତେ ଜଗତ୍ କାରଣାୟ
ନମସ୍ତେ ଚିତେ ସର୍ବଲୋକାଶ୍ରୟାୟ
ନମୋ ଦ୍ୱୈତ ତତ୍ତ୍ୱାୟ ମୁକ୍ତି ପ୍ରଦାୟ
ନମୋ ବ୍ରହ୍ମଣେ ବ୍ୟାପିନେ ଶାଶ୍ୱତାୟ । ୧ ।

ତ୍ୱମେକଂ ଶରଣ୍ୟଂ ତ୍ୱମେକଂ ବରେଣ୍ୟମ୍
ତ୍ୱମେକଂ ଜଗତ୍ ପାଳକଂ ସ୍ୱପ୍ରକାଶମ୍
ତ୍ୱମେକଂ ଜଗତ୍ କର୍ତ୍ତୃ ପାତୃ ପ୍ରହର୍ତ୍ତୃ
ତ୍ୱମେକଂ ପରଂ ନିଶ୍ଚଳଂ ନିର୍ବିକଳ୍ପମ୍ । ୨ ।

ଭୟାନାଂ ଭୟଂ ଭୀଷଣଂ ଭୀଷଣାନାମ୍
ଗତିଃ ପ୍ରାଣିନାଂ ପାବନଂ ପାବନାନାମ୍
ମହୋଚ୍ଚୈଃ ପଦାନାଂ ନିୟନ୍ତୃ ତ୍ୱମେକମ୍
ପରେଷାଂ ପରଂ ରକ୍ଷକଂ ରକ୍ଷକାଣାମ୍ । ୩ ।

ପରେଶଂ ପ୍ରଭୋ ! ସର୍ବରୂପାବିନାଶିନ୍
ଅନିର୍ଦ୍ଦେଶ୍ୟ ସର୍ବେନ୍ଦ୍ରିୟାଗମ୍ୟ ସତ୍ୟ
ଅଚିନ୍ତ୍ୟାକ୍ଷର ବ୍ୟାପକାବ୍ୟକ୍ତତତ୍ତ୍ୱ
ଜଗଦ୍ଭାସକାଧୀଶ ପାୟାଦପାୟାତ୍ । ୪ ।

ବୟନ୍ତ୍ୱାଂ ସ୍ମରାମୋ ବୟନ୍ତ୍ୱାଂ ଭଜାମୋ
ବୟନ୍ତ୍ୱାଂ ଜଗତ୍ ସାକ୍ଷୀ ରୂପଂ ନମାମଃ
ତଦେକଂ ନିଧାନଂ ନିରାଲମ୍ବମୀଶଂ
ଭବାମ୍ଭୋଧିପୋତଂ ଶରଣ୍ୟଂ ବ୍ରଜାମଃ । ୫ ।

---

ପୂଜ୍ୟ ପରଶୁରାମ ବର୍ମାଙ୍କର ଦ୍ୱାରା ପ୍ରବର୍ତ୍ତିତ ହାଇସ୍କୁଲର
ପ୍ରାର୍ଥନା ସଭାମାନଙ୍କରେ ଆବୃତ୍ତି କରାଯାଉଥିବା
ବହୁଜନପ୍ରିୟ ସ୍ମରଣୀୟ ସ୍ତବ

Digitized by PPRACHIN, SOA

# ଗୁରୁଶ୍ରେଷ୍ଠ ପରଶୁରାମ

(୧୮୭୮—୧୯୭୨)

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଜନ୍ମଗ୍ରହଣ କରିଥିବା ପରଶୁରାମ ବର୍ମା, ସେ ଯୁଗର ଅଭ୍ୟୁଦୟର ଜମରେ ଥିଲେ ରେନେସାଁର ପ୍ରତୀକ । ଅପରନ୍ତୁ ଅନୁସନ୍ଧିତ୍ସା ଓ ଅନ୍ୱେଷଣ ମଧ୍ୟରେ ଜୀବନ ଦର୍ଶନର ବିଶ୍ଳେଷଣରେ ଅଭିନିବେଶ କରିଥିବା ସହିତ ସେ ଥିଲେ ଜଣେ ପ୍ରତିଶ୍ରୁତିବାନ ସମ୍ପାଦକ ଓ ପ୍ରଖ୍ୟାତ ଶିକ୍ଷାବିତ୍ । ଚିଲିକା ଅଭ୍ୟନ୍ତରର ମାଲୁଦରେ ବର୍ଦ୍ଧିତ ହୋଇ ପଣ୍ଡିତ ଗୋଦାବରୀଶଙ୍କର ଅନ୍ତରଙ୍ଗ ସହଯୋଗୀ ଭାବରେ, ସେ ଥିଲେ ଚିଲିକା ଅଞ୍ଚଳର ପ୍ରଥମ ଗ୍ରାଜୁଏଟ । ଗଞ୍ଜାମର ବହୁ ସ୍କୁଲର ଅଧ୍ୟକ୍ଷ ରୂପେ, ସେ ଦେଶମିଶ୍ରଣ ଆନ୍ଦୋଳନରେ ସକ୍ରିୟ ଓ ଘନିଷ୍ଠ ଭାବେ ଯୋଗଦାନ କରି, ସେ କାଳର ତେଲୁଗୁ ପ୍ରଭାବିତ ଗଞ୍ଜାମରେ ଓଡ଼ିଆ ସଂସ୍କୃତିର ପ୍ରଚାର ଓ ପ୍ରସାର ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାର ଦେବୀପୀଠମାନଙ୍କରେ ପଶୁବଳି ଉଚ୍ଛେଦ କ୍ଷେତ୍ରରେ ସେ ଥିଲେ ସର୍ବପ୍ରଥମ ପ୍ରବର୍ତ୍ତକ ଓ ଉଦ୍ୟୋକ୍ତା । ସମାଜ ସଂସ୍କାର, ଆଧ୍ୟାତ୍ମିକ ଚିନ୍ତାଧାରାର ପ୍ରସାର ସହିତ ସେ ଅସ୍ପୃଶ୍ୟତା ନିବାରଣ ଓ ସାକ୍ଷରତା ଅଭିଯାନ ସହିତ ନିବିଡ଼ ଭାବେ ସମ୍ପର୍କିତ ଥିଲେ । ଅସିକା ହାଇସ୍କୁଲର ପ୍ରତିଷ୍ଠାତା ପ୍ରଧାନ ଶିକ୍ଷକ ଭାବରେ ତାଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କର ଅଗଣିତ ଛାତ୍ର ଗୋଷ୍ଠୀ ମଧ୍ୟରେ ସେ ଥିଲେ ଅସଂରକ୍ତ ପ୍ରଜ୍ଞା ଦୃଢ଼ ଶୃଙ୍ଖଳା ଓ ସୁକୁମାର ସୌଷ୍ଠବତାର ପ୍ରତୀକ ।

ତାଙ୍କର ଜୀବନର ଶେଷ ପର୍ଯ୍ୟାୟ ଥିଲା ସୂର୍ଯ୍ୟାସ୍ତ ପରି ବିସ୍ମୟ । ତାହା ମହିମାମଣ୍ଡିତ ହୋଇଥିଲା ଶ୍ରୀଅରବିନ୍ଦଙ୍କର ସମନ୍ୱିତ ଯୋଗ ଓ ଦର୍ଶନର ପରି-ପ୍ରସାରରେ । ସୁଦୀର୍ଘ ଏକ ଶତାବ୍ଦୀ ବ୍ୟାପୀ ଶ୍ରୀ ବର୍ମାଙ୍କର ଜୀବନ ବହନ କରିଥିଲା ସଫଳତାର ଅପୂର୍ବ ସ୍ୱାକ୍ଷର ।

---

Digitized by PPRACHIN, SOA